

## ଫଣୀନ୍ଦ୍ର ଭୂଷଣ ନନ୍ଦ

ଜନ୍ମ  ଡିସେମ୍ବର ୩୦, ୧୯୫୯ (ବୁଧବାର)

ଫଣୀନ୍ଦ୍ର ଭୂଷଣ ନନ୍ଦ ଓଡ଼ିଆ ସାହିତ୍ୟରେ ଏକ ଶ୍ରଦ୍ଧାଶୀଳ ନାମ । ଦୀର୍ଘ ଦୁଇ ଦଶନ୍ଧି ଧରି ସେ ଗଳ୍ପ, ନାଟକ ଓ କବିତା ରଚନାରେ ନିଜର ସିଦ୍ଧି ପ୍ରକାଶ କରିଛନ୍ତି । କ୍ରମଶଃ ଗବେଷଣାତ୍ମକ ନିବନ୍ଧ ରଚନାରେ ନିମଗ୍ନ । ବାମଣ୍ଡାର ଅନୁପମ ସାରସ୍ୱତ ପରଂପରାର ଅନାଲୋଚିତ ପ୍ରସଙ୍ଗ ଉପରେ ଆଲୋକପାତ କରି ବେଶ୍ ଚର୍ଚ୍ଚିତ । ଓଡ଼ିଶାର ପ୍ରାୟ ପ୍ରତ୍ୟେକ ପତ୍ର ପତ୍ରିକାରେ ତାଙ୍କର ସ୍ୱାକ୍ଷର ସୁସ୍ପଷ୍ଟ । ସମ୍ଭ୍ରାନ୍ତ ପତ୍ରିକା 'ପାଖୁଡ଼ା'ର ସେ ମୁଖ୍ୟ ସଂପାଦକ ।

ଊନବିଂଶ ଶତାବ୍ଦୀର ସାରସ୍ୱତ ଚର୍ଯ୍ୟାକୁ ଉପଯୁକ୍ତ ମୂଲ୍ୟାୟନ ଦିଗରେ ଏ ପୁସ୍ତକ ଏକ ବଳିଷ୍ଠ ପଦକ୍ଷେପ । ଦୁଷ୍ପ୍ରାପ୍ୟ ପତ୍ରପତ୍ରିକାର ଅଗଣା ଭିତରୁ ଓଡ଼ିଆ ସାହିତ୍ୟର ଭିତ୍ତିକୁ ସୁଦୃଢ଼ କରିବାରେ ଏ ପ୍ରୟାସ ଅନନ୍ୟ ସାଧାରଣ । ଓଡ଼ିଶାର ସାଂସ୍କୃତିକ ପ୍ରେକ୍ଷାପଟରେ 'ସମ୍ବଲପୁର ହିତୈଷିଣୀ'ର ମହନୀୟ ଭୂମିକାକୁ ଲୋକ ଲୋଚନକୁ ଆଣିବାରେ ଆଲୋଚକଙ୍କ ଉଦ୍ୟମ ସଫଳ ହୋଇଛି ହିତୈଷିଣୀ ପୃଷ୍ଠ ପାଠିକାରେ ସୃଷ୍ଟ ସାରସ୍ୱତ ପରଂପରାର ପ୍ରେରଣାଦାୟୀ ଆଭିମୁଖ୍ୟକୁ ସାର୍ବଜନୀନ ଭାବ ଆବେଦନରେ ପରିବେଷଣ କରାଯାଇଛି । ଏ ଗ୍ରନ୍ଥ ସହିତ ଆଲୋଚକ ଓଡ଼ିଆ ସାହିତ୍ୟର ନବ ଜାଗରଣ ଯୁଗର ଐତିହ୍ୟକୁ ମୁକୁଳିତ କରିଛନ୍ତି । ଗବେଷଣାତ୍ମକ ଉଦ୍ୟମ ମାଧ୍ୟମରେ ଓଡ଼ିଆ ସାହିତ୍ୟ ନିଜର ଅଭିନବ ବ୍ୟାପ୍ତି ଲଭିଛି । ଆଲୋଚକଙ୍କ ଏ ସାରସ୍ୱତ ପ୍ରୟାସ ସୁଧୀ ପାଠକ ଓ ଗବେଷକଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା ।

**-କ୍ଷୀରୋଦ ଚନ୍ଦ୍ର ଯତି**

ସଂପାଦକ ଅପୂର୍ବ

### ଲେଖକଙ୍କ ସୃଷ୍ଟି ସମ୍ଭାର

ନିଶବ୍ଦ ଆକାଶର ଡାକ (କବିତା-୧୯୯...)

...ର ଡାକ (କବିତା-୨୦୦୦

# ସମ୍ବଲପୁର ହିତୈଷିଣୀ : ଏକ ଅଧ୍ୟୟନ


| | |
|---|---|
| ଲେଖକ | ଫଣୀନ୍ଦ୍ର ଭୂଷଣ ନନ୍ଦ<br>ଦେବଗଡ଼ |
| ପ୍ରକାଶକ | ସୁବାସ ଚନ୍ଦ୍ର ମିଶ୍ର<br>ଭୁବନେଶ୍ୱର |
| ସ୍ୱତ୍ୱ | ଶୈଳବାଳା ନନ୍ଦ<br>ବ୍ୟାରକୋଟ, ଦେବଗଡ଼ |
| ପ୍ରଥମ ସଂସ୍କରଣ | ନବବର୍ଷ , ୨୦୦୨ |
| ମୁଦ୍ରଣ | ଅପୂର୍ବା ଅଫ୍‌ସେଟ, ଭୁବନେଶ୍ୱର |
| ପ୍ରଚ୍ଛଦ | ସୁଧୀର କୁମାର ଲେଙ୍କା |
| ମୂଲ୍ୟ | ଏକଶତ କୋଡ଼ିଏ ଟଙ୍କାମାତ୍ର |
| ପ୍ରାପ୍ତିସ୍ଥାନ | ପାଖୁଡ଼ା, ଦେବଗଡ଼-୭୬୮୧୦୮ |


# SAMBALPUR HITAISINI : EKA ADHYYANA

by **Fanidra Bhusan Nanda**


| | |
|---|---|
| Publisher | **Sri Subas Ch. Mishra**<br>**Bhubaneswar** |
| Copy Right | **Smt. Sailabala Nanda** |
| First Edition | Ist. January, 2002 |
| Printed at | Apurba Off-Set, Bhubaneswar |
| Cover Design | Sudhir K. Lenka |
| Price | Rs.120 /-(One Hundred Twenty Only) |

ଆଧୁନିକ ଓଡ଼ିଆ ସାହିତ୍ୟର ଧାରା ନିର୍ମାଣର
ଅନାଲୋଚିତ ପ୍ରତିଭା ମାନଙ୍କୁ...
ସାରସ୍ୱତ ଶହିଦ ମାନଙ୍କୁ...।

# ସୂଚୀପତ୍ର

# ମୁଖଶାଳା

ସମ୍ବଲପୁର ହିତୈଷିଣୀ ଉପରେ ଏକ ପୁସ୍ତକ ରଚନା କରିବାର ଯୋଜନା ମୋର ନଥିଲା । ବରଂ ହିତୈଷିଣୀ ଅଧ୍ୟୟନ ଦ୍ୱାରା ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗର ଓଡ଼ିଆ ସାହିତ୍ୟ ଉପରେ ମୋର ଧାରଣା ଦୃଢ଼ୀଭୂତ ହୋଇଥିଲା । ଅନେକ ଅନାଲୋଚିତ ପ୍ରତିଭାକୁ ଆବିଷ୍କାର କରି ମୁଁ ସନ୍ଦିତ ହୋଇଥିଲି । ଆଶ୍ଚର୍ଯ୍ୟ ହୋଇଥିଲି ମୋର ମାତୃଭୂମିରୁ ଏପରି ଏକ ବୃହଦ୍‌କାୟ ସଂବାଦ ପତ୍ର ପ୍ରକାଶ ପାଇଥିଲା ଏବଂ ଆଧୁନିକ ଓଡ଼ିଆ ସାହିତ୍ୟକୁ ପ୍ରତିଷ୍ଠା ଆଣି ଦେଇଥିଲା ।

ହିତୈଷିଣୀ ସହିତ ମୋର ସାକ୍ଷାତ ସ୍କୁଲବେଳରୁ । ଏକ ପୁସ୍ତକର ମଲାଟ ରୂପେ ହିତୈଷିଣୀକୁ ମୁଁ ପ୍ରଥମେ ଭେଟିଲି । ଖଣ୍ଡିତ ସଂବାଦ ପତ୍ରରୁ ୧୮୯୨ ଖ୍ରୀଷ୍ଟାବ୍ଦ ଓ ପ୍ରକାଶ ସ୍ଥାନ ମୋତେ ଆକୃଷ୍ଟ କରିଥିଲା । ଅବଚେତନରେ ଏକ ଜିଜ୍ଞାସା ଜନ୍ମ ନେଇଥିଲା ଏହାର ସ୍ୱରୂପ ସଂପର୍କରେ । ୧୯୯୨ରୁ ୨୦୦୦ ପର୍ଯ୍ୟନ୍ତ ଦୀର୍ଘ ଆଠବର୍ଷ ବିଭିନ୍ନ ସମୟରେ ମୁଁ ହିତୈଷିଣୀ ପଢ଼ିଛି । ଆବଶ୍ୟକୀୟ ତଥ୍ୟ ଟିପି ରଖିଛି । ଗତ ନଭେମ୍ବର ମାସରେ ହିତୈଷିଣୀରୁ ଅଧିକ କିଛି ତଥ୍ୟ ସଂଗ୍ରହ ଆଶାରେ ରାଜ୍ୟ ଅଭିଲେଖାଗାରକୁ ଯାଇ ହତାଶ ହୋଇଥିଲି । ହିତୈଷିଣୀ ନଷ୍ଟ ହୋଇଯାଇଥିବାରୁ ଅଧ୍ୟୟନ ପାଇଁ ଦିଆଯାଉ ନାହିଁ ପୁନଶ୍ଚ ଏହାର ଅସଷ୍ଟ ଚିତ୍ର (Micro Film) ପଠନ ଉପଯୋଗୀ ନୁହେଁ । ଏଣୁ ସିଦ୍ଧାନ୍ତ ନେଲି ହିତୈଷିଣୀର ହସ୍ତଗତ ତଥ୍ୟକୁ ନେଇ ଏକ ପୁସ୍ତକ ରଚନା କରିବି । ତିନିମାସ ମଧ୍ୟରେ ଏ ପୁସ୍ତକର ପରିକଳ୍ପନା ଓ ପୂର୍ଣ୍ଣତା ପ୍ରାପ୍ତି । ଏ ରଚନାରେ ଅନେକ କୃତବିଦ୍ୟ ଲେଖକଙ୍କ ପ୍ରତି ମୁଁ ନ୍ୟାୟ କରି ପାରିନାହିଁ ଅନ୍ୟ ପକ୍ଷରେ ବାମଣ୍ଡା ସାହିତ୍ୟିକଙ୍କ ସଂପର୍କରେ ପ୍ରଗଳ୍ଭ ହୋଇଛି । ଏହାର ଏକମାତ୍ର କାରଣ ହେଲା ମୋର ଅଧ୍ୟୟନର ଆଭିମୁଖ୍ୟ ଥିଲା ''ବାମଣ୍ଡାର ସାରସ୍ୱତ ପରଂପରା ଓ ସାରସ୍ୱତ ସେବୀଙ୍କ ଅବଦାନର ସୂକ୍ଷ୍ମ ବିଶ୍ଳେଷଣ ।'' ଫଳରେ ଓଡ଼ିଶାର ବୃହତ୍ତର ଲେଖକ ଗୋଷ୍ଠୀଙ୍କ ସାମଗ୍ରିକ ଅବଦାନର ତଥ୍ୟ ସଂଗ୍ରହରେ ମୁଁ ସେତେଟା ଧ୍ୟାନ ଦେଇନାହିଁ । ଏମିତି ଏକ ପୁସ୍ତକ ରଚନାର ପୂର୍ବ ଯୋଜନା ଥିଲେ ଏ ଅସୁବିଧାକୁ ଅତିକ୍ରମ କରାଯାଇ ପାରିଥାନ୍ତା । ତଥାପି ଅନେକ ପ୍ରବୀଣ, ନୂତନ ଲେଖକଙ୍କ ସାରସ୍ୱତ ଅବଦାନକୁ ହିତୈଷିଣୀ ପୃଷ୍ଠଭୂମିରେ ହିଁ ଆଲୋଚନା କରାଯାଇଛି ।

ହିତୈଷିଣୀର ଯେଉଁ ବିଶେଷ ଅବଦାନ ମୋତେ ବିମୁଗ୍ଧ କରିଛି ତା ଉପରେ ହିଁ ଆଲୋକପାତ କରାଯାଇଛି । ଓଡ଼ିଆ ସାହିତ୍ୟର ଆଧୁନିକ ପୃଷ୍ଠଭୂମିରେ ବିବର୍ତ୍ତନକୁ ଦେଖାଇ ଦିଆଯାଇଛି । କ୍ଷୁଦ୍ର ପରିସର ଭିତରେ ହିତୈଷିଣୀର ସାମଗ୍ରିକ ଅବଦାନର ଏକ ସୂକ୍ଷ୍ମ ବିଶ୍ଳେଷଣ ହିଁ ଏ ପୁସ୍ତକର ଲକ୍ଷ୍ୟ ।

ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ ବେଳେ ଅନାଲୋଚିତ, ଅବହେଳିତ ଅନେକ ସାରସ୍ୱତ କର୍ମୀଙ୍କ ବିଶଦ୍ ବିବରଣୀ ପ୍ରଦତ୍ତ ହୋଇଛି । ବିଭିନ୍ନ ରଚନାର ପ୍ରକାଶ ସମୟକୁ ପାଦଟୀକାରେ ଦିଆ ନ ଯାଇ ବନ୍ଧନୀ ମଧ୍ୟରେ ଦର୍ଶାଯାଇଛି । ପ୍ରଦତ୍ତ ତାରିଖ ଗୁଡିକ ମୁଖ୍ୟତଃ ହିତୈଷିଣୀର ପ୍ରକାଶ ତାରିଖ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ ଓଡ଼ିଆ ସାହିତ୍ୟର ବୈଚିତ୍ର୍ୟମୟ ଇତିହାସ ହିତୈଷିଣୀ ମାଧ୍ୟମରେ ଜୀବନ୍ତ ହୋଇ ଉଠିଛି । ଗବେଷକ ମାନଙ୍କ ସୂଚନା ପାଇଁ ଗୌଣ ଲେଖକ ମାନଙ୍କ ଓ ପୁସ୍ତକ ସମାଲୋଚନାର ତାଲିକା ପୁସ୍ତକରେ ସଂଯୋଜିତ ହୋଇଛି । ଏ ପୁସ୍ତକର ଲକ୍ଷ୍ୟ ହିତୈଷିଣୀର ଏକ

ତଥ୍ୟନିଷ୍ଠ ଚିତ୍ର ପ୍ରଦାନ । ଏ ପ୍ରସଙ୍ଗରେ ସର୍ବଶ୍ରେଷ୍ଠ ଦୁଃଖ ହିତୈଷିଣୀ ଅନେକ ସଂଖ୍ୟାର ଦୁଷ୍ପ୍ରାପ୍ୟତା । ବିଜୁଳି ଓ ଆଲୋଚନା ପତ୍ରିକା ସହିତ ହିତୈଷିଣୀର ପ୍ରଥମ ସଂଖ୍ୟା ମଧ୍ୟ ଅନୁପଲବ୍ଧ । ଏଣୁ ଏ ପୁସ୍ତକକୁ ହିତୈଷିଣୀ ପ୍ରତି ଏକ ଶ୍ରଦ୍ଧାଞ୍ଜଳି ରୂପେ ଗ୍ରହଣ କରାଯାଇପାରେ । ପରବର୍ତ୍ତୀ ପର୍ଯ୍ୟାୟରେ ଅଧିକ ତଥ୍ୟ ମିଳିଲେ ଏ ପୁସ୍ତକ ଅଧିକ ପରିପୃଷ୍ଟ ହେବ ଏଥିରେ ସନ୍ଦେହ ନାହିଁ ।

ଏ ପୁସ୍ତକ ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ହିତୈଷିଣୀର ଗୌରବ ପ୍ରଖ୍ୟାପନ ନିମିତ୍ତ କ୍ଷୀଣ ଉଦ୍ୟମ ମାତ୍ର । ପୁସ୍ତକ ପ୍ରଦତ୍ତ ତଥ୍ୟ ଓ ମୂଲ୍ୟାୟନ ହିତୈଷିଣୀ ଭିତ୍ତିରେ ପ୍ରତିଷ୍ଠିତ । ଏଥିରେ ସନ୍ନିବେଶିତ ଅନେକ ଲେଖକଙ୍କର ପୂର୍ଣ୍ଣାଙ୍ଗ ପରିଚୟ ପ୍ରଦାନର ଚେଷ୍ଟା କରାଯାଇଛି । ପ୍ରବୀଣ ଲେଖକ ମାନଙ୍କୁ ହିତୈଷିଣୀ ମାନଦଣ୍ଡରେ ମୂଲ୍ୟାୟନ କରାଯାଇଛି । ଆଧୁନିକ ପଦ୍ୟ ଓ ଗଦ୍ୟ ସାହିତ୍ୟର ଅଭିନବ ପ୍ରସୁତି କ୍ଷେତ୍ର ରୂପେ ହିତୈଷିଣୀର ଅବଦାନକୁ ବିଶ୍ଳେଷଣ କରାଯାଇଛି । ସାରସ୍ୱତ ଧାରାର ମନନ ଓ ରୂପ ବୈଚିତ୍ର୍ୟ ପ୍ରଦାନ ସମୟେ ଜାତୀୟ ଜୀବନର ମୂଳ ସହିତ ସଂଯୋଗ ସୂତ୍ର ଅନ୍ୱେଷଣ କରାଯାଇଛି ।

ପୁସ୍ତକର ପ୍ରକାଶ କାଳରେ ରାଜ୍ୟ ଅଭିଲେଖାଗାରର କର୍ମକର୍ତ୍ତାଙ୍କୁ ଅନ୍ତରର ସାଧୁବାଦ ଜଣାଉଛି । ଦେବଗଡ ମହାବିଦ୍ୟାଳୟ ଗ୍ରନ୍ଥଗାରୀକ ଅଗ୍ରଜ ନାଟ୍ୟ ନିର୍ଦ୍ଦେଶକ ହେମନ୍ତ କୁମାର ମହାପାତ୍ରଙ୍କ ସାହାଯ୍ୟକୁ ସସମ୍ମାନ ସ୍ମରଣ କରୁଛି । କବି ମଧୁସୂଦନ ଗୁରୁ, ନାଟ୍ୟକାର ଯୋଗେଶ ଚନ୍ଦ୍ର ଦଳବେହେରା, ପ୍ରାବନ୍ଧିକ ପୁରୁଷୋତ୍ତମ ନାଥଶର୍ମାଙ୍କ ଉତ୍ସାହବାଣୀ ମୋତେ ପ୍ରବୋଧିତ କରିଛି । ଅଗ୍ରଜ କବି ଓଡ଼ିଶା ସାହିତ୍ୟ ଏକାଡେମୀର ସଂପାଦକ ଶ୍ରୀ ଅଶ୍ୱିନୀ କୁମାର ମିଶ୍ରଙ୍କ ସସ୍ନେହ ଆଦେଶ ହିଁ ପୁସ୍ତକର ପ୍ରସୂତିକାଳକୁ କରିଛି ଯନ୍ତ୍ରଣାହୀନ ଓ କ୍ଷଣସ୍ଥାୟୀ । ଏ ପୁସ୍ତକର ଆଶୁ ପ୍ରକାଶ ପାଇଁ ଅଗ୍ରଜ ଗବେଷକ ଶ୍ରୀ ଗୌରାଙ୍ଗ ଚରଣ ଦାଶଙ୍କ ଆଗ୍ରହ ଓ ଉପଦେଶ ମୋତେ ଅନୁପ୍ରେରିତ କରିଛି । ପୁସ୍ତକ ପ୍ରକାଶନରେ ବଂଧୁ କ୍ଷୀରୋଦ ଚନ୍ଦ୍ର ପତି ତଥା ଅପୂର୍ବା ପରିବାରର ନିଷ୍ଠା ମୋତେ ଅଭିଭୂତ କରିଛି । ପୁସ୍ତକସ୍ଥ ଅନେକ ତଥ୍ୟ ସଂଗ୍ରହରେ ବଂଧୁ ସନ୍ତୋଷ କୁମାର ମହାପାତ୍ରଙ୍କ ସାହାଯ୍ୟ ମୋତେ ମୁଗ୍ଧ କରିଛି । ପାଣ୍ଡୁଲିପି ପ୍ରସ୍ତୁତିରେ ଅନୁଜ ନୈରତ ନନ୍ଦର ସହଯୋଗ ପାଇଁ ଶ୍ରଦ୍ଧା ଜ୍ଞାପନ କରୁଛି । ସ୍ୱତଃ ପୁସ୍ତକ ପ୍ରକାଶନର ଦାୟିତ୍ୱ ଗ୍ରହଣ କରିଥିବାରୁ ଅନୁଜ ସୁବାସ ଚନ୍ଦ୍ର ମିଶ୍ରଙ୍କୁ ଆଶୀର୍ବାଦ କରୁଛି ।

ଏ ପୁସ୍ତକ ପ୍ରକାଶନ ସମୟେ ମୋର ସ୍ୱର୍ଗୀୟ ପିତୃଦେବ ଗିରିଧାରୀ ନନ୍ଦ (୧୯୨୨-୧୯୮୦) ଙ୍କ ଅଦୃଶ୍ୟ ଆଶୀର୍ବାଦକୁ ସ୍ମରଣ କରୁଛି । ମାତୃଦେବୀ ସ୍ନେହମୟୀ ଶ୍ରୀମତୀ ମନୋରମା ନନ୍ଦଙ୍କର ସ୍ନେହକୁ ପାଥେୟ କରି ଆଗେଇବାର ସଂକଳ୍ପ ନେଇଛି । ଦୀର୍ଘ ତିନିମାସର ମୋହାବିଷ୍ଟ ସମୟକୁ ଅଜ୍ଞାତରେ ସହ୍ୟକରି ଘରର ଯାବତୀୟ ଜଞ୍ଜାଳକୁ ମୁଣ୍ଡେଇ ନେଇଥିବା ପ୍ରିୟତମା ପତ୍ନୀ ଶୈଳବାଳାଙ୍କୁ ଏ ଅବସରରେ ଆନ୍ତରିକ ସ୍ନେହ ପ୍ରଦାନ କରୁଛି । ମୋର ଅଜସ୍ର ପୁସ୍ତକକୁ ସଜାଡି ପାଣ୍ଡୁଲିପିର ମୁଦ୍ରିତ ରୂପ ଦେଖିବାକୁ ଉତ୍ସୁକ ବୁଢ଼ୀ ଓ ବାବୁଲକୁ ଅନ୍ତରର ଆଶୀର୍ବାଦ ଦେଉଛି ।

ଏ ପୁସ୍ତକର ସମସ୍ତ ତ୍ରୁଟି ବିଚ୍ୟୁତିକୁ ସ୍ୱୀକାରୀ ନେଉଛି । ଏହାରି ଅନ୍ତରାଳେ ପ୍ରତିଟି ସଫଳ ଓ ଅସଫଳ ସାରସ୍ୱତ ମୁହୂର୍ତ୍ତକୁ ସ୍ମରଣ କରି ଆଶା ରଖୁଛି ରସଗ୍ରାହୀ ପାଠକ ଓ ଗବେଷକଙ୍କର ଏହା କିଞ୍ଚିତ ଉଦ୍ଦେଶ୍ୟ ସାଧନ କରିପାରିବ ।



ତା ୨୨.୭.୨୦୦୧
ଦେବଗଡ଼

**ଫଣୀନ୍ଦ୍ର ଭୂଷଣ ନନ୍ଦ**


ସମ୍ବଲପୁର ହିତୈଷିଣୀ

THE SAMBALPUR PATRIOT

ସମ୍ବଲପୁର ହିତୈଷିଣୀ

(ସାପ୍ତାହିକ ସଂବାଦ ପତ୍ରିକା)


ସାର୍ ବାସୁଦେବ ସୁଢଳଦେବ

(୧୮୫୦ - ୧୯୦୩)


ନୀଳମଣି ବିଦ୍ୟାରତ୍ନ

(୧୮୬୭ - ୧୯୨୪)

# ପୂର୍ବାଭାସ

ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ସଂବଲପୁର ହିତୈଷିଣୀର ଆବିର୍ଭାବ ବୈଚିତ୍ର୍ୟମୟ । ସାଂସ୍କୃତିକ, ସାମାଜିକ ଓ ସାହିତ୍ୟିକ ଭାବପିଣ୍ଡରେ ମହୀୟାନ୍ । ସମୟର ଅଗ୍ରଗତିରେ ଆତ୍ମ ସୌନ୍ଦର୍ଯ୍ୟକୁ ରସାଣିତ କରି ଯୁଗସ୍ପନ୍ଦନର ପ୍ରତିନିଧିତ୍ୱ କରିଛି । ଏହା ଐତିହାସିକ ସୁଷମା ବିଭବରେ ଯେମିତି ଦୀପ୍ତିମନ୍ତ, ଆଧୁନିକ ଯୁଗରୁଚିର ସ୍ୱାତନ୍ତ୍ର୍ୟ ପ୍ରକାଶରେ ସେତିକି ଉର୍ଜ୍ଜସ୍ୱଳ । ପ୍ରାଚୀନ ଆଧୁନିକ ଚିନ୍ତ ସଂଘର୍ଷର ସଂଧିକ୍ଷଣରେ ସଂବଲପୁର ହିତୈଷିଣୀର ଆବିର୍ଭାବ । ମୌଳିକ ପ୍ରାଣବିଭବ, ସମକାଳୀନ ଆବେଦନ ଏବଂ ରୁଚିଶୀଳ ଭବିଷ୍ୟତ ଗଠନର ବଳିଷ୍ଠ ଆଭିମୁଖ୍ୟ ନେଇ ଏହାର ଜନ୍ମ ଏବଂ ସୃଷ୍ଟିଶୀଳ ସାର୍ବଜନୀନତା ମଧ୍ୟ ଦେଇ ଏହାର ବିସ୍ତାର । ନିଜର ଅନଶ୍ୱର ପ୍ରକାଶ ମାଧ୍ୟମରେ ଓଡ଼ିଶାର ସମାଜଚିତ୍ର, ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ରୁଦ୍ଧିମନ୍ତ କରିଛି ଏ ପତ୍ରିକା । ପୃଷ୍ଠଭୂମି ଓ ସମୟର ସ୍ପନ୍ଦନକୁ ଉଚିତ ସମ୍ମାନ ଜଣାଇ ଏକ ରୁଚିଶୀଳ ଓ ଉଜ୍ଜ୍ୱଳ ଦିଗନ୍ତର ସନ୍ଧାନ ଦେଇଛି । ହିତୈଷିଣୀର ଅମୂଲ୍ୟ ଅବଦାନ ବହୁମୁଖୀ ଓ ବହୁ ପ୍ରସାରୀ । ଏଇ ପର୍ଯ୍ୟାଲୋଚନା ମାଧ୍ୟମରେ ସ୍ୱତଃ ପ୍ରସ୍ଫୁଟିତ ହେବ ତାର ଅନଶ୍ୱର ଆଭିମୁଖ୍ୟ ସମୂହ । ଆତ୍ମ ସୌନ୍ଦର୍ଯ୍ୟ ନିରୀକ୍ଷଣରେ ଚମତ୍କୃତ ପାଠକ ହିତୈଷିଣୀର ପରମ ସତ୍ୟ ଓ ପରମଲକ୍ଷ୍ୟର ସନ୍ଧାନ ପାଇବ । ପୂର୍ବରୁ ସୂଚିତ ତିନୋଟି ବିଷୟ ମୌଳିକ ପ୍ରାଣ ବିଭବ, ସମକାଳୀନ ଆବେଦନ ଏବଂ ରୁଚିଶୀଳ ଭବିଷ୍ୟତ ଗଠନର ଆଭିମୁଖ୍ୟର ମାଧ୍ୟମରେ ହିତୈଷିଣୀର ଅନୁପମ ଅଧ୍ୟୟନ ହିଁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ସମାଜ ଜୀବନକୁ ସ୍ପଷ୍ଟ କରିବ । ଏଥି ସହିତ ଏକ ବଳିଷ୍ଠ ସାରସ୍ୱତ ପରଂପରା ଗଠନରେ ହିତୈଷିଣୀର ଅମୂଲ୍ୟ ଅବଦାନ ପ୍ରକାଶିତ ହେବ ।



# ପ୍ରଥମ ଅଧ୍ୟାୟ

## ଓଡ଼ିଶାରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠାର ଇତିହାସ :

ଇଂରେଜ ମାନଙ୍କ ଓଡ଼ିଶା ଅଧିକାର (୧୮୦୩) ସହିତ ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ଯୁଗାନ୍ତର ପ୍ରତିଷ୍ଠିତ ହେଲା । ମିଶନାରୀମାନେ ଧର୍ମ ପ୍ରଚାର ଲକ୍ଷ୍ୟରେ ୧୮୩୭ ଖ୍ରୀ:ରେ ଓଡ଼ିଶା ମିଶନ୍ ପ୍ରେସ୍ ପ୍ରତିଷ୍ଠା କରିଥିଲେ । ଏହା ହିଁ ଥିଲା ଓଡ଼ିଶାର ପ୍ରଥମ ମୁଦ୍ରାଯନ୍ତ୍ର । ଓଡ଼ିଶାରେ ପ୍ରଥମ ପତ୍ରିକା ପ୍ରକାଶର ଶ୍ରେୟ ମଧ ମିଶନାରୀ ମାନଙ୍କର ପ୍ରାପ୍ୟ । ଦୀର୍ଘ ତିରିଶ ବର୍ଷ ପରେ ରେଭେନ୍‌ସା ସାହେବଙ୍କ ଉତ୍ସାହ କ୍ରମେ ସିରସ୍ତାଦାର ବିଚିତ୍ରାନନ୍ଦ ଦାସ ଓ ଅନ୍ୟମାନଙ୍କ ଉଦ୍ୟମରେ ୧୮୬୬ ଖ୍ରୀ:ରେ ଜନ୍ମଲାଭ କଲା କଟକ ପ୍ରିଣ୍ଟିଂ ପ୍ରେସ । (୧) ଏହି ପ୍ରେସ ମାଧମରେ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ନବ ଜାଗରଣ ସୃଷ୍ଟିହେଲା । ଓଡ଼ିଶାର ପ୍ରାରମ୍ଭିକ ପର୍ଯ୍ୟାୟରେ ଜାତୀୟ ଜୀବନକୁ ଉଚିତ ଦିଗ୍‌ଦର୍ଶନ ଦେବା ସହିତ ଏକ ବୃହତ୍ତର ଜାତୀୟ କର୍ତ୍ତବ୍ୟ ସଂପାଦନରେ ଏ ପ୍ରେସର ମାନସ ସନ୍ତାନ ''ଉତ୍କଳଦୀପିକା'ସଫଳ ହୋଇଥିଲା ।

ଫକୀର ମୋହନଙ୍କ ପ୍ରଚେଷ୍ଟାରେ ୧୮୬୮ ଖ୍ରୀ:ରେ ବାଲେଶ୍ୱର ଠାରେ ଓଡ଼ିଶାର ତୃତୀୟ ମୁଦ୍ରାଯନ୍ତ୍ର 'ଉତ୍କଳ ପ୍ରିଣ୍ଟିଂକୋ' ପ୍ରତିଷ୍ଠିତ ହୋଇଥିଲା । ୧୮୭୩ ରେ ବାଲେଶ୍ୱରରେ 'ଦେ ପ୍ରେସ୍' ସୃଷ୍ଟି ଲଭିଥିଲା । ବାଲେଶ୍ୱରର ଜମିଦାର ବୈକୁଣ୍ଠନାଥ ଦେ ଥିଲେ ଏହାର ସତ୍ତ୍ୱାଧିକାରୀ । ସେହିବର୍ଷ କଟକ ଠାରେ ବାବୁ କାଳିପଦ ବନ୍ଦୋପାଧାୟଙ୍କ ଉଦ୍ୟମରେ ପ୍ରତିଷ୍ଠା ହେଲା ଓଡ଼ିଶା ପେଟ୍ରିୟଟ୍ ବା ଉତ୍କଳ ହିତୈଷିଣୀ ପ୍ରେସ । ୧୮୮୫ରେ 'ଓଡ଼ିଶା ପ୍ରିଣ୍ଟିଂ କର୍‌ପୋରେସନ', ''ଭିକ୍ଟୋରିଆ ପ୍ରେସ'' ଓ 'ସୁଢ଼ଳ ପ୍ରେସ୍' ସ୍ଥାପିତ ହୋଇଥିଲା । ଭିକ୍ଟୋରିଆ ପ୍ରେସର ମ୍ୟାନେଜର ଥିଲେ ଜଗନ୍ନାଥ ରାଓ । ସୁଢ଼ଳ ପ୍ରେସଟି ସାର୍ ସୁଢ଼ଳ ଦେବଙ୍କ ଆର୍ଥିକ ସହାୟତାରେ ପ୍ରତିଷ୍ଠିତ ହୋଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରେସ୍‌ଟିକୁ ସୁଢ଼ଳଦେବ ବାମଣ୍ଡାକୁ ସ୍ଥାନାନ୍ତରିତ କରିଥିଲେ ।

ଏ ସମସ୍ତ ପ୍ରେସ୍ ବ୍ୟତିରେକେ ଊନବିଂଶ ଶତାବ୍ଦୀରେ ଅନେକ କ୍ଷୀଣସ୍ଥାୟୀ ପ୍ରେସ୍ ବିଭିନ୍ନ ସ୍ଥାନରେ ସ୍ଥାପିତ ହୋଇଥିଲା । ଏମାନଙ୍କ ମଧ୍ୟରେ ପୁରୀର ଭକ୍ତି ପ୍ରଦାୟିନୀ ପ୍ରେସ୍

ମୟୂରଭଞ୍ଜର ପ୍ରେସ୍, ଗଞ୍ଜାମର ନିଶା ନିଷେଧିନୀ ସମାଜର ପ୍ରେସ୍, ପୁରୀର ପ୍ରିଣ୍ଟିଂ କର୍ପୋରେସନ ପ୍ରେସ୍, ଅରୁଣୋଦୟ ପ୍ରେସ୍, ରାୟପ୍ରେସ୍, ଦର୍ପଣରାଜ ପ୍ରେସ୍, ବାଲେଶ୍ୱରର ବିନୋଦ ପ୍ରେସ୍ ପ୍ରମୁଖ ପ୍ରଧାନ । *(୨)* କିନ୍ତୁ ଉତ୍କଳ ସାହିତ୍ୟ ପ୍ରେସ୍ ପ୍ରତିଷ୍ଠା ଥିଲା ଊନବିଂଶ ଶତାବ୍ଦୀର ଅନ୍ୟତମ ବିଶିଷ୍ଟ ଘଟଣା ।

## ପତ୍ର ପତ୍ରିକା ପ୍ରକାଶନ :

ଇଂରେଜ ମାନଙ୍କର 'ପ୍ରେସ୍ ରେଗୁଲେସନ୍'ର କଠୋର ନିୟମକାନୁନ ସତ୍ତ୍ୱେ ଅନେକ ଚିନ୍ତାଶୀଳ ଭାରତୀୟ ପତ୍ର ପତ୍ରିକା ପ୍ରକାଶନର ଉଦ୍ୟମ କରିଥିଲେ । ବିଭିନ୍ନ ପ୍ରାନ୍ତୀୟ ଭାଷାରେ ମଧ୍ୟ ପତ୍ର ପତ୍ରିକା ଜନ୍ମଲାଭ କରିଥିଲା । ଏ ପର୍ଯ୍ୟାୟରେ ଡ: ଗୋପାଳ ଚନ୍ଦ୍ର ମିଶ୍ରଙ୍କ ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ-"ଊନବିଂଶ ଶତାବ୍ଦୀରେ ସରକାରଙ୍କ ଏତାଦୃଶ ବିରୋଧାତ୍ମକ ପ୍ରତିକୂଳ ମନୋଭାବ ହିଁ ଭାରତ ବର୍ଷରେ ସମ୍ବାଦପତ୍ର ପ୍ରତିଷ୍ଠା, ପ୍ରଚାର ପର୍ଯ୍ୟାୟରେ ପରିଲକ୍ଷିତ ହୁଏ । ଇଷ୍ଟଇଣ୍ଡିଆ କଂପାନୀ ସରକାର ଏବଂ ପରବର୍ତ୍ତୀ ଇଂରେଜ ସରକାରଙ୍କ ଦମନ ଲୀଳା ଏବଂ ଭୀଷଣ ବିରୋଧରୁ ହିଁ ଜନମତର ଜାଗ୍ରତ ପ୍ରହରୀ ସଦୃଶ ଭାରତୀୟ ସମ୍ବାଦ ପତ୍ରର ଜନ୍ମ, ପ୍ରସାର ଏବଂ ପ୍ରତିଷ୍ଠା ସମ୍ଭବ ହୁଏ ।" *(୩)*

ଭାରତବର୍ଷରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ଓ ପତ୍ରିକା ପ୍ରଚଳନର ପ୍ରାରମ୍ଭିକ ଉଦ୍ୟମ ମିଶନାରୀ ମାନଙ୍କ ଦ୍ୱାରା ସଂଘଟିତ ହୁଏ । ଓଡ଼ିଶାରେ ଧର୍ମ ପ୍ରଚାର ଲକ୍ଷ୍ୟରେ ମୁଦ୍ରାଯନ୍ତ୍ର ସ୍ଥାପନ ଓ ପତ୍ରିକା ପ୍ରଚଳନ କ୍ଷେତ୍ରରେ ମିଶନାରୀ ମାନଙ୍କ ଉଦ୍ୟମ ଉଲ୍ଲେଖଯୋଗ୍ୟ । ୧୮୨୨ ଖ୍ରୀ: ଫେବୃଆରୀ ୧୨ ତାରିଖରେ ଓଡ଼ିଶାରେ ଧର୍ମ ପ୍ରଚାରର ଉଦ୍ଦେଶ୍ୟ ରଖି ମିଶନାରୀ ଗୋଷ୍ଠୀ ପଦାର୍ପଣ କରିଥିଲେ । ସ୍ଥାନୀୟ ଭାଷାରେ ଧର୍ମ ପୁସ୍ତିକା ପ୍ରଚାର ଏକାନ୍ତ ଆବଶ୍ୟକତା ଯୋଗୁଁ ୧୮୩୭ ରେ କଟକ ଠାରେ ମିଶନ ପ୍ରେସ ପ୍ରତିଷ୍ଠା କରନ୍ତି । ଏ କ୍ଷେତ୍ରରେ ଆମସ୍ ସଟନଙ୍କ ଉଦ୍ୟମ ପ୍ରଶଂସନୀୟ । "ଖ୍ରୀଷ୍ଟଧର୍ମ ଗ୍ରନ୍ଥାଦିର ଓଡ଼ିଆ ଅନୁବାଦ ଏବଂ ଧର୍ମ ସମ୍ବନ୍ଧୀୟ ପୁସ୍ତିକାଦିର (ବିଶେଷତଃ ପ୍ରଚାର ପୁସ୍ତିକା) ପ୍ରକାଶ ଦୃଷ୍ଟିରୁ ଗୋଟିଏ ମାତ୍ର ପ୍ରେସ ଆଶାନୁରୂପ ନ ହେବାରୁ ଡ: ସଟନ୍ ହୋମ କମିଟିକୁ ଏହାର ପ୍ରସାର ନିମିତ୍ତ ଅନୁରୋଧ କରିଥିଲେ । ତାଙ୍କର ଆନ୍ତରିକ ପ୍ରଚେଷ୍ଟା ହେତୁ ୧୮୩୮ ରେ ମିଶନ ପ୍ରେସର ସଂପ୍ରସାରଣ ଘଟିଥିଲା ଏବଂ ଓଡ଼ିଶା ମିଶନପ୍ରେସ ପରିବର୍ତ୍ତେ ଏହି ମୁଦ୍ରଣାଳୟର ନାମ ହୋଇଥିଲା କଟକ ମିଶନ ପ୍ରେସ ।"*(୪)*

ମିଶନାରୀ ମାନଙ୍କ ପ୍ରଚେଷ୍ଟାରେ ଓଡ଼ିଆ ଭାଷାରେ ପ୍ରଥମ ପତ୍ରିକା "ଜ୍ଞାନାରୁଣ"୧୮୪୯ ରେ ପ୍ରକାଶ ଲଭେ । ଏହା ପୂର୍ବରୁ 'କୁଜିବର ପତ୍ର' ନାମରେ ଏକ ହାତଲେଖା ପତ୍ରିକା କୁଜିବର ମଠର ମହନ୍ତ ସାଧୁସୁନ୍ଦର ଦାସଙ୍କ ଉଦ୍ୟମରେ ୧୮୪୦ରେ ପ୍ରକାଶ ପାଇଥିବାର ଅନୁମାନ କରାଯାଏ । କିନ୍ତୁ ଏ ପତ୍ରିକାର ସ୍ୱରୂପ କାହାରି ଦୃଷ୍ଟି ପଥାରୂଢ଼

ହୋଇନାହିଁ । ସେ ଯାହାହେଉ ଜ୍ଞାନାରୁଣ ହିଁ ଓଡ଼ିଶାର ପ୍ରଥମ ପ୍ରକାଶିତ ପତ୍ରିକା । ଉଇଲିୟମ ଲେସିଙ୍କ ସଂପାଦକତ୍ୱରେ ୧୮୫୬ ଖ୍ରୀ:ରେ କଟକରୁ ଦ୍ୱିତୀୟ ମିଶନାରୀ ପତ୍ରିକା "ପ୍ରବୋଧ ଚନ୍ଦ୍ରିକା" ପ୍ରକାଶ ପାଇଥିଲା । ଏହା ସାହିତ୍ୟ ସମାଚାର ଓ ମାସିକ ପଞ୍ଜିକା ରୂପେ ନିଜର ଆଭିମୁଖ୍ୟ ଘୋଷଣା କରିଥିଲା । ୧୮୬୧ ଖ୍ରୀ:ରେ ଖ୍ରୀଷ୍ଟିୟାନ ଭର୍ଣ୍ଣାକୁଲାର ଲିଟେରେଚର ସୋସାଇଟି ଦ୍ୱାରା 'ଅରୁଣୋଦୟ' ମାସିକ ପତ୍ରିକା ପ୍ରକାଶିତ ହୋଇଥିଲା । ଏହା ତିନିବର୍ଷ ମାତ୍ର ଜୀବିତ ରହିଥିଲା । ମିଶନାରୀ ଉଦ୍ୟମରେ ପ୍ରକାଶିତ ଏ ତିନୋଟି ପତ୍ରିକା ମଧ୍ୟରୁ 'ପ୍ରବୋଧ ଚନ୍ଦ୍ରିକା' ହିଁ ଦୀର୍ଘକାଳ ସ୍ଥାୟୀ ହୋଇଥିଲା । 'ପ୍ରବୋଧ ଚନ୍ଦ୍ରିକା' ଯେ ଉତ୍କଳୀୟ ଭାଷା, ସାହିତ୍ୟ ଓ ଶିକ୍ଷାର ଉନ୍ନତି ପାଇଁ ସଂକଳ୍ପ ବଦ୍ଧ ଥିଲା, ଏହା ତାର ଉଦ୍ଦେଶ୍ୟରୁ ସ୍ପଷ୍ଟ ହୁଏ । "ଏ ପ୍ରବୋଧ ଚନ୍ଦ୍ରିକା ପ୍ରତ୍ୟେକ ଦେଶୀୟ ମାସ ଆରମ୍ଭରେ ପ୍ରକାଶିତ ହେବ । ପ୍ରତ୍ୟେକ ଖଣ୍ଡରେ କୋଡ଼ିଏ କି ପଚିଶ ପୃଷ୍ଠା ଛାପା ହେବ । ପ୍ରଥମରେ ଦେଶୀୟ ମହାବିଜ୍ଞ ପୁରାତନ କୌଣସି ପଣ୍ଡିତ କର୍ତ୍ତୃକ ରଚିତ ଆଉ ଉତ୍ତମ ଶିକ୍ଷାଦାୟକ ଗ୍ରନ୍ଥ ନତୁବା ବଙ୍ଗ ଦେଶୀୟ ବିଦ୍ୱଜ୍ଜନଗଣ କର୍ତ୍ତୃକ ନାନା ସମୟରେ ଯେଉଁ ଉତ୍ତମ ପୁସ୍ତକ ପ୍ରକାଶିତ ହୋଇଅଛି, କିମ୍ବା ଆଗାମୀରେ ହେବ ତନ୍ମଧ୍ୟରୁ କୌଣସି କୌଣସି ପୁସ୍ତକ ଆଦ୍ୟ ପ୍ରାପ୍ତ କ୍ରମେ କ୍ରମେ ପ୍ରବୋଧ ଚନ୍ଦ୍ରିକାରେ ପ୍ରକାଶ କରିବାର ମାନସ ଅଛି । ତଦ୍‌ବ୍ୟତୀତ ଅନ୍ୟଅନ୍ୟ ମନୋରଞ୍ଜନ ଓ ନୀତିଶିକ୍ଷା ଦାୟକ ବୃତ୍ତାନ୍ତ କିମ୍ବା ବିଶିଷ୍ଟ ମହାତ୍ମା ମାନଙ୍କ ଜୀବନ ବିବରଣୀ ଅଥବା ଶିଳ୍ପ ବିଦ୍ୟା ସମ୍ବନ୍ଧୀୟ ପ୍ରସଙ୍ଗ ପ୍ରକାଶ କରାଯିବ ।" *(୫)*

ଏ ପତ୍ରିକା ଗୁଡିକ ଓଡ଼ିଶାର ଶିକ୍ଷାର ଯାଥାଯଥ ପ୍ରସାର ଅଭାବରୁ ପାଠକ ସମାଜରେ ଆଗ୍ରହ ସଞ୍ଚାର କରି ନ ପାରି ଅଳ୍ପାୟୁ ହେବାକଥା ଡ: ଶ୍ରୀନିବାସ ମିଶ୍ର ଘୋଷଣା କରନ୍ତି । *(୬)* ନଟବର ସାମନ୍ତରାୟଙ୍କ ମତରେ ଦେଶର ରାଜନୀତି ସହିତ ସେମାନଙ୍କର କୌଣସି ପ୍ରତ୍ୟକ୍ଷ ସଂପର୍କ ନଥିବାରୁ ଦେଶର ଲକ୍ଷଲକ୍ଷ ନର ନାରୀଙ୍କ ପ୍ରକୃତ ଆଶା-ଆକାଂକ୍ଷା, ଅଭାବ-ଅସୁବିଧା ତଦାନୀନ୍ତନ ସରକାରଙ୍କ ନିକଟରେ ଦମ୍ଭର ସହ ଉପସ୍ଥାପନ କରିବାର ସାହସ ସେମାନଙ୍କର ନଥିଲା । *(୭)* ଶିକ୍ଷିତ ଶ୍ରେଣୀଙ୍କ ମଧ୍ୟରେ ଆତ୍ମଚେତନା ସଞ୍ଚାରରେ ଏ ପତ୍ରିକା ଗୁଡିକ ସର୍ବାଦୌ ବିଫଳ ହୋଇଥିଲେ । ଆଧୁନିକ ଶିକ୍ଷା-ସଭ୍ୟତା ପ୍ରତି ସାଧାରଣ ଜନତାଙ୍କ ଅମନଯୋଗିତା ହିଁ ପରୋକ୍ଷରେ ଏ ପତ୍ରିକା ଗୁଡିକର ପ୍ରକାଶର ପ୍ରଧାନ ଅନ୍ତରାୟ ହୋଇଥିଲା । ତଥାପି ଓଡ଼ିଆ ପତ୍ରପତ୍ରିକାର ଆଦ୍ୟ ସଂକେତ ରୂପେ ମିଶନାରୀ ପତ୍ରିକା ଗୁଡିକର ଅବଦାନ ଅନସ୍ୱୀକାର୍ଯ୍ୟ ।

ନଅଙ୍କ ଦୁର୍ଭିକ୍ଷର କରାଳ ବିଭୀଷିକାର ପୃଷ୍ଠଭୂମିରେ ଓଡ଼ିଶାର ଜାତୀୟ ଜୀବନରେ ନବ ଜାଗରଣ ଖେଳିଗଲା । ଜାତୀୟ ଜାଗରଣର ପ୍ରଧାନ ଭୂମିକା ରୂପେ ଜାତି ଓ ଭାଷାକୁ ସୁରକ୍ଷିତ କରିବାକୁ ପତ୍ର ପତ୍ରିକା ପ୍ରକାଶର ଉନ୍ମାଦନା ସୃଷ୍ଟି ହେଲା । କର୍ମବୀର ଗୌରୀଶଙ୍କରଙ୍କ ସଂପାଦନାରେ କଟକ ପ୍ରିଣ୍ଟିଂ କଂପାନୀରୁ ୧୮୬୬ ଖ୍ରୀ: ଅଗଷ୍ଟ ୪ ତାରିଖରେ ପ୍ରକାଶିତ ହେଲା

ଓଡ଼ିଶାର ପ୍ରଥମ ମୌଳିକ ସଂବାଦ ପତ୍ର ''ଉତ୍କଳ ଦୀପିକା'' । ଓଡ଼ିଶାର ସର୍ବବିଧ ଉନ୍ନତି ଯଥା ଭାଷା, ସଂସ୍କୃତିର ପ୍ରସାର, ଅର୍ଥନୀତି ପୁନର୍ଗଠନ, ଓଡ଼ିଆ ଜାତିର ପ୍ରାଣ ପ୍ରତିଷ୍ଠା ଯେ 'ଉତ୍କଳ ଦୀପିକା' ସଦୃଶ ଜାତୀୟବାଦୀ ସଂବାଦପତ୍ରର ଆଭିମୁଖ୍ୟ ଥିଲା ଏଥିରେ ସନ୍ଦେହ ନାହିଁ । *(୮)* ଦୀପିକା ପରେ 'ବାଲେଶ୍ୱର ସଂବାଦ ବାହିକା' (୧୮୬୮) ପ୍ରକାଶିତ ହୋଇ ଓଡ଼ିଆ ଭାଷା ଆନ୍ଦୋଳନରେ ଦୀପିକା ସହିତ ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପାଦନ କରିଥିଲେ । ପରେ ପରେ ଉତ୍କଳ ହିତୈଷିଣୀ (୧୮୬୯), କଟକ ଷ୍ଟାର (୧୮୬୯), କଟକ ଷ୍ଟାଣ୍ଡାର୍ଡ (୧୮୬୯), ଉତ୍କଳ ଶୁଭଙ୍କରୀ (୧୮୬୯), କଟକ କ୍ରନିକ୍ଲ (୧୮୭୧), ଆଗୁୟାନୀ (୧୮୭୨), ଉତ୍କଳ ଦର୍ପଣ (୧୮୭୩), ଉତ୍କଳ ପୁତ୍ର (୧୮୭୩), ଭଗବତ ଭକ୍ତି ପ୍ରଦାୟିନୀ (୧୮୭୩), ବିଦେଶୀ (୧୮୭୩) ଶିକ୍ଷକ (୧୮୭୪), ଧର୍ମବୋଧିନୀ (୧୮୭୪), ଉତ୍କଳ ସଂସ୍କାର (୧୮୭୪), ଚନ୍ଦ୍ରିକା (୧୮୭୪), ସ୍ୱଦେଶୀ (୧୮୭୬), ଧୂମକେତୁ (୧୮୭୭), ଉତ୍କଳ ମଧୁପ (୧୮୭୮), ମୟୂରଭଞ୍ଜ ପାକ୍ଷିକ ପତ୍ରିକା (୧୮୮୦), କୋହିନୂର (୧୮୮୦), ପୁରୁଷୋତ୍ତମ ପତ୍ରିକା (୧୮୮୨), ପ୍ରଜାବନ୍ଧୁ (୧୮୮୨), ତାରକା (୧୮୮୩), ସେବକ (୧୮୮୩), ସଂସ୍କାରକ (୧୮୮୪), ନବବିଧାନ (୧୮୮୪), ପ୍ରଦୀପ (୧୮୮୫), ଶିକ୍ଷାବନ୍ଧୁ (୧୮୮୫), ବ୍ୟବସାୟୀ (୧୮୮୬), ତାରକା ଓ ଶୁଭବାର୍ତ୍ତା (୧୮୮୬), ନବ ସଂବାଦ (୧୮୮୭), ସାମ୍ୟବାଦୀ (୧୮୮୭), ଓଡ଼ିଆ (୧୮୮୭), ଓଡ଼ିଆ ଓ ନବସଂବାଦ (୧୮୮୮), ଆଶା (୧୮୮୮) ପ୍ରଭୃତି ପତ୍ରିକା ପ୍ରକାଶ ଲଭି ଓଡ଼ିଶାର ସାଂସ୍କୃତିକ ପରିବେଶକୁ ଋଦ୍ଧିମନ୍ତ କରିଥିଲା । ଏ ଗୁଡିକ ମୁଖ୍ୟତଃ କଟକ, ପୁରୀ, ବାଲେଶ୍ୱର ଓ ମୟୂରଭଞ୍ଜରୁ ପ୍ରକାଶ ପାଉଥିଲା । ସେହି ସମୟରେ ପଶ୍ଚିମ ଓଡ଼ିଶାର ଦେବଗଡଠାରେ ସ୍ଥାପିତ ପ୍ରେସ (୧୮୮୬) ରୁ ମେ-୩୦-୧୮୮୯ ଖ୍ରୀ:ରେ ଯୁଗାନ୍ତକାରୀ ପତ୍ରିକା ସଂବଲପୁର ହିତୈଷିଣୀ ଜନ୍ମଲାଭ କଲା । ହିତୈଷିଣୀର ପ୍ରକାଶନକୁ ନିମ୍ନ ପ୍ରକାରେ ଉତ୍କଳ ଦୀପିକା ସ୍ୱାଗତ ଜଣାଇଥିଲା ''ସଂବଲପୁର ହିତୈଷିଣୀ ନାମରେ ଓଡ଼ିଶାରେ ଆଉ ଖଣ୍ଡିଏ ସାପ୍ତାହିକ ପତ୍ରିକା ପ୍ରଚାରିତ ହେବାର ଆରମ୍ଭ ହୋଇଅଛି । ଏବଂ ଆମ୍ଭେମାନେ ତହିଁର ପ୍ରଥମ ସଂଖ୍ୟା ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ପତ୍ରିକାର ଛାପାକାର ଓ ପ୍ରେସର ନାମ ଲେଖାନାହିଁ । କିନ୍ତୁ ସ୍ଥାନ ବାମଣ୍ଡା ହେଉଥିବାରୁ ସେଠା ରାଜାଙ୍କ ଜଗନ୍ନାଥ ବଲ୍ଲଭ ପ୍ରେସରୁ ବାହାରିବାର ଜଣାଯାଉଅଛି । ଏଥିର କଳେବର ଏକ ଖଣ୍ଡ ଡିମାଇ କାଗଜ ଏବଂ ବାର୍ଷିକ ଅଗ୍ରୀମ ମୂଲ୍ୟ ଡାକ ମାସୁଲ ସହିତ ଟ ୨ଙ୍କା । ସୁତରାଂ ଓଡ଼ିଶାର ଅନ୍ୟାନ୍ୟ ସଂବାଦ ପତ୍ରର ତୁଳନାରେ ସୁଲଭ ଅଟଇ । ଏହାଦ୍ୱାରା ମଧ୍ୟ ପ୍ରଦେଶାନ୍ତର୍ଗତ ଉତ୍କଳଖଣ୍ଡର ଗୋଟିଏ ଅଭାବ ପୂର୍ଣ୍ଣ ହେବାର ଆଶା ହେଉଅଛି । ଯେବେ ସେଠାଲୋକେ ଏହାକୁ ରଖିପାରିବେ ତେବେ ବଡ ଆନନ୍ଦର ବିଷୟ ହେବ । ଆମ୍ଭେମାନେ ଏହାର ଦୀର୍ଘ-ଜୀବନ କାମନା କରୁ ।'' *(୯)*

ସଂବଲପୁର ହିତୈଷିଣୀ ୧୯୨୩ ପର୍ଯ୍ୟନ୍ତ ଦୀର୍ଘ ୩୫ ବର୍ଷ ଜୀବିତ ରହି ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି ଓ ସମାଜ ଜୀବନକୁ ବିକଶିତ କରିଥିଲା ।

ଏ ସମୟ ଖଣ୍ଡରେ ଓଡ଼ିଶାରେ ସମାଲୋଚନା (୧୮୮୯) ଉତ୍କଳ ପ୍ରଭା (୧୮୯୧) ଇନ୍ଦ୍ରଧନୁ (୧୮୯୩), ବିଜୁଳି (୧୮୯୩) ଉତ୍କଳବଂଧୁ (୧୮୯୬) ଉତ୍କଳ ସାହିତ୍ୟ (୧୮୯୭), ଆଲୋଚନା (୧୯୦୦) ଉତ୍କଳ ମଧୁପ (୧୯୦୦), ମୁକୁର (୧୯୦୬) ସତ୍ୟବାଦୀ (୧୯୧୯) ପ୍ରଭୃତି ପତ୍ରିକା ଓଡ଼ିଆ ଭାଷା ସାହିତ୍ୟକୁ ପରିପୁଷ୍ଟ କରିଥିଲା । ଉତ୍କଳ ଦୀପିକା, ଉତ୍କଳ ପୁତ୍ର, ବାଲେଶ୍ୱର ସମ୍ବାଦ ବାହିକା, ଉତ୍କଳ ହିତୈଷିଣୀ, ବିଦେଶୀ ଓ ସମ୍ବଲପୁର ହିତୈଷିଣୀ ପରି ପତ୍ରିକାରେ ସାମ୍ବାଦିକତା ଥିଲା ମୁଖ୍ୟ, ଉତ୍କଳ ଦର୍ପଣ, ଉତ୍କଳ ମଧୁପ, ପ୍ରଦୀପ, ଉତ୍କଳ ପ୍ରଭା, ଉତ୍କଳ ସାହିତ୍ୟ, ମୁକୁର ଓ ସତ୍ୟବାଦୀ ସାହିତ୍ୟ ପତ୍ରିକା ରୂପେ ସୁବିଦିତ । ସାହିତ୍ୟ ଓ ସାମ୍ବାଦିକତା ଉଭୟ ଉତ୍କଳ ପୁତ୍ର, ସଂବଲପୁର ହିତୈଷିଣୀ, ନବ ସଂବାଦ, ଓଡ଼ିଆ ଓ ନବସଂବାଦ, ଆଶା ପତ୍ରିକାର ଅବଲମ୍ବନ ଥିଲା *(୧୦)* ଏ ପତ୍ରିକା ସମୂହ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ଉତ୍କଳୀୟ ଜାତୀୟ ଜୀବନକୁ ଉଜ୍ଜୀବିତ କରିଥିଲେ । ଏମାନେ ଯଥାର୍ଥରେ ଥିଲେ ସାହିତ୍ୟ-ସଂସ୍କୃତିର ବାର୍ତ୍ତାବହ ।

## ବାମଣ୍ଡାର ସାରସ୍ୱତ ପୃଷ୍ଠଭୂମି ଓ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା :

ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ସାର୍ ସୁଢ଼ଳଦେବଙ୍କ ପୃଷ୍ଠ ପୋଷକତାରେ ବାମଣ୍ଡାରେ ଏକ ଉଚ୍ଚକୋଟୀର ସାରସ୍ୱତ ବାତାବରଣ ସୃଷ୍ଟି ହୋଇଥିଲା । ସୁଢ଼ଳ ଦେବଙ୍କ ଦରବାରରେ ସୃଜନଶୀଳ ପଣ୍ଡିତ ଓ କୃତବିଦ୍ୟ ସାରସ୍ୱତ ପୁରୁଷଗଣ ଅଗ୍ରାଧିକାର ଲଭିଥିଲେ । ଦରବାର ଉଚ୍ଚାଙ୍ଗ ସାରସ୍ୱତ ଆଲୋଚନାରେ ସରଗରମ ହୋଇ ଉଠୁଥିଲା । କାବ୍ୟ, କବିତା, କଳା, ସାହିତ୍ୟ, ବ୍ୟାକରଣର ଆଲୋଚନା ସାହିତ୍ୟଚର୍ଚ୍ଚାର ଅଙ୍ଗୀଭୂତ ହୋଇଥିଲା । ନବୀନ ସହିତ ପ୍ରାଚୀନ ସାହିତ୍ୟର ଉତ୍କର୍ଷତା ପ୍ରତିପାଦନରେ ଏ ଭୂଖଣ୍ଡ ଉଦ୍ୟମରତ ଥିଲା । ଆଧୁନିକ କାବ୍ୟଧାରାର ପ୍ରତିଷ୍ଠାଦିଗରେ ଯେତିକି ତତ୍ପର ଥିଲା ପ୍ରାଚୀନ ସାହିତ୍ୟର ସୃଜନାତ୍ମକ ଅନୁଶୀଳନ ଦିଗରେ ସେତିକି ଥିଲା ଯତ୍ନଶୀଳ । ଏଣୁ ନବୀନ ଓ ପ୍ରାଚୀନ ସାହିତ୍ୟର ସଙ୍ଗମସ୍ଥଳ ଥିଲା ବାମଣ୍ଡା । ରାଧାନାଥଙ୍କ ଆଗମନ ସହିତ ଆଧୁନିକ ସାହିତ୍ୟର ଆବାହନ କରାଗଲା; ଅନ୍ୟ ପକ୍ଷରେ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା, ମଧୁସୂଦନ ମିଶ୍ର ତର୍କ ବାଚସ୍ପତି, କାଳୀଚରଣ ଦ୍ୱିବେଦୀ, ବ୍ରଜବନ୍ଧୁ ମିଶ୍ରଙ୍କ ଅବସ୍ଥାନ ରୀତି ଯୁଗୀୟ କାବ୍ୟଧାରା ଓ ସଂସ୍କୃତ ସାହିତ୍ୟକୁ ପ୍ରତିଷ୍ଠିତ କରିଥିଲା । ବୁଧ-ହଂସ-କେଳିସର ବାମଣ୍ଡା ସୁଢ଼ଳ ଦେବଙ୍କ ପୃଷ୍ଠପୋଷକତାରେ ଉତ୍କଳର ଉଜ୍ଜୟିନୀ ରୂପେ ବିଖ୍ୟାତ ହୋଇଥିଲା ।

ବାମଣ୍ଡା ରାଜା ସୁଢ଼ଳଦେବ କଟକ ଠାରେ ୧୮୮୫ ରେ 'ସୁଢ଼ଳ ପ୍ରେସ' ସ୍ଥାପନ କରିଥିଲେ। ପ୍ରେସର ପରିଚାଳକ ଥିଲେ ସୀତାନାଥ ରାୟ। ଏହି ପ୍ରେସ ସୌଜନ୍ୟରୁ ଚତୁର୍ଭୁଜ ପଟ୍ଟନାୟକଙ୍କ ସଂପାଦନାରେ ସମାଜ ସଂସ୍କାର ଉଦ୍ଦେଶ୍ୟନେଇ 'ସଂସ୍କାରକ' ପ୍ରକାଶ ପାଉଥିଲା। ଭାବଗ୍ରାହୀ ଦାସଙ୍କ ସଂପାଦନାରେ ପ୍ରକାଶିତ 'ସେବକ' ପତ୍ରିକା ସଂସ୍କାରକ ସହିତ ଯୋଗହେଲା। ଏ ଦୁଇ ପତ୍ରିକା ସୁଢ଼ଳଦେବଙ୍କ ଆର୍ଥିକ ସହାୟତା ଲାଭ କରିଥିଲା। *(୧୧)* ସଂସ୍କାରକର କିଛି ଆପତ୍ତିଜନକ ଲେଖା ଉପରେ ଓଡ଼ିଶାର ପତ୍ର ପତ୍ରିକା ମଧ୍ୟରେ ତୀବ୍ର ବିବାଦ ସୃଷ୍ଟି ହେଲା। *(୧୨)* ଫଳରେ ପ୍ରେସର ଏକ ଅଂଶ ସୀତାନାଥଙ୍କୁ ଦେଇ ଅନ୍ୟ ଅଂଶ ସୁଢ଼ଳଦେବ ୧୮୮୬ରେ ଦେବଗଡ଼କୁ ସ୍ଥାନାନ୍ତରିତ କରିଥିଲେ। *(୧୩)* ଏହା ଦେବଗଡ଼ରେ ସ୍ଥାପିତ ଜଗନ୍ନାଥ ବଲ୍ଲଭ ପ୍ରେସ ସହିତ ସଂଯୁକ୍ତ ହେଲା। ଜଗନ୍ନାଥ ବଲ୍ଲଭ ପ୍ରେସଟି ସେହିବର୍ଷ ଅର୍ଥାତ୍ ୧୮୮୬ରେ ଦେବଗଡ଼ ଠାରେ ରାଜା ପ୍ରତିଷ୍ଠା କରିଥିଲେ। ଜଗନ୍ନାଥ ବଲ୍ଲଭ ପ୍ରେସର କାର୍ଯ୍ୟ ସୁଚାରୁ ସଂପାଦନ ପାଇଁ ୧୮୮୯ରେ କାଳିକା ପ୍ରେସ ଏଥି ସହିତ ସଂଯୁକ୍ତ ହେଲା। କିନ୍ତୁ ବିଭିନ୍ନ ପୁସ୍ତକ ଓ ପତ୍ର ପତ୍ରିକା ପ୍ରକାଶନ ସମୟେ ଜଗନ୍ନାଥ ବଲ୍ଲଭ ଓ ସୁଢ଼ଳ ପ୍ରେସର ନାମ ମୁଦ୍ରିତ ହେଉଥିଲା। *(୧୪)*

୧୯୧୧ ଫେବୃୟାରୀ ମାସରେ ସଂବଲପୁର ହିତୈଷିଣୀ ପତ୍ରିକାର ଅର୍ଥରେ ଇଲେକ୍‌ଟ୍ରିକ ମେଶିନ୍ ପ୍ରେସ ଅଣାଯାଇ ସଂଯୁକ୍ତ ହେଲା। ଫଳରେ ପ୍ରେସକୁ ହିତୈଷିଣୀ ଇଲେକ୍‌ଟ୍ରିକ ମେଶିନ୍ ପ୍ରେସ ରୂପେ ନାମିତ କରାଗଲା। ଏ ପ୍ରେସର ସତ୍ତ୍ୱାଧିକାରୀ ହିତୈଷିଣୀ ପତ୍ରିକା। *(୧୫)*

ଅନେକ ଉତ୍ସାହୀ ବ୍ୟକ୍ତି ବିଭିନ୍ନ ସମୟରେ ପ୍ରେସ ସେକ୍ରେଟାରୀ ରୂପେ ନିଯୁକ୍ତି ହୋଇ ଏହାର ସୁପରିଚାଳନା କରିଥିଲେ। ପ୍ରଥମରୁ ୧୯୦୦ ଖ୍ରୀ: ପର୍ଯ୍ୟନ୍ତ ସୁଢ଼ଳ ପ୍ରେସ ଓ ଜଗନ୍ନାଥ ବଲ୍ଲଭ ପ୍ରେସର ସେକ୍ରେଟାରୀ ବୃନ୍ଦାବନ ଚନ୍ଦ୍ର ଦେବ ଥିଲେ। ବିଶ୍ୱନାଥ ପାଣିଗ୍ରାହୀ ୧୯୦୨ ପର୍ଯ୍ୟନ୍ତ ସେକ୍ରେଟାରୀ ପଦ ସଂପାଦନ କରିଥିଲେ। ପରେ ପରେ ରସାନନ୍ଦ ପ୍ରଧାନ, କୁମୁଦ ବଂଧୁ ସେନ, ନବଘନ ନାୟକ, ଦୀନବଂଧୁ ଗଡନାୟକ, ଲିଙ୍ଗରାଜ ପାଣିଗ୍ରାହୀ ପ୍ରମୁଖ ପ୍ରେସ ପରିଚାଳନା କରିଥିଲେ।

୧୯୨୩ ରେ ହିତୈଷିଣୀ ପ୍ରକାଶନ ବନ୍ଦ ହେଲା। ଏହା ପରଠାରୁ ପ୍ରେସ୍‌ଟି 'ଇଲେକ୍‌ଟ୍ରିକ ମେଶିନ ପ୍ରେସ୍' ନାମରେ ୧୯୪୭ ପର୍ଯ୍ୟନ୍ତ ଚାଲିଲା। ୧୯୪୮ ପରେ ଏହାକୁ ସରକାର ଗ୍ରହଣ କରି ଏ ପର୍ଯ୍ୟନ୍ତ 'ସରକାରୀ ମୁଦ୍ରଣାଳୟ' ରୂପେ ଚାଲିଛି।

ପଶ୍ଚିମ ଓଡ଼ିଶାର ସର୍ବପ୍ରଥମ ଛାପାଖାନା ଭାବରେ ଜଗନ୍ନାଥ ବଲ୍ଲଭ ପ୍ରେସ ବହୁ ସାହିତ୍ୟ ସେବୀଙ୍କ ରଚନାକୁ ଲୋକ ଲୋଚନକୁ ଆଣିଛି। ଓଡ଼ିଆ, ଦେବନାଗରୀ, ଓ ବଙ୍ଗଳା ଲିପିରେ ଅନେକ ଦୁଷ୍ପ୍ରାପ୍ୟ ରଚନା ମୁଦ୍ରଣ କରି ସାହିତ୍ୟ ଜଗତରେ ନୂତନ କ୍ରାନ୍ତି ଆଣିଛି। ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଏ ପ୍ରେସର ଅବଦାନରେ ଋଦ୍ଧିମନ୍ତ ହୋଇଛି।

## ସଂବଲପୁର ହିତୈଷିଣୀ ପ୍ରକାଶର ବିବରଣୀ :

ସମ୍ବାଦପତ୍ର ଆଧୁନିକ ଜୀବନର ସାଂସ୍କୃତିକ ବାର୍ତ୍ତାବହ । ସଭ୍ୟତାର ଅଗ୍ରଗତି ଓ ଜାତୀୟ ଜୀବନର ଉତ୍ତରଣର ସ୍ମାରକୀ । ଏହା କର୍ମର ବାହକ, ମଣିଷତ୍ୱର ଉପାସକ ଏବଂ ଜନମତର ସଞ୍ଚାରକ । ଜାତି ଦେଶ ଓ ଧର୍ମର ପାର୍ଥକ୍ୟକୁ ସଂକୁଚିତ କରି ଏହା ଐକ୍ୟର ସଂହତିର ବାର୍ତ୍ତା ପ୍ରଦାନ କରେ । ଏକ ବୃହତ ଏବଂ ସ୍ୱଚ୍ଛ ସମାଜ ଗଠନର ଅଭିଳାଷ ରଖେ । ଏହାର ଆଭିମୁଖ୍ୟ ସମାଜ ଓ ବିଶ୍ୱକୁ ଆଦର୍ଶମୟ କରି ଗଢ଼ି ତୋଳିବା । ରାଜକୀୟ ଶକ୍ତି ନିକଟରେ ଏହା ଜନମତର ପ୍ରଖ୍ୟାପକ । ପୁଣି ଶାସନ ବିଧାନର ବାଣୀ ଜନସାଧାରଣରେ ଏହା ସାହାଯ୍ୟରେ ପ୍ରଚାରିତ ହୁଏ । ଅଳସ କର୍ମକୁଣ୍ଠ ବ୍ୟକ୍ତିର ପ୍ରାଣରେ ଏହା କର୍ମୋତ୍ସାହ ସଞ୍ଚାରକ, ବିଚାରହୀନ ବ୍ୟକ୍ତି ପକ୍ଷରେ ଉପଦେଶ ବାଣୀ, ଦରିଦ୍ର ନିମନ୍ତେ ବିଚିତ୍ର ପାଠାଗାର, ଏକାନ୍ତ ଉଦାସୀନ ବ୍ୟକ୍ତିକୁ ଏହା ଉଦ୍‌ବୁଦ୍ଧ, ଲକ୍ଷ୍ୟଭ୍ରଷ୍ଟ ପୁରୁଷକୁ ନୀତି ସଂପନ୍ନ ଓ ବିଜ୍ଞ ଲୋକଙ୍କୁ ମଧ୍ୟ ଶିକ୍ଷିତ କରିପାରେ ।(୧୬)

ଏମିତି ଏକ ଆଦର୍ଶମୟ ଆଭିମୁଖ୍ୟ ପ୍ରଚାରରେ ସଂବଲପୁର ହିତୈଷିଣୀ ସଫଳ ହୋଇଥିଲା । ମେ-୩୦-୧୮୮୯ରେ ହିତୈଷିଣୀର ପ୍ରଥମ ସଂଖ୍ୟା ଲୋକଲୋଚନକୁ ଆସିଥିଲା । କିନ୍ତୁ ହିତୈଷିଣୀ ପ୍ରକାଶନ ଅନ୍ତରାଳେ ଏକ ଉତ୍ସର୍ଗୀକୃତ ସାରସ୍ୱତ ପୃଷ୍ଠଭୂମିକୁ ବିଶ୍ଳେଷଣ ନ କଲେ ଏହାର ଜନ୍ମ ଜାତକର ମହାର୍ଘତା ପ୍ରତିଫଳିତ ହେବ ନାହିଁ ।

ବାସୁଦେବ ବ୍ରଜସୁନ୍ଦର ଦେବଙ୍କ ତିରୋଧାନ ପରେ ବାମଣ୍ଡାର ସିଂହାସନ ଆରୋହଣ କଲେ । ସିଂହାସନ ପ୍ରାପ୍ତିପରେ ସେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ ଦିଗରେ ପଦକ୍ଷେପ ଗ୍ରହଣ କଲେ । ସମାଜର ଉନ୍ନତି ପାଇଁ ଶିକ୍ଷାର ପ୍ରଚାର ଓ ପ୍ରସାର ଦିଗରେ ମନୋନିବେଶ କଲେ ।

୧୮୭୧ରେ ବାସୁଦେବଙ୍କର କଳାହାଣ୍ଡି ମହାରାଜ ଉଦିତ ପ୍ରତାପ ଦେବଙ୍କ ମଧ୍ୟମା କନ୍ୟା ସହ ବିବାହ ଅନୁଷ୍ଠିତ ହୁଏ । ୧୮୭୨ ମଇ ୩ ତାରିଖରେ ରାଣୀ ଏକ ପୁତ୍ର ସନ୍ତାନ ପ୍ରସବ କରି ବର୍ଷେ ପରେ ଇହଧାମ ତ୍ୟାଗ କରନ୍ତି । ପତ୍ନୀ ବିୟୋଗରେ ଶୋକାର୍ତ୍ତ ସୁଢ଼ଳଦେବ ଦେଶ ପର୍ଯ୍ୟଟନରେ ବାହାରନ୍ତି । ସଂବଲପୁର ଠାରୁ ମହାନଦୀ ପଥରେ କଟକ ପହଞ୍ଚି ଜୋବରା ଠାରେ ଅବସ୍ଥାନ କରନ୍ତି । ଉତ୍କଳ ଦୀପିକାର ସଂପାଦକ ଗୌରୀଶଙ୍କରଙ୍କ ସାହାଯ୍ୟରେ କଟକର ବିଭିନ୍ନ ସ୍ଥାନ ପରିଦର୍ଶନ କରନ୍ତି । କଟକ ପ୍ରିଣ୍ଟିଂ କଂପାନୀ ଓ ମିଶନ ପ୍ରେସର କାର୍ଯ୍ୟ ପଦ୍ଧତି, ପ୍ରତିଷ୍ଠା ଅଭିମୁଖ୍ୟ ଓ ଉପକାରିତା ତାଙ୍କୁ ଆକୃଷ୍ଟ କରିଥିଲା । ଏହା ନିଜର ରାଜଧାନୀରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ପାଇଁ ତାଙ୍କୁ ଅନୁପ୍ରେରିତ କରେ । (୧୭)

୧୮୮୬ ଓ ୧୮୮୭ ବେଳକୁ ଉତ୍କଳ ଦୀପିକାର ପ୍ରଥମ ପୃଷ୍ଠାରେ ବାମଣ୍ଡା ବିଜ୍ଞାପନ ରୂପେ ସୁଢ଼ଳଦେବ ଅନେକ ସାରସ୍ୱତ ଆଲୋଚନା ପ୍ରକାଶ କରନ୍ତି । ଏ ପର୍ଯ୍ୟାୟରେ ବୈଦିକ ପ୍ରସ୍ତାବ ଶୀର୍ଷକରେ ସେ ବେଦ ବେଦାନ୍ତ ର ଆଲୋଚନା ଏବଂ ବ୍ରାହ୍ମ, ହିନ୍ଦୁ ତଥା ଖ୍ରୀଷ୍ଟିୟାନ ଧର୍ମର ଭ୍ରାନ୍ତି ଉନ୍ମୋଚନ ମୂଳକ ଲେଖାମାନ ପ୍ରକାଶ କରୁଥିଲେ । (୧୮) ଏ ଲେଖା ଗୁଡିକ ଉପରେ ଦୀପିକାରେ ବାଦାନୁବାଦ ଚାଲିଥିଲା ।

ସୁଢ଼ଳଦେବ କାୟମନୋବାକ୍ୟରେ ସଂସ୍କାରକ ଥିଲେ । ସମାଜ, ଧର୍ମ, ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଥିବା କୁସଂସ୍କାର ଦୂରୀକରଣ ଦିଗରେ ସେ ଦୃଢ଼ ପରିକର ଥିଲେ । ତାଙ୍କର ଏ ଲକ୍ଷ୍ୟ ସାଧନ ପାଇଁ ସେ ବାଲ୍ୟବିବାହ, ସତୀଦାହ, ବୃଦ୍ଧ ବିବାହ, ନିଶା ସେବନ ବିରୁଦ୍ଧରେ ଜନମତ ସୃଷ୍ଟି କରିଥିଲେ । ଅଶିକ୍ଷାର ଅଂଧକାରକୁ ଦୂରେଇ ଶିକ୍ଷାର ପ୍ରସାର ଏବଂ ବିଶୁଦ୍ଧ ପାଠ୍ୟ ପୁସ୍ତକ ପ୍ରଚଳନ ଦିଗରେ ଗୁରୁତ୍ୱାରୋପ କରିଥିଲେ । ତାଙ୍କର ଏ ସମସ୍ତ ଲକ୍ଷ୍ୟ ସାଧନ ଓ ଜନମତ ଜାଗ୍ରତ ପାଇଁ ପତ୍ରିକା ପ୍ରକାଶନ ଅପରିହାର୍ଯ୍ୟ ହୋଇପଡ଼ିଥିଲା ।

ସୁଢ଼ଳ ପ୍ରେସ କଟକରୁ ସୁଢ଼ଳ ଦେବଙ୍କ ଆର୍ଥିକ ସହାୟତାରେ ସେବକ ଓ ସଂସ୍କାରକ ପତ୍ରିକା ପ୍ରକାଶ ଲଭିଥିଲା । ୧୮୮୬ ରେ ପ୍ରକାଶିତ ନବ ସମ୍ବାଦ ତାଙ୍କରି ଆର୍ଥିକ ସହାୟତା ଲାଭ କରେ । (୧୯) ସଂସ୍କାରକରେ ଚତୁର୍ଭୁଜ ବିବାଦୀୟ ତଥ୍ୟ ପରିବେଷଣ କରି ତତ୍କାଳୀନ ପତ୍ର ପତ୍ରିକା ଦ୍ୱାରା ନିଷ୍ଠୁର ଭାବେ ସମାଲୋଚିତ ହୁଅନ୍ତି । (୨୦) ଏ ପ୍ରସଙ୍ଗ ସୁଢ଼ଳଦେବଙ୍କୁ ବ୍ୟଥିତ କରେ । ସେ ସଂସ୍କାରକକୁ ଆର୍ଥିକ ସହାୟତା ପ୍ରଦାନ ବନ୍ଦ କରନ୍ତି ଏବଂ ଗଡଜାତ ଅଞ୍ଚଳର ସାଂସ୍କୃତିକ ବିକାଶ ପାଇଁ ଏକ ଉତ୍କୃଷ୍ଟ ପତ୍ରିକା ପ୍ରକାଶନର କାମନା ପୋଷଣ କରନ୍ତି । ଉଲ୍ଲିଖିତ ତଥ୍ୟ ସମୂହକୁ ବିଶ୍ଳେଷଣ କଲେ ପ୍ରମାଣିତ ହୁଏ ଯେ ସଂବଲପୁର ହିତୈଷିଣୀ ପ୍ରକାଶନ ଥିଲା ତତ୍କାଳୀନ ଯୁଗୀୟ ଆବେଦନ । ସାମାଜିକ ଓ ସାଂସ୍କୃତିକ ଆବଶ୍ୟକତା ପରିପୂରଣ ପାଇଁ ସୁଢ଼ଳଦେବଙ୍କ ପୃଷ୍ଠପୋଷକତା ଥିଲା ବିଧି ନିର୍ଦ୍ଦିଷ୍ଟ । ସଂବଲପୁର ହିତୈଷିଣୀ ପ୍ରକାଶ ପାଇଁ ସେ ଦୀପିକା ସଂପାଦକଙ୍କ ନିଷ୍ଠା ଓ ଆନ୍ତରିକତା ଦ୍ୱାରା ପ୍ରେରଣା ଲଭିଥିଲେ । ସଂସ୍କାରକର ବିଶୃଂଖଳତା ତାଙ୍କୁ ସତର୍କ କରାଇଥିଲା ଏବଂ ସାହିତ୍ୟ ଓ ଭାଷାର ସମୃଦ୍ଧି ସାଧନର ଲକ୍ଷ୍ୟ ପୂରଣ ହୋଇଥିଲା ।

ବାମଣ୍ଡା ଦରବାରରେ ସୁଢ଼ଳଦେବ ନିଜର ଅଭିଳାଷ ପ୍ରକାଶ କରିଥିଲେ ଏବଂ ଏହା ବିଦ୍ୱାନ ମଣ୍ଡଳୀ ଦ୍ୱାରା ସମର୍ଥନ ଲାଭ କରିଥିଲା । ରାଜକୁମାର ହାଇସ୍କୁଲ (ପରେ ରାଜା ବାସୁଦେବ ହାଇସ୍କୁଲ) ର ପ୍ରଧାନ ଶିକ୍ଷକ ଗଣେଶ୍ୱର ପଟ୍ଟନାୟକ, ନୀଳମଣି ବିଦ୍ୟାରତ୍ନ, ଭୁବନେଶ୍ୱର ବଡପଣ୍ଡା ପ୍ରମୁଖ ରାଜାଙ୍କ ଏ ପବିତ୍ର ଆଗ୍ରହକୁ ସ୍ୱାଗତ ଜଣାଇଥିଲେ । ରାଧାନାଥଙ୍କ ପ୍ରଥମ ବାମଣ୍ଡା ଆଗମନ (୧୮୮୬) ସମୟେ ସେ ରାଜାଙ୍କ ଏ ଅଭିଳାଷକୁ ଉତ୍ସାହିତ କରିଥିଲେ ।

ବାସୁଦେବଙ୍କ ବଙ୍ଗଳା ଜୀବନୀକାର ସ୍ୱୀକାର କରନ୍ତି ପତ୍ରିକାର ପୃଷ୍ଠପୋଷକ ଓ ପରିଚାଳକ ରୂପେ ପତ୍ରିକାର ସାହିତ୍ୟିକ ସଂପଦ ଓ ସମ୍ମାନ ବୃଦ୍ଧି ନିମନ୍ତେ ବାସୁଦେବ ପ୍ରାଣପଣେ ଯତ୍ନ କରିଥିଲେ । ତାଙ୍କର ଏହି କାର୍ଯ୍ୟରେ ସର୍ବପ୍ରଥମେ ଗଣେଶ୍ୱର ପଟ୍ଟନାୟକ ଓ ପରେ ଦୀର୍ଘକାଳବ୍ୟାପୀ ନୀଳମଣି ବିଦ୍ୟାରତ୍ନ ସହଯୋଗ କରିଥିଲେ । ଜୀବନୀକାର ସଂବଲପୁର ହିତୈଷିଣୀର ଜନ୍ମ ୧୮୮୭ ଖ୍ରୀ: ବୋଲି ଘୋଷଣା କରନ୍ତି *(୨୧)*

ବଙ୍ଗଳା ଜୀବନୀ ବ୍ୟତୀତ ନିମ୍ନଲିଖିତ ସୂତ୍ରରୁ ମଧ ସଂବଲପୁର ହିତୈଷିଣୀ ୧୮୮୭ ରେ ପ୍ରକାଶ ପାଇଥିବାର ଜଣାପଡେ ।

୧: ବାସୁଦେବ ଗ୍ରନ୍ଥାବଳୀ ସଂ-ଶ୍ରୀ ରବିନ୍ଦ୍ରନାଥ ଦେବ (୧୯୫୬) ପୃ:-୨୦ ।

୨: ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ, ତୃତୀୟଭାଗ ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର, ପ୍ରଥମ ସଂସ୍କରଣ-୧୯୬୪ । ପୃ-୨୦୪ : ନୀଳମଣି ବିଦ୍ୟାରତ୍ନ ଶୀର୍ଷକରେ ଲେଖାଯାଇଛି, "ଖ୍ରୀ: ୧୮୮୭ରେ ବାମଣ୍ଡାର ମହାରାଜା ସାର୍ ବାସୁଦେବ ସୁଡ଼ଳଦେବ ସଂବଲପୁର ହିତୈଷିଣୀ ପତ୍ରିକା ଆରମ୍ଭ କରିବା ପରେ ନୀଳମଣି ବିଦ୍ୟାରତ୍ନଙ୍କ ସଂପାଦକତ୍ୱରେ ତାହା ୧୬ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା ।"

ସେହି ଭାଗର ୩୯୧ ପୃଷ୍ଠାରେ ବାସୁଦେବ ସୁଡ଼ଳଦେବ ପ୍ରସଙ୍ଗରେ ମଧ ହିତୈଷିଣୀ ୧୮୮୭ରେ ପ୍ରକାଶ ପାଇଥିବାର ସୂଚନା ଦିଆଯାଇଛି ।

୩: ଚିନ୍ତାମଣି ଗ୍ରନ୍ଥାବଳୀ-୪ର୍ଥ ଖଣ୍ଡ-୧୯୪୨: ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଜୀବନୀ ପର୍ଯ୍ୟାୟରେ ଚିନ୍ତାମଣି ଉଲ୍ଲେଖ କରିଛନ୍ତି "ବିଶେଷତଃ ଗଡଜାତମାନଙ୍କରେ ଲିଖିତ ଓ କଥିତ ଭାଷାର କୌଣସି ପ୍ରଭେଦ ନଥିଲା କହିଲେ ଚଳେ । ମୋଗଲବନ୍ଦୀ ଅଞ୍ଚଳରେ ମୁଷ୍ଟିମେୟ ଲୋକହିଁ ଭାଷା ଚର୍ଚ୍ଚାରେ ପ୍ରବୃତ୍ତ ହୋଇଥିଲେ । ଏହି ଶୋଚନୀୟତାର ନିରାକରଣ ନିମିତ୍ତ ୧୮୮୭ ଖ୍ରୀ:ରେ ମହାରାଜ ବାସୁଦେବ ଦେବଗଡରୁ 'ସଂବଲପୁର ହିତୈଷିଣୀ' ନାମ୍ନୀ ପତ୍ରିକା ପ୍ରକାଶ କଲେ । ସେ ସ୍ୱୟଂ ସୁପଣ୍ଡିତ ଓ ମନୀଷୀ ଥିଲେ ତେଣୁ ପତ୍ରିକାର ସଂପାଦନା ଓ ପରିଚାଳନା କାର୍ଯ୍ୟରେ ନିଜେ ଏକମାତ୍ର ପୃଷ୍ଠପୋଷକ ରୂପେ କାର୍ଯ୍ୟ କରିବାକୁ ଲାଗିଲେ । ପ୍ରଥମେ ରାଜକୁମାର ସ୍କୁଲର ହେଡମାଷ୍ଟର ବାବୁ ଗଣେଶ୍ୱର ପଟ୍ଟନାୟକ ବି:ଏ:ଏହି ପତ୍ରିକାର ସଂପାଦକ ଥିଲେ । ମାତ୍ର କିଛିଦିନ ପରେ ମହାରାଜା ସୁଡ଼ଳଦେବ ନୀଳମଣି ବିଦ୍ୟାରତ୍ନଙ୍କୁ ପତ୍ରିକାର ସ୍ଥାୟୀ ସଂପାଦକ କାର୍ଯ୍ୟରେ ନିଯୁକ୍ତ କଲେ ।" *(୨୨)*

୪: ସୁଢ଼ଳଦେବ : ଶ୍ରୀକୃଷ୍ଣଚନ୍ଦ୍ର କର (୧୯୩୧) ଏ ପୁସ୍ତକରେ ଲେଖକ ଘୋଷଣା କରିଛନ୍ତି-"ଖବର କାଗଜ କିମ୍ବା ମାସିକ ପତ୍ରିକାର ପ୍ରଚାର ଦ୍ୱାରା ହିଁ ଦେଶରେ ପ୍ରକୃତ ସାହିତ୍ୟ ଚର୍ଚ୍ଚା ହୁଏ । ଏଥିଲାଗି ରାଜା ନିଜ ରାଜଧାନୀ ଦେବଗଡ଼ରେ ଗୋଟିଏ ଛାପାଖାନା ବସାଇ

ସେଠାରୁ ୧୮୮୭ ଖ୍ରୀ:ରେ ସଂବଲପୁର ହିତୈଷିଣୀ ନାମରେ ଖଣ୍ଡିଏ ସାପ୍ତାହିକ ଖବରକାଗଜ ବାହାର କଲେ।'' *(୨୩)*

**୫: ରାଧାନାଥ ଜୀବନୀ : ଦୁର୍ଗାଚରଣରାୟ**

''୧୯୮୬ ସାଲରେ ରାଜା ବାସୁଦେବ ସୁଢ଼ଳଦେବ ବାମଣ୍ଡାର ରାଜଧାନୀ ଦେବଗଡରେ ଜଗନ୍ନାଥ ବଲ୍ଲଭ ପ୍ରେସ୍ ନାମରେ ମୁଦ୍ରାଯନ୍ତ୍ର ସ୍ଥାପନ କରିଥିଲେ। ମାତ୍ର ରାଧାନାଥଙ୍କ ସହିତ ଦେଖାହେବା ଫଳରେ ଏବଂ ବହୁ ଆଲୋଚନା ଉତ୍ତାରୁ ୧୮୮୭ ସାଲରେ ସଂବଲପୁର ହିତୈଷିଣୀ ନାମକ ସାପ୍ତାହିକ ପତ୍ରିକାର ସୃଷ୍ଟି କଲେ। *(୨୪)*

**୬: ଦାମୋଦର ମିଶ୍ର: ପ୍ରଧାନପାଟ କାବ୍ୟ**

ସଂବଲପୁର ହିତୈଷିଣୀ ୭/୧୧ ଓ ୭/୧୨ ସଂଖ୍ୟାରେ ଦାମୋଦର ମିଶ୍ରଙ୍କ ପ୍ରଧାନପାଟ କାବ୍ୟ ପ୍ରକାଶ ପାଏ। ଏ କାବ୍ୟର ଫୁଟ ନୋଟରେ ଦାମୋଦର ସ୍ବୀକାର କରନ୍ତି- ''୧୮୮୮ ସାଲରେ''ପ୍ରଧାନ ପାଟ'' ଶୀର୍ଷକ ଗୋଟିଏ କ୍ଷୁଦ୍ର କବିତା ରଚନା କରି ସଂବଲପୁର ହିତୈଷିଣୀ ରେ ପ୍ରକାଶ କରିଥିଲି। ଛାତ୍ର ଜୀବନରେ ମୋର ସେହି କବିତାଟି ପ୍ରଥମ ରଚନା, ପୂର୍ବେ କବିତା ଲେଖିବାକୁ ମୋର ଆଦୌ ଶକ୍ତି ନଥିଲା।'' *(୨୫)* ଏଥିରୁ ପ୍ରମାଣିତ ହୁଏ ସଂବଲପୁର ହିତୈଷିଣୀ ୧୮୮୮ ବେଳକୁ ପ୍ରକାଶ ପାଉଥିଲା।

ଏ ସମସ୍ତ ତଥ୍ୟକୁ ବିଶ୍ଳେଷଣ କଲେ ୧୮୮୭ ବେଳକୁ ସଂବଲପୁର ହିତୈଷିଣୀ ପ୍ରକାଶ ପାଉଥିବାର ପ୍ରମାଣ ମିଳିଥାଏ। ହିତୈଷିଣୀର ପ୍ରଥମ ସଂଖ୍ୟା ସଂପ୍ରତି ଦୁଷ୍ପ୍ରାପ୍ୟ। ଲେଖକର ଦୃଷ୍ଟିରେ ହିତୈଷିଣୀର ପ୍ରଥମ ଭାଗର ଷଷ୍ଠ ସଂଖ୍ୟା, ନବମ ସଂଖ୍ୟା ଏବଂ ତଦ୍‌ପରବର୍ତ୍ତୀ ସଂଖ୍ୟା ଆସିଛି। ଏ ସବୁଥିରୁ ଏହା ୧୮୮୯ ରେ ପ୍ରକାଶ ପାଇଥିବାର ଜଣାପଡେ। ସଂବଲପୁର ହିତୈଷିଣୀର ପ୍ରଥମ କେତୋଟି ସଂଖ୍ୟାର ସଂପାଦନା ଗଣେଶ୍ବର ପଟ୍ଟନାୟକ କରିଥାଇ ପାରନ୍ତି(?) କିନ୍ତୁ ଲେଖକର ଦୃଷ୍ଟିରେ ଆସିଥିବା ସଂଖ୍ୟାରେ ନିମ୍ନ ପ୍ରଦତ୍ତ ବିଜ୍ଞାପନରୁ ଏହାର ମ୍ୟାନେଜର ନୀଳମଣି ବିଦ୍ୟାରତ୍ନ ଥିବା ଜଣାଯାଏ।

**ବିଜ୍ଞାପନ**

ଏହି ହିତୈଷିଣୀ ପତ୍ରିକା ସମ୍ବନ୍ଧୀୟ ଚୀଠି (ଚିଠି) ପତ୍ର ଟଂକା କଉଡି, ଏବଂ ବିନିମୟ ପତ୍ରାଦି ନିମ୍ନ ଠିକଣାକୁ ପଠାଇବାକୁ ହେବ। ବେରିଂ ପତ୍ର ଗୃହୀତ ହେବନାହିଁ। ରିପ୍ଲାଇ କାର୍ଡରେ କିମ୍ବା ଅର୍ଦ୍ଧ ଅଣାର ଟିକଟ ସହିତ ପତ୍ର ଲେଖିଲେ ଉତ୍ତର ପଠାଯାଏ।

ବାମଣ୍ଡା — ଶ୍ରୀ ନୀଳମଣି ବିଦ୍ୟାରତ୍ନ

ସମ୍ବଲପୁର ପୋଷ୍ଟାଫିସ୍ — ପତ୍ରିକାର ମ୍ୟାନେଜର'' *(୨୬)*

ଏ ବିଜ୍ଞାପନଟି ପତ୍ରିକାର ଶେଷ ପୃଷ୍ଠାରେ ପ୍ରଦତ୍ତ ହେଉଥିଲା ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ଏହା ପତ୍ରିକା ସାମ୍ନାରେ ପ୍ରଦତ୍ତ ହେଲା। ଉତ୍କଳ ଦୀପିକା (୨୪/୨୬) ରେ

ସଂବଲପୁର ହିତୈଷିଣୀ ପ୍ରଥମ ସଂଖ୍ୟା (୧୮୮୯) କୁ ସ୍ୱାଗତ କରାଯାଇଛି । ଏ ପ୍ରସଙ୍ଗରେ ପତ୍ରିକାର ଛାପାକାର ବା ପ୍ରେସର ନାମ ଇତ୍ୟାଦି ନଥିବା କୁହାଯାଇଛି ।

ଏଣୁ ଅନୁମାନ କରାଯାଇ ପାରେ ସଂବଲପୁର ହିତୈଷିଣୀର ପ୍ରଥମ କେତୋଟି ସଂଖ୍ୟା ସୁଢ଼ଳଦେବ ନିଜସ୍ୱ ପ୍ରଚେଷ୍ଟାରେ ପ୍ରକାଶ କରିଥିଲେ ଏବଂ ଏଥିରେ ତାଙ୍କୁ ସାହାଯ୍ୟ କରିଥିଲେ ଗଣେଶ୍ୱର ପଟ୍ଟନାୟକ । ପରେ ପରେ ବିଧିବଦ୍ଧ ଭାବେ ବିଦ୍ୟାରତ୍ନଙ୍କୁ ଦାୟିତ୍ୱ ଅର୍ପଣ କରାଯାଇଥିଲା ।

ଏ ପ୍ରସଙ୍ଗରେ ଲେଖକର ଜଣେ ସ୍ୱର୍ଗତଃ ଶୁଭେଚ୍ଛୁ ଦୀନବଂଧୁ ପଟ୍ଟନାୟକ (୧୯୦୭-୧୯୯୫) ଙ୍କ ବକ୍ତବ୍ୟ ସ୍ମରଣ ଯୋଗ୍ୟ । ତାଙ୍କ ମତ ଅନୁସାରେ ୧୮୮୭ ରେ ସଂବଲପୁର ହିତୈଷିଣୀ ଗଣେଶ୍ୱର ପଟ୍ଟନାୟକଙ୍କ ସଂପାଦନାରେ ପାକ୍ଷିକ ରୂପେ ଆମ୍ଭ ପ୍ରକାଶ କରିଥିଲା ଏବଂ ୧୮୮୯ ରୁ ଏହା ସାପ୍ତାହିକ ରୂପେ ବିଦ୍ୟାରତ୍ନଙ୍କ ସଂପାଦକତ୍ୱରେ ବହୁପ୍ରସାରୀ ହେଲା । ଏ ବକ୍ତବ୍ୟକୁ ଏକ ଅନୁମାନ ମାତ୍ର ବୋଲି ଲେଖକ ଗ୍ରହଣ କରିଛି । କାରଣ ଏହା ସପକ୍ଷରେ କୌଣସି ବଳିଷ୍ଠ ଯୁକ୍ତି ମିଳି ନାହିଁ । ଏପରିକି ସମକାଳୀନ କୌଣସି ପତ୍ରିକାରେ ୧୮୮୭ର ହିତୈଷିଣୀ ପ୍ରାପ୍ତିର ସୂଚନା ମିଳେନାହିଁ । ଏଣୁ ଉତ୍କଳ ଦୀପିକାର ପ୍ରାପ୍ତି ସ୍ୱୀକାରକୁ ପ୍ରମାଣିକ ରୂପେ ଗ୍ରହଣ କରି ୧୮୮୯ ମେ-୩୦କୁ ହିତୈଷିଣୀର ଜନ୍ମଦିନ ରୂପେ ଗ୍ରହଣ କରିବା ଅଧିକ ଯୁକ୍ତିଯୁକ୍ତ । ପୁନଶ୍ଚ ସଂବଲପୁର ହିତୈଷିଣୀର ଭାଗ ଓ ସଂଖ୍ୟା କୁ ବିଚାର କଲେ ୧୮୮୯ ସପକ୍ଷରେ ହିଁ ଯୁକ୍ତି ସିଦ୍ଧ ହୁଏ । ହିତୈଷିଣୀର ବର୍ଷପୂର୍ତ୍ତି ତଥା ବିଦ୍ୟାରତ୍ନଙ୍କ ବିଦାୟ ରଚନାରେ ମଧ ୧୮୮୯ କୁ ହିତୈଷିଣୀର ଆରମ୍ଭ ସମୟ ରୂପେ ସ୍ୱୀକାର କରିଛନ୍ତି । ହିତୈଷିଣୀ ୧.୧.୧୯୦୨ ସଂଖ୍ୟା ଥିଲା ବିଦ୍ୟାରତ୍ନ ସଂପାଦିତ ଶେଷ ସଂଖ୍ୟା । ଏହି ସଂଖ୍ୟାରେ ପ୍ରଦତ୍ତ ବିଦ୍ୟାରତ୍ନଙ୍କ ବିଦାୟ ବକ୍ତବ୍ୟ ପ୍ରଣିଧାନ ଯୋଗ୍ୟ-''ସଂବଲପୁର ହିତୈଷିଣୀର ବୟଃକ୍ରମ ବର୍ତ୍ତମାନ ୧୩ ବର୍ଷ । ଏହି ୧୩ ବର୍ଷ କାଳ ମୁଁ ଏହି ପତ୍ରିକାର ସଂପାଦକ ଓ କାର୍ଯ୍ୟାଧକ୍ଷ ସ୍ୱରୂପ କାର୍ଯ୍ୟକରି ଆସୁଅଛି । ମୋର ଉକ୍ତ କାର୍ଯ୍ୟ ଯଥାଯଥ ରୂପେ ସଂପାଦନ କରିବା ଭଳି ଯୋଗ୍ୟତା ବହୁଦର୍ଶିତା ନଥିଲେ ମଧ ମୋର କ୍ଷୁଦ୍ର ଶକ୍ତିରେ ଯେତେଦୂର ହୋଇପାରେ ତାହା କରିଅଛି ।'' *(୨୭)*

ଏତଦ୍‌ବ୍ୟତୀତ ହିତୈଷିଣୀ (୨୦/୨୬) ତା-୧୫.୫.୧୯୦୯ ସଂଖ୍ୟାରେ ପ୍ରେସ ସଂସ୍କାର ସକାଶେ ହିତୈଷିଣୀ ବନ୍ଦ ଶୀର୍ଷକ ସଂବାଦରେ ଜଗନ୍ନାଥବଲ୍ଲଭ ପ୍ରେସର ପ୍ରତିଷ୍ଠା ୨୩ ବର୍ଷ ହେଲା ଓ ହିତୈଷିଣୀ ସର୍ବସାଧାରଣଙ୍କ ଅନୁଗ୍ରହରୁ ଏକବିଂଶତମ ବର୍ଷ ଅତିକ୍ରମ କରୁଥିବାର ସୂଚନା ଦିଆଯାଇଛି । ହିତୈଷିଣୀ (୩୪/୨୦) ତା-୩.୩.୧୯୨୩ ସଂଖ୍ୟାରେ

'ହିତୈଷିଣୀ ବନ୍ଦ' ଶୀର୍ଷକ ସଂବାଦ ପରିବେଷଣ କରାଯାଇଥିଲା । ''ଆଗାମୀ ସପ୍ତାହରୁ ''ସମ୍ବଲପୁର ହିତେଷିଣୀ'' ୩୫ବର୍ଷ ପରେ ଚିରଦିନ ପାଇଁ ବନ୍ଦ ହେବ ।'' ହିତୈଷିଣୀ (୨୯/୧) ତା ୧୦.୯.୧୯୧୭ ସଂଖ୍ୟାରେ ସଂପାଦକଙ୍କ ନବବର୍ଷ ଆବାହନ ଗଦ୍ୟ ରଚନାରେ ହିତୈଷିଣୀର ପ୍ରଥମ ଚାଳକ ରୂପେ ବିଦ୍ୟାରତ୍ନ ସ୍ୱୀକୃତ ।

ଏ ସମସ୍ତ ତଥ୍ୟ ପୂର୍ବବର୍ତ୍ତୀ ତଥ୍ୟର ବିରୁଦ୍ଧାଚରଣ କରେ । ଶଂଖ ଫାଲଗୁନ୍ - ୧୯୪୮ ସଂଖ୍ୟାରେ ପ୍ରକାଶିତ ଶ୍ରୀ-ଦେବଗଡ଼ଙ୍କ 'ଭାଷାଧୂଆଁ' ପ୍ରବନ୍ଧ ଏକ ନୂତନ ତଥ୍ୟ ପ୍ରଦାନ କରେ । ''ସମ୍ବଲପୁର ଓ ଓଡ଼ିଶାର ଉନ୍ନତି ଏବଂ ସଂସ୍କାରକଳ୍ପେ ଗୋଟିଏ ସାପ୍ତାହିକ କାଗଜର ନିତାନ୍ତ ପ୍ରୟୋଜନ ମନେ କରି ପ୍ରଥମେ ଗୋଟିଏ ଦ୍ୱିଭାଷୀ ଅର୍ଥାତ୍ ଇଂରେଜୀ ଓ ଓଡ଼ିଆ ପତ୍ରିକା ପ୍ରଚାର କଲେ । ଶ୍ରୀ ଗଣେଶ୍ୱର ପଟ୍ଟନାୟକ ବି.ଏ. ହେଲେ ଇଂରେଜୀ ଅଂଶର ଓ ଶ୍ରୀ ନୀଳମଣି ବିଦ୍ୟାରତ୍ନ ହେଲେ ଓଡ଼ିଆ ଅଂଶର ସଂପାଦକ । ଏହି କାଗଜ ଦୁଇ ଚାରି ସଂଖ୍ୟା ପ୍ରକାଶ ପରେ ଏଥିରେ ମନଃପୂତ ହେଲାନାହିଁ । ତତ୍‌ପରେ ସଂବଲପୁର ହିତୈଷିଣୀର ଅଭ୍ୟୁଦୟ ।''*(୨୮)*

ସୁର୍ଲ୍ଲଦେବଙ୍କ ଉଦ୍ୟମରେ ଗଣେଶ୍ୱର ପଟ୍ଟନାୟକଙ୍କ ସଂପାଦନାରେ ଏ ଦ୍ୱିଭାଷୀ ପତ୍ରିକା "Sambalpur Patriot" ନାମରେ ପ୍ରକାଶ ପାଇଥିବାର ଅନୁମାନ କରାଯାଇପାରେ । ଜଳନ୍ଧର ଦେବଙ୍କ ସଂପାଦନାରେ ଶଂଖ (ଆଲୋଚିତ ସଂଖ୍ୟା) ପ୍ରକାଶିତ ହେଉଥିବାରୁ ଏ ତଥ୍ୟ ପ୍ରତି ଜଳନ୍ଧରଙ୍କ ସ୍ୱୀକୃତି ରହିଥିବା ସୁସ୍ପଷ୍ଟ । ଫଳତଃ ଏ ତଥ୍ୟର ସତ୍ୟତାକୁ ଏଡାଇ ଦିଆଯାଇ ନପାରେ ଯଦିଓ ଉଲ୍ଲିଖିତ ପତ୍ରିକାର ଦୁଷ୍ପ୍ରାପ୍ୟତା ଯୋଗୁଁ ଏ ସଂପର୍କରେ ଅଧିକ ଆଲୋଚନା ସଂଭବ ନୁହେଁ ।

ଉଦ୍ଧୃତ ସମସ୍ତ ତଥ୍ୟକୁ ବିଶ୍ଳେଷଣ କରି ଆମେ ନିମ୍ନ ସିଦ୍ଧାନ୍ତରେ ଉପନୀତ ହୋଇ ପାରିବା ।

୧: ପୂର୍ବୋକ୍ତ ଦ୍ୱିଭାଷୀ ପତ୍ରିକାଟି ୧୮୮୭ରେ ପ୍ରକାଶ ପାଇଥିଲା ଏବଂ ୧୮୮୯ରେ ତାର ଘଟାନ୍ତର ବରଂ ସ୍ୱତନ୍ତ୍ର ରୂପ ସଂବଲପୁର ହିତୈଷିଣୀ ରୂପେ ପ୍ରକାଶିତ ।

୨: ଦ୍ୱିଭାଷୀ ପତ୍ରିକାରେ ପ୍ରଥମ ସଂପାଦକ ଗଣେଶ୍ୱର ପଟ୍ଟନାୟକ କିନ୍ତୁ ହିତୈଷିଣୀର ପ୍ରଥମ ସଂପାଦକ ବିଦ୍ୟାରତ୍ନ । ଉଭୟ ସୁର୍ଲ୍ଲଦେବଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ ।

ସମ୍ବଲପୁର ହିତେଷିଣୀ ନାମକରଣ ସୁର୍ଲ୍ଲଦେବ ସ୍ୱୟଂ କରିଥିଲେ । ଗଡ଼ଜାତ ସମୂହର ବିକାଶ ସାଧନ ପାଇଁ ପ୍ରାରମ୍ଭରେ ହିତେଷିଣୀ ଉଦ୍ଦିଷ୍ଟ ଥିଲା । ବାମଣ୍ଡା ପ୍ରଭୃତି ଗଡଜାତ ଗୁଡିକ ସଂବଲପୁର ବର୍ଗର ଅନ୍ତର୍ଭୁକ୍ତ ଥିଲା । ସଂବଲପୁର ଗଡ଼ଜାତ ରୂପେ ପାଟଣା, କଳାହାଣ୍ଡି, ସୋନପୁର, ବାମଣ୍ଡା, ରେଢ଼ାଖୋଲ, ବଣେଇ, ଗାଙ୍ଗପୁର ପ୍ରଭୃତି ଗଡ଼ଜାତ ଗୁଡିକ ପ୍ରସିଦ୍ଧ ଥିଲା । *(୨୯)* ବାମଣ୍ଡା ସଂଲଗ୍ନ ଏହି ଗଡ଼ଜାତ ସମୂହର ହିତେଷଣା କଳ୍ପେ ପତ୍ରିକାକୁ ସଂବଲପୁର ହିତୈଷିଣୀ ନାମରେ ନାମିତ କରାଯାଇଥିଲା । ସଂବଲପୁର ବିଶେଷଣ ଘେନି ପତ୍ରିକାର

ଜନ୍ମହୋଇଥିଲେ ମଧ୍ୟ ଏହା ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ହିତସାଧନକୁ ନିଜର ଆଭିମୁଖ୍ୟ ପ୍ରତିପାଦନ କରିଥିଲା ।

ପତ୍ରିକାର ଜନ୍ମଲଗ୍ନରେ ଏହାର ଆଭିମୁଖ୍ୟ ସ୍ଥିର କରି ସୁଡ଼ଳଦେବ ନିଜର ଗୁରୁ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡାଙ୍କ ଆଶୀର୍ବାଦ ଭିକ୍ଷା କରିଥିଲେ । ବଡ଼ପଣ୍ଡା ମହୋଦୟ ଏହାର ନାନ୍ଦୀଶ୍ଳୋକ ରଚନା କରି ନିଜର ମହନୀୟତା ପ୍ରଦର୍ଶନ କରିଥିଲେ ।

''ସମାଜ କାର୍ଯ୍ୟାଣି ଚ ରାଜନୀତି
ର୍ବିଜ୍ଞାନ ସାହିତ୍ୟ ବିଚାର ଯୁକ୍ତିଃ
ଯତ୍ରୈବ ସନ୍ଦେଶ ବଚଃ ପ୍ରମେୟଂ
ଚିରଂ ବରୀବର୍ତ୍ତୁ ସୁପତ୍ରିକେୟଂ ।
ଗୁଣାନୁପାଦାୟ ମୁଦଂ ବହନ୍ତ
ଶ୍ଚିତ୍ରେ ର୍ବିଚାରୈ ଜଗତ ସ୍ଫୁରନ୍ତଃ
ବଚୋ ବିଳାସୈ ର୍ହୃଦୟଂ ହରନ୍ତଃ
ସୌଜନ୍ୟ ପୁଣ୍ୟେନ ଜୟନ୍ତି ସନ୍ତଃ ।''

ଏ ନାନ୍ଦୀଶ୍ଳୋକ ପ୍ରଥମେ ଓଡ଼ିଆ ଲିପିରେ ହିତୈଷିଣୀର ସମ୍ମୁଖ ଭାଗରେ ଶୋଭାପାଉଥିଲା । ପରେ ଦେବ ନାଗରୀ ଲିପିରେ ମୁଦ୍ରିତ ହୋଇଥିଲା । ଏ ଶ୍ଳୋକାନୁସାରେ ହିତୈଷିଣୀ ସମାଜ, ରାଜନୀତି, ବିଜ୍ଞାନ, ସାହିତ୍ୟ, ସାଂବାଦିକତା, ଆଧାତ୍ମିକତା, ଉତ୍କୃଷ୍ଟ ବିଚାର, ସ୍ୱାଧୀନ ମତ ଏବଂ ହାସ୍ୟରସକୁ ସ୍ଥାନ ପ୍ରଦାନ କରି ଏକ ଉତ୍କୃଷ୍ଟ ପତ୍ରିକା ରୂପେ ସମ୍ମାନ ଲାଭ କରିଥିଲା ।

ପତ୍ରିକାଟି ପ୍ରତ୍ୟେକ ସପ୍ତାହର ବୁଧବାର ପ୍ରକାଶ ପାଉଥିଲା ମାତ୍ର କେତେକ ଅସୁବିଧା ଯୋଗୁ ୧୫/୪୩ ତା ୧୮.୬.୧୯୦୪ ସଂଖ୍ୟାଠାରୁ ଏହା ପ୍ରତ୍ୟେକ ଶନିବାର ପ୍ରକାଶ ପାଇଲା । ୧୯୦୪ ଖ୍ରୀ:ରୁ ପ୍ରତ୍ୟେକ ବର୍ଷ ଦୁର୍ଗା ପୂଜାର ପରବର୍ତ୍ତୀ ଶନିବାର ଠାରୁ ପତ୍ରିକାର ବାର୍ଷିକ ପ୍ରଥମ ସଂଖ୍ୟା ପ୍ରକାଶିତ ହୁଏ । ମାତ୍ର କାଗଜ ଅଭାବ ଯୋଗୁଁ ତା-୩୦-୭-୧୯୨୧ ଠାରୁ ତା ୮.୪.୧୯୨୨ ପର୍ଯ୍ୟନ୍ତ ଏହାର ପ୍ରକାଶନ ବନ୍ଦଥିଲା । ତେଣୁ ସେହିବର୍ଷର ପ୍ରଥମ ସଂଖ୍ୟାରୂପେ ୮.୪.୧୯୨୨ ସଂଖ୍ୟାକୁ ଗ୍ରହଣ କରାଯାଇଥିଲା ଏହି ସଂଖ୍ୟାରେ ହିତୈଷିଣୀର ଆଭିମୁଖ୍ୟକୁ ସ୍ପଷ୍ଟାକ୍ଷରରେ ଘୋଷଣା କରନ୍ତି ସଂପାଦକ । ''ହିତୈଷିଣୀ ଆକାର ବୃଦ୍ଧି ହୋଇଅଛି । ଏଥିରେ ଭଲ ଭଲ ବିଷୟ ରହିବାର ଆବଶ୍ୟକ, ଏଥିରେ କାହାରି ମତ ଦ୍ୱୈଧ ନାହିଁ କିନ୍ତୁ ଜଣେ ଅଜ୍ଞ ସଂପାଦକ ଦ୍ୱାରା ତାହା ଆଶାକରା ବିଡମ୍ବନା ମାତ୍ର । ଆମ୍ଭେମାନେ ସରଳ ପ୍ରାଣରେ ଦେଶର ଶିକ୍ଷିତ ବ୍ୟକ୍ତି ମାନଙ୍କର ସାହାଯ୍ୟ ଲୋଡୁଅଛୁଁ । ଉତ୍କଟ ରାଜନୀତି

ବ୍ୟତୀତ ସକଳ ସଂପ୍ରଦାୟର ସକଳ ବିଷୟର ପ୍ରବନ୍ଧ ଆଗ୍ରହ ସହକାରେ ପ୍ରକାଶ କରିବୁଁ । ଆପଣମାନେ ମନେ ରଖିଥିବେ, ହିତୈଷିଣୀ ସାଂପ୍ରଦାୟିକ ବିଶେଷର କାଗଜ ନୁହେ । ଯେ କେହି ଇଚ୍ଛା କଲେ ଏହାର ଲେଖକ ହୋଇ ବିନା ମୂଲ୍ୟରେ କାଗଜ ପାଇପାରିବେ ।'' (୩୦)

ଏକ ମହନୀୟ କାର୍ଯ୍ୟ ସଂପାଦନ କରି ହିତୈଷିଣୀ ରଙ୍ଗମଞ୍ଚରୁ ବିଦାୟ ନେଇଥିଲା । ଏହାର ୩୪ ତମ ବର୍ଷ ୨୦ଶ ସଂଖ୍ୟା ତା ୩୦.୩.୧୯୨୩ ରେ 'ହିତୈଷିଣୀ ବନ୍ଦ'ର ଦୁଃଖଦ ଘୋଷଣା ଓଡ଼ିଆର ହୃତ ସ୍ପନ୍ଦନକୁ ସ୍ତବ୍ଧ କରିଦେଇଥିଲା । ''ଆଗାମୀ ସପ୍ତାହରୁ ସଂବଲପୁର ହିତୈଷିଣୀ ୩୫ ବର୍ଷ ପରେ ଚିରଦିନ ପାଇଁ ବନ୍ଦ ହେବ । ଏ ପତ୍ରିକାର ଲେଖକ, ଗ୍ରାହକ, ପାଠକ, ପାଠିକା ଓ ସହଯୋଗୀ ଅସହଯୋଗୀ ସମସ୍ତଙ୍କୁ ଧନ୍ୟବାଦ ଦେଇ ବିଦାୟ ନେଉଅଛୁ ।''ଏହା ସହିତ ଓଡ଼ିଆ ସାହିତ୍ୟର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟର ଯବନିକା ପଡିଲା । ସାଂବାଦିକତା ଓ ସାରସ୍ୱତ କ୍ଷେତ୍ରର ଏ ଜାଗ୍ରତ ପ୍ରହରୀର ବିଲୟ ଥିଲା ଓଡ଼ିଆ ସାହିତ୍ୟର ଏକ କରୁଣାକ୍ତ ଓ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣା ।

## ହିତୈଷିଣୀ ସଂପାଦକମାନଙ୍କ ସାରସ୍ୱତ ପ୍ରତିଭାର ସୂକ୍ଷ୍ମ ବିଶ୍ଳେଷଣ:

ନୀଳମଣି ବିଦ୍ୟାରତ୍ନଙ୍କ ଠାରୁ ଆରମ୍ଭ କରି ଅନେକ କୃତବିଦ୍ୟ ସାଧକ ହିତୈଷିଣୀର ସଂପାଦନା ଦାୟିତ୍ୱ ନିର୍ବାହ କରନ୍ତି । ସୁଜ୍ଞଳଦେବଙ୍କ ବହୁମୁଖୀ ପ୍ରତିଭା ଦ୍ୱାରା ସୁନିୟନ୍ତ୍ରିତ ହିତୈଷିଣୀ ବିଦ୍ୟାରତ୍ନଙ୍କ ଉଦ୍ୟମରେ ବହୁପ୍ରସାରୀ ହୋଇଥିଲା । ହିତୈଷିଣୀର ଶୃଂଖଳିତ କାର୍ଯ୍ୟ କଳାପ ଗୁଣୀ ସଂପାଦକଙ୍କ ତତ୍ତ୍ୱାବଧାନରେ ଶେଷ ପର୍ଯ୍ୟନ୍ତ ନିଜର ଆଭିମୁଖ୍ୟ ପ୍ରକାଶରେ ସଫଳ ହୋଇଥିଲା । ବିଦ୍ୟାରତ୍ନଙ୍କ ପରେ ବ୍ରଜବଂଧୁ ମିଶ୍ର ଓ ଦୀନବଂଧୁ ଗଡନାୟକଙ୍କ ଦ୍ୱାରା ହିତୈଷିଣୀ ବହୁ ବର୍ଷ ଧରି ସଂପାଦିତ ହୋଇଥିଲା । କିନ୍ତୁ ଏମାନଙ୍କ ବ୍ୟତୀତ ଦାମୋଦର ମିଶ୍ର, ରତ୍ନାକର ଶର୍ମା, ଭାଗୀରଥି ରଥ, ଦୀନବଂଧୁ ପ୍ରଧାନ, ନବଘନ ନାୟକ, ବୈରାଗୀ ପଣ୍ଡା, କରୁଣାକର ସାହୁ, ଲିଙ୍ଗରାଜ ପାଣିଗ୍ରାହୀ, ବୃନ୍ଦାବନ ନାଥଶର୍ମା, ପ୍ରମୁଖ ସାମୟିକ ସଂପାଦନାର ଭାର ନିର୍ବାହ କରିଥିଲେ । ହିତୈଷିଣୀ ସଂପାଦକଙ୍କ ସାରସ୍ୱତ କୃତିତ୍ୱକୁ ପର୍ଯ୍ୟାଲୋଚନା କରିବା ଏ ପ୍ରସଙ୍ଗରେ ସର୍ବାଦୌ କର୍ତ୍ତବ୍ୟ ।

## (କ) ନୀଳମଣି ବିଦ୍ୟାରତ୍ନ (୧୮୬୭-୧୯୨୪) :

ଓଡ଼ିଶାର ସାରସ୍ୱତ ପୃଷ୍ଠ ପୀଠିକାରେ ନୀଳମଣି ବିଦ୍ୟାରତ୍ନଙ୍କ ଆବିର୍ଭାବ ଅତୀବ ଗୁରୁତ୍ୱପୂର୍ଣ୍ଣ । ଏକ ବଳିଷ୍ଠ ଭାଷାଭିତ୍ତିକ ପ୍ରଦେଶ ଗଠନର ନିୟାମକ ଭୂମିକା ବିଦ୍ୟାରତ୍ନ ସଂପାଦନ କରନ୍ତି । ସାର୍ବଜନୀନ ହିତୈଷଣରେ ଉତ୍ସର୍ଗୀକୃତ ତାଙ୍କର ସମଗ୍ର ଜୀବନକାଳ । ଓଡ଼ିଶାର ସାଂସ୍କୃତିକ ଇତିହାସକୁ ଋଦ୍ଧିମନ୍ତ କରି ସେ ହିତୈଷିଣୀର ସଂପାଦନା ଗ୍ରହଣ କରନ୍ତି ।

ବାଙ୍କୀର ବୈଦ୍ୟେଶ୍ୱର ଗ୍ରାମରେ ତା-୧୪-୧୨-୧୮୬୭ ରେ ନୀଳମଣି ମିଶ୍ରଙ୍କ ଜନ୍ମ । ପିତା ଗୌରୀଚରଣ, ମାତା ରୋହିଣୀ ଦେବୀଙ୍କର ସେ ପ୍ରଥମ ସନ୍ତାନ । ଚର୍ଚ୍ଚିକା ମିଡ଼ିଲ ଭର୍ଣ୍ଣାକ୍ୟୁଲାର ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଲା ପରେ ଅର୍ଥାଭାବ ଯୋଗୁଁ ଉଚ୍ଚଶିକ୍ଷାରୁ ବଞ୍ଚିତ ହୁଅନ୍ତି । ସ୍ୱ-ପ୍ରଜ୍ଞା ବଳରେ ଓଡ଼ିଆ, ହିନ୍ଦି, ଇଂରାଜୀ, ସଂସ୍କୃତ ଓ ବଙ୍ଗଳାରେ ବ୍ୟୁତ୍ପତ୍ତି ଲାଭ କରନ୍ତି । ରାଧାନାଥଙ୍କ ସହାୟତାରେ ବଡମ୍ବା ରାଜ୍ୟର ଗୋପୀନାଥପୁର ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରନ୍ତି । ତାଙ୍କର କବିତ୍ୱରେ ମୁଗ୍ଧ ହୋଇ ବଡମ୍ବା ରାଜା ଦାଶରଥି ମଙ୍ଗରାଜ ବୀରବର ମହାପାତ୍ରଙ୍କ ଧର୍ମପତ୍ନୀ ପଟ୍ଟବସ୍ତ୍ର, ଟଙ୍କା ସହିତ ''ବିଦ୍ୟାରତ୍ନ'' ଉପାଧି ପ୍ରଦାନ କରନ୍ତି । ତାଙ୍କର ବାମଣ୍ଡା ରହଣୀ ସମୟରେ ସୁରୁଜଦେବ ଏ ଉପାଧିକୁ ସ୍ୱୀକୃତି ଜଣାଇ ସନନ୍ଦ ପ୍ରଦାନ କରନ୍ତି । ନୀଳମଣି ମିଶ୍ର ବିଦ୍ୟାରତ୍ନ ରୂପେ ହିଁ ଉତ୍କଳର ସର୍ବତ୍ର ପରିଚିତ ହୁଅନ୍ତି । ବଡମ୍ବା ରହଣୀ ସମୟରେ ସେ ଦିନ ମଜୁରିଆ ମାନଙ୍କୁ ଶିକ୍ଷା ପ୍ରଦାନ ପାଇଁ ରାତ୍ରିରେ ସ୍କୁଲ ଖୋଲି ଶିକ୍ଷାଦାନ କରନ୍ତି । ଏହା ହିଁ ଓଡ଼ିଶାରେ ପ୍ରଥମ ନୈଶ୍ୟ ବିଦ୍ୟାଳୟର ପରମ୍ପରା ସୃଷ୍ଟି କରିଛି । *(୩୧)*

ସଂସ୍କାରକ ପତ୍ରିକାରେ ପ୍ରକାଶିତ ବିଦ୍ୟାରତ୍ନଙ୍କ ରଚନା ସୁରୁଜଦେବଙ୍କୁ ଆକୃଷ୍ଟ କରେ । ବାମଣ୍ଡାରେ ଶିକ୍ଷକତା ପାଇଁ ବିଦ୍ୟାରତ୍ନ ଆବେଦନ କରନ୍ତି । ଈର୍ଷାକାତର ଶିକ୍ଷକ ବଂଧୁଙ୍କ ଚକ୍ରାନ୍ତର ଶିକାର ହୋଇ ସୁରୁଜଦେବଙ୍କ ନାମରେ ପ୍ରଦତ୍ତ ମିଥ୍ୟା ପତ୍ରକୁ ସତ୍ୟମଣି ସେ ବାମଣ୍ଡା ଚାଲିଆସନ୍ତି । ଗୁଣଗ୍ରାହୀ ରାଜା ସୁରୁଜଦେବ ସମସ୍ତ ବିଷୟ ଅବଗତ ହୋଇ ବିଦ୍ୟାରତ୍ନଙ୍କୁ ଶିକ୍ଷକ ରୂପେ ନିଯୁକ୍ତ କରିଥିଲେ । ୧୮୮୬ ରୁ ୧୯୦୨ ଜାନୁୟାରୀ ପର୍ଯ୍ୟନ୍ତ ଦୀର୍ଘ ପନ୍ଦର ବର୍ଷ ତାଙ୍କର ବାମଣ୍ଡା ରହଣୀ ହିଁ ତାଙ୍କର ପ୍ରତିଭାର ସୁବର୍ଣ୍ଣ ଯୁଗ ।

ଜ୍ଞାନ ତପସ୍ୱୀ ସୁରୁଜଦେବଙ୍କ ସଂସ୍ପର୍ଶରେ ଆସି ବିଦ୍ୟାରତ୍ନ ପ୍ରତିଭା ପରିମାର୍ଜ୍ଜିତ ହୁଏ । ଫକୀର ମୋହନ ଏହାକୁ ଲକ୍ଷ୍ୟ କରି ଘୋଷଣା କରନ୍ତି ।

''ଜଗା ଶିର ଧରି ଏକା ପଡିଅଛ ନନା
ପରଶ ମଣିକି ଛୁଇଁ ଲୁହା ହୁଏ ସୁନା'' (ଉତ୍କଳ ଭ୍ରମଣଂ)

ପ୍ରକୃତରେ ସୁରୁଜଦେବଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପ୍ରଭାବରେ ବିଦ୍ୱାରତ୍ନଙ୍କ ପ୍ରତିଭା ଓଡ଼ିଶାରେ ଯୋଗ୍ୟାସନ ପାଇଛି । ସୁରୁଜଦେବ ସଂବଲପୁର ହିତୈଷିଣୀ ପତ୍ରିକାର ସଂପାଦନା ଦାୟିତ୍ୱ ବିଦ୍ୟାରତ୍ନଙ୍କୁ ଦିଅନ୍ତି । ବିଦ୍ୟାରତ୍ନଙ୍କ ବଳିଷ୍ଠ ସଂପାଦନାରେ ଏ ପତ୍ରିକା ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ଋଦ୍ଧିମନ୍ତ କରେ । ମାନସିଂଙ୍କ ମତରେ-''ହିତୈଷିଣୀ ସଂପାଦକ ଭାବରେ ପ୍ରାଇମେରୀ ଶିକ୍ଷକ ବିଦ୍ୟାରତ୍ନ ଓଡ଼ିଶାର ପତ୍ରିକା ପରିଚାଳନାକୁ ପ୍ରଥମକରି ଗୌରବାନ୍ୱିତ, ପ୍ରତିଭାନ୍ୱିତ ଓ ଜାତି ଗଠନର ପ୍ରତ୍ୟକ୍ଷ କରି ଥୋଇଲେ । ସଂବଲପୁର ହିତୈଷିଣୀ ମାଧ୍ୟମରେ ବିଦ୍ୟାରତ୍ନେ ସେତେବେଳର ଛିନ୍ନଛତ୍ର ଅବସ୍ଥାରେ ଥିବା ସମଗ୍ର ଗଡଜାତ ଅଞ୍ଚଳ ବିଶେଷ କରି ସମ୍ବଲପୁର ବା ପଶ୍ଚିମ ଓଡ଼ିଶାର ଜାତୀୟତାକୁ ଯେପରି ବଞ୍ଚାଇ ରଖିଥିଲେ ତାହାର ତୁଳନା ନାହିଁ ।'' *(୩୨)*

ହିତୈଷିଣୀ ମାଧମରେ ବିଦ୍ୟାରତ୍ନ ଓଡ଼ିଆ ଭାଷା ସାହିତ୍ୟ ଓ ସାମାଜିକ ଅର୍ଥନୈତିକ କ୍ଷେତ୍ରରେ ଏକ ଯୁଗାନ୍ତର ସୃଷ୍ଟି କରିଥିଲେ । କେବଳ ସଂବାଦ ପରିବେଷଣ ନୁହେଁ ବରଂ କୁସଂସ୍କାରାଚ୍ଛନ୍ନ ସମାଜକୁ କଳୁଷମୁକ୍ତ କରିବାକୁ ବିଦ୍ୟାରତ୍ନ ବଦ୍ଧ ପରିକର ଥିଲେ । ବିଦ୍ୟାରତ୍ନ କେବଳ ସାହିତ୍ୟ କ୍ଷେତ୍ରରେ ସଂସ୍କାରକର ଭୂମିକା ସଂପାଦନ କରିନଥିଲେ ବରଂ ଭାରତୀୟ ଜାତୀୟ ଦୁର୍ଗତିର କାରଣ ଉପସ୍ଥାପନ କରି ପରାଧୀନ ଭାରତୀୟଙ୍କ ମନରେ ଜାତୀୟ ଭାବ ଉଦ୍ରେକ କରିଥିଲେ । ଏ ପର୍ଯ୍ୟାୟରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ହିତୈଷିଣୀରେ ବିଭିନ୍ନ ମନ୍ତବ୍ୟ ପ୍ରକାଶରେ ସେ ପଶ୍ଚାଦ୍‌ପଦ ହୋଇ ନଥିଲେ ।

ବିଦ୍ୟାରତ୍ନ ଚିରଦିନ ପରୋପକାରକୁ ଜୀବନର ବ୍ରତରୂପେ ଗ୍ରହଣ କରିଥିଲେ । ବାମଣ୍ଡା ଅବସ୍ଥାନ ସମୟେ ଅନେକ ଦୁଃସ୍ଥ ଲୋକଙ୍କୁ ସାହାଯ୍ୟ କରିଥିଲେ । ଅନେକ ଦରିଦ୍ର ଛାତ୍ରଙ୍କୁ ଅଧୟନ ପାଇଁ ଆର୍ଥିକ ସାହାଯ୍ୟ କରିଥିଲେ । ଦୁଃସ୍ଥ ତଥା ପ୍ରତିଭାବାନ ଲୋକଙ୍କୁ ରାଜକାର୍ଯ୍ୟରେ ରାଜାଙ୍କୁ ଅନୁରୋଧ କରି ମୁତୟନ କରୁଥିଲେ । ବିଦ୍ୟାରତ୍ନଙ୍କ ଉତ୍ସାହ ଫଳରେ ଜଳନ୍ଧର ପ୍ରମୁଖ ବସ୍ତ୍ରଭିକ୍ଷା କରି ଶୀତଦିନେ ଅସହାୟ ଲୋକଙ୍କୁ ବଣ୍ଟନ କରୁଥିଲେ । ଘର ପୋଡ଼ି ସମୟରେ ଆକ୍ରାନ୍ତ ଲୋକଙ୍କୁ ପୂର୍ଣ୍ଣ ପ୍ରାଣରେ ବିଦ୍ୟାରତ୍ନ ସାହାଯ୍ୟ କରିବା କଥା ସମାଲୋଚକ ବୃନ୍ଦାବନ ନାଥ ଶର୍ମା ସ୍ୱୀକାର କରନ୍ତି । *(୩୩)* ପଣ୍ଡିତ ଭୁବନେଶ୍ୱର ବଡପଣ୍ଡା ଓ ସାମନ୍ତ ଚନ୍ଦ୍ରଶେଖରଙ୍କ ପ୍ରତିଭାକୁ ସେ ପ୍ରଥମେ ହିତୈଷିଣୀ ପୃଷ୍ଠାରେ ଲୋକଲୋଚନକୁ ଆଣିଥିଲେ । ପ୍ରଜାବଂଧୁ ପତ୍ରିକାରେ ସେ ନିବେଦନ କରି ସାମନ୍ତ ଚନ୍ଦ୍ରଶେଖରଙ୍କୁ ଆର୍ଥିକ ସାହାଯ୍ୟ କରାଇ ଦେଉଥିଲେ । ଗଙ୍ଗାଧରଙ୍କୁ ବାମଣ୍ଡା ରାଜଦରବାରରୁ ବୃତ୍ତି ପ୍ରଦାନ ପାଇଁ ସେ ରାଜା ସଚ୍ଚିଦାନନ୍ଦଙ୍କୁ ସ୍ୱୀକୃତ କରାଇଥିଲେ । ସଚ୍ଚିଦାନନ୍ଦଙ୍କ ତିରୋଧାନ ଯୋଗୁଁ ଏ ଯୋଜନା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । *(୩୪)* ୧୯୧୬ ରେ ବାମଣ୍ଡାରେ ଫକୀରମୋହନଙ୍କୁ ସରସ୍ୱତୀ ଉପାଧିପ୍ରଦାନ ଅନ୍ତରାଳରେ ବିଦ୍ୟାରତ୍ନଙ୍କ ଆନ୍ତରିକ ଉଦ୍ୟମ ପ୍ରଚ୍ଛନ୍ନ ଥିଲା ।

ବିଦ୍ୟାରତ୍ନଙ୍କ ବାମଣ୍ଡା ରହଣୀ ସମୟରେ ସେ ଛାତ୍ରମାନଙ୍କ ଚରିତ୍ର ଗଠନରେ ବିଶେଷ ଦୃଷ୍ଟି ଦେଉଥିଲେ । ଛାତ୍ର ମାନଙ୍କୁ ବିଶୁଦ୍ଧ ଓଡ଼ିଆ ରଚନା ଦିଗରେ ଉତ୍ସାହିତ କରିଥିଲେ । ସେ କେବଳ ଯେ ହିତୈଷିଣୀ ସଂପାଦକ ବା ଦେବଗଡ ରାଜକୁମାର ସ୍କୁଲର ଶିକ୍ଷକ ଥିଲେ ତା ନୁହେଁ ବରଂ ସେ ଥିଲେ ବାମଣ୍ଡା ଦରବାରର ଅନ୍ୟତମ ମୁଖ୍ୟ କାଉନ୍‌ସିଲର ।

ବିଦ୍ୟାରତ୍ନ ଜଣେ ମୌଳିକ ନିରପେକ୍ଷ ସଂପାଦକ ଭାବେ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ । ବାମଣ୍ଡାରେ ସେ ହିତୈଷିଣୀ ସହ ଉତ୍କଳ ମଧୁପ ସଂପାଦନା କରୁଥିଲେ । ବାମଣ୍ଡା ଛାଡ଼ି ଖଲ୍ଲିକୋଟ ଯିବାପରେ ସେଠାରେ ରାଜା ହରିହର ମର୍ଦ୍ଦରାଜଙ୍କ ସ୍ଥାପିତ ରମ୍ଭାପ୍ରେସ ଓ 'ପ୍ରଜାବନ୍ଧୁ' ସାପ୍ତାହିକ ପତ୍ରିକାର ଦାୟିତ୍ୱ ଗ୍ରହଣ କଲେ । ୧୯୦୨-ଜୁନରେ ତାଙ୍କରି ସଂପାଦନାରେ 'ପ୍ରଜାବଂଧୁ' ପ୍ରକାଶ ପାଇଲା । ଏହି ପତ୍ରିକା ମାଧମରେ ସେ ଗଞ୍ଜାମର

ଓଡ଼ିଶାରେ ମିଶ୍ରଣନେଇ ଆନ୍ଦୋଳନ ଚଳାଇଲେ । ଏ ପର୍ଯ୍ୟାୟରେ ଗଠିତ ''ଗଞ୍ଜାମ ଜାତୀୟ ସମ୍ମିଳନୀ'' ପରବର୍ତ୍ତୀ ସମୟରେ ଯେ ଉତ୍କଳ ସମ୍ମିଳନୀର ରୂପନେଲା ଏହା କାହାକୁ ଅବିଦିତ ନୁହେଁ । ଏ ପ୍ରସଙ୍ଗରେ ମାନସିଂଙ୍କ ପ୍ରଶଂସା ସ୍ୱାଗତଯୋଗ୍ୟ -"As editor of "Praja Bandhu" in the district of Ganjam then in Madras Presidency, Vidyaratna first organised a conference of the oriyas in Madras in 1902, demanding unification of all oriya tracts. This gave birth to the larger "utkal sammilani " or the All-Orissa political Conference which in its first session in 1903 brought to its platform oriyas from all ranks and parts of the Country demanding a homogeneous oriya state."*(୩୫)*

ଖଲ୍ଲିକୋଟ ପରେ ବିଦ୍ୟାରତ୍ନ ବଡଖେମୁଣ୍ଡି ଯାଆନ୍ତି । ସେଠାରେ ରାଜାଙ୍କ 'ଗଜପତି ଭୀମଦେବ' ପ୍ରେସର ଦାୟିତ୍ୱ ନିଅନ୍ତି । ମାର୍କଣ୍ଡେୟ ତର୍କ ପଞ୍ଚାନନଙ୍କ ସଂପାଦନାରେ ପ୍ରକାଶିତ 'ଗଞ୍ଜାମ ଗୁଣଦର୍ପଣ'ମୁମୂର୍ଷୁ ଅବସ୍ଥାରେ ଥିଲା । ବିଦ୍ୟାରତ୍ନ ସଂପାଦନା ଗ୍ରହଣ କଲାପରେ ଏହାର ପ୍ରଚାର ଓ ପ୍ରସାର ବୃଦ୍ଧିପାଏ । ୧୯୦୪ରୁ ପ୍ରକାଶିତ ଏ ପତ୍ରିକା ୧୯୦୫ରେ ପାକ୍ଷିକରୁ ସାପ୍ତାହିକ ହୁଏ । ୧୯୧୨ ପର୍ଯ୍ୟନ୍ତ ପ୍ରକାଶ ଲଭି ବନ୍ଦ ହୋଇଯାଏ । ୧୯୧୭ ବେଳକୁ ବିଦ୍ୟାରତ୍ନ ଏହାର ସଂପାଦନା ଗ୍ରହଣକରି ପତ୍ରିକାଟିକୁ ନବଜୀବନ ପ୍ରଦାନ କରନ୍ତି ।

ଗୌରୀ ଶଙ୍କରଙ୍କ ଆବର୍ତ୍ତମାନରେ ଉତ୍କଳଦୀପିକା ନିଜର ଗୌରବ ରକ୍ଷାରେ ଅସମର୍ଥ ହୋଇ ଉଠିଥିଲା । ଏ ସମୟରେ ବିଦ୍ୟାରତ୍ନ ଦୀପିକାର ସଂପାଦନା ଗ୍ରହଣ କରନ୍ତି । ସଂପାଦନା ଆଳରେ ସେ ଦେଶ ସେବାର ଯେଉଁ ମୁଖ୍ୟ କର୍ତ୍ତବ୍ୟ ପାଳନ କରନ୍ତି ତାହା ତାଙ୍କର ସଂପାଦକୀୟରେ ସୁସ୍ପଷ୍ଟ ''ଦେଶସେବା ଆମ୍ଭମାନଙ୍କର ମୁଖ୍ୟକାର୍ଯ୍ୟ ସେହି କାର୍ଯ୍ୟ ସାଧନ ସକାଶେ ଭଗବତୀଙ୍କ ଛାମୁରେ ଆମ୍ଭେମାନେ ନବବଳ, ନବୋତ୍ସାହରେ ପ୍ରାର୍ଥନା କରି ଯଥାରୀତି କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହେଉଅଛୁଁ । ଆଶାକରୁ ଏ ବିଷୟରେ ଆମ୍ଭମାନଙ୍କୁ ଦେଶବାସୀମାନେ ସାହାଯ୍ୟ ପ୍ରଦାନ କରିବାରେ କୁଣ୍ଠିତ ହେବେନାହିଁ ।'' *(୩୬)*

ଓଡ଼ିଆ ପତ୍ରିକା ସଂପାଦନା କ୍ଷେତ୍ରରେ ବିଦ୍ୟାରତ୍ନ ଏକ ଅନନ୍ୟ ପ୍ରତିଭା । ପ୍ରତିଟି ସମ୍ବାଦ ବା ରଚନାକୁ ସେ ସୁସଂପାଦିତ ଭାବେ ନିଜ ପତ୍ରିକାରେ ସ୍ଥାନ ଦେଉଥିଲେ । ସ୍ଥଳ ବିଶେଷରେ ନିଜର ନିରପେକ୍ଷ ଏବଂ ଯୁକ୍ତିପୂର୍ଣ୍ଣ ମତାମତ ପ୍ରଦାନ କରୁଥିଲେ । ଯା ଫଳରେ ସେ ଯେତେବେଳେ ଯେଉଁ ପତ୍ରିକାର ସଂପାଦନା ଗ୍ରହଣ କରିଛନ୍ତି ସେ ପତ୍ରିକା ଉତ୍କର୍ଷତାର ସୀମା ସ୍ପର୍ଶ କରିଛି । ଫକୀର ମୋହନଙ୍କ ଭାଷାରେ-

''ତୁମ୍ଭର ପତ୍ରିକା ଲଭିଅଛି ଉଚ୍ଚସ୍ଥାନ
ତୁମ୍ଭେ ଏକା କରିଜାଣ କବିଙ୍କୁ ସମ୍ମାନ

ମାତୃଭାଷା ଉନ୍ନତିରେ ଦିବାନିଶି ଯତ୍ନ
ଚିରଜୀବୀ ହୁଅ ନୀଳମଣି ବିଦ୍ୟାରତ୍ନ ।'' (ଅବସର ବାସରେ)

ବିଦ୍ୟାରତ୍ନ ଆଜୀବନ ସାହିତ୍ୟସେବୀ । ତାଙ୍କ ଜୀବନର ଉତ୍କୃଷ୍ଟତମ ସୃଜନାତ୍ମକ ସମୟ ବାମଣ୍ଡାରେ କଟିଥିଲା । ହିତୈଷିଣୀ ତାଙ୍କୁ ଆଣିଦେଇଥିଲା ସର୍ବଶ୍ରେଷ୍ଠ ସିଦ୍ଧି । ହିତୈଷିଣୀର ପ୍ରତିଟି ପୃଷ୍ଠା ବିଦ୍ୟାରତ୍ନ ପ୍ରତିଭାର ଔଜ୍ଜ୍ୱଲ୍ୟରେ ଦୀପ୍ତିମନ୍ତ । ହିତୈଷିଣୀ ସଂପାଦନା ସେ ପରିତ୍ୟାଗ କରିଥିଲେ ମଧ୍ୟ ଶେଷ ପର୍ଯ୍ୟନ୍ତ ହିତୈଷିଣୀ ସହିତ ସଂପର୍କ ଅତୁଟ ଥିଲା ।

ହିତୈଷିଣୀ ମାଧ୍ୟମରେ ସାମାଜିକ କୁସଂସ୍କାର ବିରୁଦ୍ଧରେ ସେ ସଂଗ୍ରାମ କରିଥିଲେ । ଏ ସଂଗ୍ରାମ ଉତ୍କଳ ମଧୁପ, ପ୍ରଜାବଂଧୁ, ଗଞ୍ଜାମ ଗୁଣଦର୍ପଣ ଦେଇ ଶେଷରେ ଦୀପିକା ସଂପାଦନା ମାଧ୍ୟମରେ ପ୍ରତିଫଳିତ ହୋଇଥିଲା । ନିଶା ବିରୁଦ୍ଧରେ, ଅଶିକ୍ଷା ବିରୁଦ୍ଧରେ, କୁସଂସ୍କାର ବିରୁଦ୍ଧରେ ତାଙ୍କର ଶହ ଶହ ରଚନା ପ୍ରକାଶ ପାଇ ଜନମତ ସୃଷ୍ଟିରେ ସଫଳ ହୋଇଥିଲା । ହିତୈଷିଣୀରେ ପ୍ରକାଶିତ ତାଙ୍କର ରଚନା ସମୂହକୁ ବିଶ୍ଳେଷଣ କଲେ ତାଙ୍କର ଅଗାଧ ପାଣ୍ଡିତ୍ୟର ସୂଚନା ମିଳେ ।

ବିସୂଚିକା ଚିକିତ୍ସା (୨୮.୬.୧୮୯୩) ତମାଖୁର ଅପକାରିତା (୨୭.୨.୧୮୯୫), ଶକ୍ତିପରିଚୟ (୧୭.୭.୧୮୯୫), ଆତ୍ମଶ୍ଳାଘା (୨୩.୧୦.୧୮୯୫), ଗୃହସ୍ଥାଶ୍ରମ ହିଁ ଶ୍ରେଷ୍ଠ ଆଶ୍ରମ (୬.୧୧.୧୮୯୫), ରାଜଧର୍ମ (୩.୩.୧୮୯୭), ନୀତିପରାଗ (୬.୧୧.୧୯୦୧), ବାରମିଶାଖାଦ୍ୟ (୧୦.୨.୧୯୧୨), ସଦୁପଦେଶ (୧୮.୫.୧୯୧୨), ରାଜା ଗଣେଶ୍ୱର ପାଳ (୨୪.୮.୧୨), ସାହାଯ୍ୟଦାନ ପ୍ରଣାଳୀ(୩୧.୮.୧୨), କୃଷକ ଓ କୃଷିକାର୍ଯ୍ୟ (୧୪.୯.୧୨), କଦଳୀ ଚାଷ (୧୪.୪.୧୩), ଏହା ଉନ୍ନତି ନା ଅବନତିର ଲକ୍ଷଣ (୨୬.୪.୧୩) ଦୃଷ୍ଟବତୀଗାଭୀ (୧୦.୫.୧୩) ମହାଜନ ଚରିତ (୧୪.୬.୧୩) ଅଦା (୨୧.୬.୧୩), ସାଧାରଣ ପାଠାଗାର (୨୮.୬.୯୩), କଦଳୀ ଚାଷ (୫.୭.୧୩), ସ୍ପୃଶ୍ୟା ସ୍ପୃଶ୍ୟ ବିଚାର(୨.୮.୧୩), ଚର୍ବଣର ଉପକାରିତା (୩୦୮.୧୩), ଉତ୍କଳ ଭାଷାନୁରାଗୀ ଲେଖକ ପାଣ୍ଡେୟ (୨୫.୧୦.୧୩),ଫୁସଫୁସରେ ପୀଡ଼ା (୮.୧୧.୧୩), ବରପଣର ବିଷମୟ ଫଳ (୨୧.୩.୧୪) ଚାକିରୀ ଚିନ୍ତା (୨୮.୩.୧୪) ଛାତ୍ର ମାନଙ୍କ ସ୍ୱାସ୍ଥ୍ୟ (୧୮.୪.୧୪), ସାହିତ୍ୟ ଚର୍ଚ୍ଚାର ଉନ୍ନତି (୧୮.୭.୧୪), ସମୟୋଚିତ କର୍ତ୍ତବ୍ୟ (୩୧.୧୦.୧୪), ଗୋଜାତିର ପୀଡ଼ା (୨୦.୨.୧୫), ଉପେକ୍ଷିତ ଜାତି (୬.୩.୧୫), ପଣକିଆ ପାଠ (୫.୬.୧୫), ଶିଳ୍ପ ସଂଧାନ (୧୨.୬.୧୫), ବିବାହ (୨.୨.୧୮), ଜଳକଷ୍ଟ (୨୦.୫.୨୨), ଅସହଯୋଗ ଓ ଅସ୍ପୃଶ୍ୟତା ଦୋଷ (୩.୬.୨୨), ଗୋଶାଳା ପ୍ରସଙ୍ଗ (୧.୭.୨୨), ତାଳତରୁ ରୋପଣ (୧୫.୭.୨୨), ପ୍ରଭୃତି ରଚନା ହିତୈଷିଣୀ ପୃଷ୍ଠାରେ

ପ୍ରକାଶିତ । ଏତଦ୍ ବ୍ୟତୀତ ଅନେକ ଉଚ୍ଚକୋଟୀର ସଂପାଦକୀୟ ଟିପ୍ପଣୀ ତାଙ୍କର ବହୁମୁଖୀ ପ୍ରତିଭାର ପରିଚୟ ଦିଏ । ତାଙ୍କର ଅନେକ ପୁସ୍ତକର ପରିଚୟ ତଥା ସମାଲୋଚନା ମଧ୍ୟ ହିତୈଷିଣୀରେ ପତ୍ରସ୍ଥ ।

ଆଜୀବନ ସଂପାଦକ ବିଦ୍ୟାରତ୍ନ । ଜୀବନକାଳ ମଧ୍ୟରେ ଅନେକ ପତ୍ରିକାର ସଂପାଦନା କରିଛନ୍ତି । କିନ୍ତୁ ହିତୈଷିଣୀ ସଂପାଦନା ହିଁ ତାଙ୍କ ଜୀବନର ମହତ୍ତମ ଅଧ୍ୟାୟ । ବିଦ୍ୟାରତ୍ନ ଜୀବନର ସୃଜନଶୀଳ ପର୍ଯ୍ୟାୟର ପରମ ପ୍ରତିଭୂ ହିତୈଷିଣୀ । ଓଡ଼ିଆ ସାହିତ୍ୟ ନବନିର୍ମାଣରେ ହିତୈଷିଣୀର ଓ ବିଦ୍ୟାରତ୍ନଙ୍କ ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ହିତୈଷିଣୀ ସଂପାଦନା ପରିତ୍ୟାଗ କରିବା ତାଙ୍କ ଜୀବନର ଶ୍ରେଷ୍ଠତମ ଦୁଃଖ । ବିଦାୟ ସମୟରେ ସେ ଘୋଷଣା କରନ୍ତି "ସମ୍ବଲପୁର ହିତୈଷିଣୀର ବୟଃକ୍ରମ ବର୍ତ୍ତମାନ ୧୩ ବର୍ଷ । ଏହି ୧୩ ବର୍ଷ କାଳ ମୁଁ ଏହି ପତ୍ରିକାର ସଂପାଦକ ଓ କାର୍ଯ୍ୟାଧକ୍ଷ ସ୍ୱରୂପ କାର୍ଯ୍ୟକରି ଆସୁଅଛି । ମୋର ଉକ୍ତ କାର୍ଯ୍ୟ ଯଥାଯଥ ରୂପେ ସଂପାଦନ କରିବା ଭଳି ଯୋଗ୍ୟତା ବହୁଦର୍ଶିତା ନଥିଲେ ମଧ୍ୟ ମୋର କ୍ଷୁଦ୍ର ଶକ୍ତିରେ ଯେତେଦୂର ହୋଇପାରେ ତାହା କରିଅଛି । ସୁଦୀର୍ଘ କାଳ ମଧ୍ୟରେ କର୍ତ୍ତବ୍ୟାଧୀନ ହୋଇ ଜ୍ଞାନାଜ୍ଞାନ ଭାବରେ ଅନେକଙ୍କର ଅପ୍ରୀତିଭାଜନ ହେବାକୁ ପଡିଥିବ ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ତହିଁ ସକାଶେ ସେମାନଙ୍କ ଉଦ୍ଦେଶ୍ୟରେ କ୍ଷମା ପ୍ରାର୍ଥନା କରୁଅଛି ।

ବାମଣ୍ଡାରେ ମୋତେ କ୍ରମାଗତ ୧୫ବର୍ଷ କାଳ ଅତିବାହିତ କରିବାକୁ ପଡିଅଛି । ସୁତରାଂ ବାମଣ୍ଡା ନିକଟରେ ମୁଁ ଚିରଋଣୀ ଥିବାର ମୁକ୍ତ କଣ୍ଠରେ ସ୍ୱୀକାର କରୁଅଛି ।

x x x x   x x x x

xxxx ବିଦାୟ ପ୍ରସଙ୍ଗରେ ଅନେକ କଥା କହିବାର ଇଚ୍ଛାଥିଲା କିନ୍ତୁ ମନର ଉଦ୍‌ବେଗ ଏବଂ ଅବକାଶାଭାବରୁ ତାହା ହୋଇ ପାରିଲା ନାହିଁ ।

"ହିତୈଷିଣୀ" ର ସଂପାଦକ ଏବଂ ତତ୍ତ୍ୱାବଧାରକ କାର୍ଯ୍ୟ ପରିତ୍ୟାଗ କରୁଅଛି ସତ୍ୟ କିନ୍ତୁ ହିତୈଷିଣୀର ହିତେଚ୍ଛା ପରିତ୍ୟାଗ କରିନାହିଁ । ସମୟେ ସମୟେ ହିତୈଷିଣୀ ସକାଶେ ସମ୍ବାଦ, ପ୍ରବନ୍ଧ, ଲେଖିବାର ଚେଷ୍ଟା କରିବି । ବର୍ତ୍ତମାନ ସମସ୍ତ ପାଠକ ସହଯୋଗୀ ମାନଙ୍କ ନିକଟରୁ ବିଦାୟ ଗ୍ରହଣ କରୁଅଛି ।" *(୩୭)*

ବିଦ୍ୟାରତ୍ନ ଶେଷ ପର୍ଯ୍ୟନ୍ତ ହିତୈଷିଣୀର ହିତେଚ୍ଛା ପରିତ୍ୟାଗ କରି ନଥିଲେ । କିନ୍ତୁ ବାମଣ୍ଡା ପରିତ୍ୟାଗର କାରଣ ଏକ ପ୍ରଶ୍ନବାଚୀ ହୋଇ ରହିଛି । 'ମନର ଉଦ୍‌ବେଗ' ଓ 'ଅବକାଶାଭାବ' ଶବ୍ଦ ଦୁଇଟିରୁ ଅନୁମାନ କରାଯାଇପାରେ ଏକ ଦୁଃଖଦ ପରିସ୍ଥିତିରେ ସେ ହଠାତ୍ ବାମଣ୍ଡା ପରିତ୍ୟାଗର ନିଷ୍ପତ୍ତି ନିଅନ୍ତି । ତାଙ୍କର ଏ ହଠାତ୍ ନିଷ୍ପତ୍ତିର କାରଣ ରୂପେ ଦୁଇଟି ଘଟଣା କୁ କେହି କେହି ଉଲ୍ଲେଖ କରିଥାନ୍ତି । ପ୍ରଥମତଃ ପାର୍ବତୀ କାବ୍ୟ ପ୍ରକାଶ ଜନିତ

ସୁଢ଼ଳଦେବଙ୍କ ସହିତ ମନାନ୍ତର ଦ୍ୱିତୀୟତଃ ହିତୈଷିଣୀ ତହବିଲରୁ ମଦ୍ୟପାନ ପାଇଁ ତିନିଶତ ଟଙ୍କା ଅଯଥା ଖର୍ଚ୍ଚ ଜନିତ ସୁଢ଼ଳଦେବଙ୍କ ଅଶାନ୍ତିଭାଜନ ।

ପାର୍ବତୀ କାବ୍ୟ ସୁଢ଼ଳ ପ୍ରେସରେ ଅସଂପୂର୍ଣ୍ଣ ଭାବେ ୧୮୯୧ରେ ପ୍ରକାଶ ପାଏ । ଏହାର ଅସଂପୂର୍ଣ୍ଣତାର କାରଣ ରୂପେ ଶଶିଭୂଷଣଙ୍କ ଅପସ୍ମାର ରୋଗକୁ ଦର୍ଶାଯାଇଛି । ପାର୍ବତୀ କାବ୍ୟ ଯୋଗୁଁ ସୁଢ଼ଳଦେବଙ୍କ ସହିତ ମନାନ୍ତର ଘଟିଥିଲେ ସ୍ୱାଭିମାନୀ ବିଦ୍ୟାରତ୍ନ ଅଧିକ ଦଶବର୍ଷ ବାମଣ୍ଡାରେ ରହି ନଥାନ୍ତେ । ପୁନଶ୍ଚ ବିଦ୍ୟାରତ୍ନ ବାମଣ୍ଡାରେ ଅନନ୍ୟ ସମ୍ମାନର ଅଧିକାରୀ ଥିଲେ ଏବଂ ସୁଢ଼ଳଦେବଙ୍କ ପ୍ରିୟପାତ୍ର ଥିଲେ । ଏହି ସାମାନ୍ୟ ଘଟଣା ତାଙ୍କୁ ବାମଣ୍ଡା ପରିତ୍ୟାଗ ପାଇଁ ପ୍ରରୋଚିତ କରି ନପାରେ ।

ଦ୍ୱିତୀୟ କାରଣର ସତ୍ୟତା ସନ୍ଦେହାଚ୍ଛନ୍ନ । ତିନିଶତ ଟଙ୍କା ପାଇଁ ସୁଢ଼ଳଦେବଙ୍କ ପରି ଗୁଣଗ୍ରାହୀ ରାଜା ବିଦ୍ୟାରତ୍ନଙ୍କ ପରି ଗୁଣୀ ଲୋକଙ୍କୁ ପରିତ୍ୟାଗ କରି ନପାରନ୍ତି । ତଥାପି ବି ଏ କାରଣର ସତ୍ୟତା ଅଧିକ ଅନୁସଂଧାନର ଅପେକ୍ଷା ରଖେ । ଜୀବନ ସାରା ମଦ୍ୟ ପାନ ବିରୁଦ୍ଧରେ ସଂଗ୍ରାମ ଚଳାଇଥିବା ବିଦ୍ୟାରତ୍ନଙ୍କୁ ନିଶାସକ୍ତ ବୋଲି ଅପବାଦ ଦେବାକୁ ଏ ଲେଖକ କୁଣ୍ଠିତ । ଏତଦ୍ ବ୍ୟତୀତ କବି ଦିବ୍ୟରାଜ ସିଂହ ନିଜର ସ୍ମୃତି ଚାରଣ ''ସ୍ମୃତି ମଞ୍ଜୁଷାରୁ କିଛି'' *(୩୮)* ରେ ଏକ ଭିନ୍ନ ମତ ପୋଷଣ କରନ୍ତି । ତାଙ୍କ ମତରେ ହିତୈଷିଣୀ ସଂପାଦକ ବିଦ୍ୟାରତ୍ନ ଓ ପ୍ରେସ ସେକ୍ରେଟାରୀ ବିଶ୍ୱନାଥ ପାଣିଗ୍ରାହୀଙ୍କ ମଧ୍ୟରେ ମନାନ୍ତର ସୃଷ୍ଟି ହୁଏ । ଉଭୟେ ସୁଢ଼ଳଦେବଙ୍କୁ ଆପତ୍ତି କରନ୍ତି । ରାଜା ନୀରବ ରହିବାରୁ ସ୍ୱାଭିମାନୀ କର୍ମୀ ଦ୍ୱୟ ଇସ୍ତଫା ଦିଅନ୍ତି । ରାଜା ଇସ୍ତଫା ପତ୍ର ଗ୍ରହଣ କରି ନେବାରେ ବିଶ୍ୱନାଥ ଓ ବିଦ୍ୟାରତ୍ନ ବାମଣ୍ଡା ପରିତ୍ୟାଗ କରନ୍ତି । ଏ ମତ ଅନ୍ତରାଳରେ କିଛି ତିକ୍ତ ଘଟଣା ଥାଇପାରେ ।

ଏ ସମସ୍ତ ମତ ସାବ୍ୟସ୍ତ କିରବା ପାଇଁ ସବିଶେଷ ଯୁକ୍ତିନାହିଁ ବରଂ ବିଶ୍ୱାସ କରାଯାଇପାରେ ବାମଣ୍ଡାରେ ବିଦ୍ୟାରତ୍ନଙ୍କ ଶେଷ ସମୟ ପାରିବାରିକ ଦୁର୍ବିପାକ ଯୋଗୁ ଦୁର୍ବିସହ ହୋଇ ପଡିଥିଲା । ୪.୧୨.୧୮୯୭ ରେ ତାଙ୍କର ପତ୍ନୀ ଏକ ମୃତ ପୁତ୍ର ପ୍ରସବ କରନ୍ତି ଏବଂ ୬.୧୨.୧୮୯୭ରେ ତାଙ୍କର ଦେହାନ୍ତ ହୁଏ *(୩୯)* । ପରବର୍ଷ ତାଙ୍କର ଗୃହଦାହ ହୁଏ । ଅନେକ ସମୟ ସେ ପୀଡିତ ରହୁଥିଲେ । ଏ ସମସ୍ତ କାରଣରୁ ସେ ଜନ୍ମଭୂମି ବାଙ୍କୀକୁ ପ୍ରତ୍ୟାବର୍ତ୍ତନ କରିବାକୁ ସିଦ୍ଧାନ୍ତ ନେଇଥାଇ ପାରନ୍ତି । ସେ ଯା ହେଉ ବିଦ୍ୟାରତ୍ନଙ୍କ ବାମଣ୍ଡା ପରିତ୍ୟାଗକୁ ପାରିବାରିକ ଅସୁବିଧା ଜନିତ ବୋଲି ଗ୍ରହଣ କରିନେବା ଅଧିକ ଯୁକ୍ତି ସଙ୍ଗତ ।

ବିଦ୍ୟାରତ୍ନ ଓଡ଼ିଶାର ଜଣେ ବିଚକ୍ଷଣ ବ୍ୟକ୍ତିତ୍ୱ । ଶତାଧିକ ପୁସ୍ତକର ସେ ସ୍ରଷ୍ଟା । ଶିକ୍ଷା, ଚିକିତ୍ସା, କୃଷି,ସାହିତ୍ୟ ତଥା ବିବିଧ ବିଷୟକ ଅନେକ ପୁସ୍ତକ ସେ ପ୍ରଣୟନ କରିଛନ୍ତି । ଲୋକଙ୍କୁ ଶିକ୍ଷିତ କରିବାର ଆଭିମୁଖ୍ୟ ନେଇ ସେ ଲେଖନୀ ଚାଳନା କରୁଥିଲେ । ତେଣୁ ତାଙ୍କ ରଚନା ମାଧ୍ୟମରେ ସାହିତ୍ୟିକ କଳା ସୌନ୍ଦର୍ଯ୍ୟ ଅନ୍ୱେଷଣ କରିବା ଅପେକ୍ଷା ଏକ ସଂବେଦନଶୀଳ ଦୃଷ୍ଟିଭଙ୍ଗୀନେଇ ତାଙ୍କର ସାହିତ୍ୟିକ ମୂଲ୍ୟାୟଂନ ସର୍ବାଦୌ କର୍ତ୍ତବ୍ୟ ।

## (ଖ) ବ୍ରଜବନ୍ଧୁ ମିଶ୍ର (୧୮୫୪-୧୯୪୦):

''ଉତ୍କଳବନ୍ଧୁ' ପତ୍ରିକା (୧୮୯୬) ର ସଂପାଦକ ପଣ୍ଡିତ ବ୍ରଜବନ୍ଧୁ ମିଶ୍ର ଉତ୍କଳ ସାହିତ୍ୟ ଓ ସଂସ୍କୃତିର ପ୍ରକୃତ ବନ୍ଧୁ ଥିଲେ । ୧୮୫୪ ମସିହାରେ ତାଳଚେରର ନିଜଗଡ ବ୍ରାହ୍ମଣ ଶାସନରେ ଜନ୍ମଗ୍ରହଣ କରି ସେ ନିଜର ପ୍ରଜ୍ଞା ଏବଂ ପାଣ୍ଡିତ୍ୟ ବଳରେ ସାରା ଓଡ଼ିଶାର ବାଙ୍ମୟରେ ପ୍ରତିଷ୍ଠାଲାଭ କରିଥିଲେ ।

ବ୍ରଜବନ୍ଧୁ ତାଳଚେରଠାରୁ ଉର୍ଣ୍ଣାକୁଲାର ଶିକ୍ଷାସମାପ୍ତ ପରେ ଶିକ୍ଷକତା କରିଥିଲେ । ଶିକ୍ଷକ ରୂପେ ତାଳଚେର, ବଉଦ, ବାମଣ୍ଡା, ପ୍ରଭୃତି ତତ୍କାଳୀନ ଗଡଜାତ ରାଜ୍ୟରେ ଅବସ୍ଥାପିତ ହୋଇଥିଲେ । ଶିକ୍ଷକତା ସହିତ ସେ ନିଜକୁ ସାରସ୍ୱତ ସାଧନାରେ ଉତ୍ସର୍ଗ କରିଥିଲେ । ୧୮୯୯ ଠାରୁ ସେ ବାମଣ୍ଡାରେ ଅବସ୍ଥାନ କରି ଶିକ୍ଷକତା ସହିତ ସାରସ୍ୱତ କର୍ମରେ ନିଜର ପରବର୍ତ୍ତୀ ସମୟ ଅତିବାହିତ କରନ୍ତି । *(୪୦)* ବାମଣ୍ଡା ରହଣୀ ହିଁ ତାଙ୍କର ସାରସ୍ୱତ ଜୀବନକୁ ଋଦ୍ଧିମନ୍ତ କରିଥିଲା । ହିତୈଷିଣୀ ଅନ୍ତରାଳରେ ବିକଶିତ ହୋଇଥିଲା ବ୍ରଜବଂଧୁଙ୍କ ସାରସ୍ୱତ ପ୍ରତିଭା ।

୧୮୯୬ରେ ପ୍ରକାଶିତ ଉତ୍କଳବନ୍ଧୁ ପତ୍ରିକାର ସଂପାଦନା ବ୍ରଜବଂଧୁ ନିର୍ବାହ କରୁଥିଲେ । ଏ ପତ୍ରିକା ସଂପ୍ରତି ଦୁଷ୍ପ୍ରାପ୍ୟ । ୧୯୦୨ ଖ୍ରୀ:ରେ ନୀଳମଣି ବିଦ୍ୟାରତ୍ନ ବାମଣ୍ଡା ପରିତ୍ୟାଗ କରିବା ପରେ ହିତୈଷିଣୀ ସଂପାଦନା ଭାର ବ୍ରଜବଂଧୁଙ୍କ ଉପରେ ପଡିଥିଲା । ତାଙ୍କରି ସଂପାଦନାରେ ତା-୮.୧.୧୯୦୨ ରୁ ତା ୩୦-୩-୧୯୦୪ ପର୍ଯ୍ୟନ୍ତ ହିତୈଷିଣୀର ସାରସ୍ୱତ ମୂଲ୍ୟବୋଧ ବହୁଗୁଣିତ ହୋଇଥିଲା । ହିତୈଷିଣୀର ସଂପାଦନା କାର୍ଯ୍ୟ ଗ୍ରହଣ ପରିପ୍ରେକ୍ଷୀରେ ସେ ଯେଉଁ ବକ୍ତବ୍ୟ ପ୍ରଦାନ କରନ୍ତି ତାହା ତାଙ୍କର ମହନୀୟ ପ୍ରତିଭାର ଦୃଷ୍ଟାନ୍ତ ବହନ କରେ । '' ଜଗତନିୟନ୍ତା, ଜଗଦୀଶ୍ୱରଙ୍କ କରୁଣା ବଳରେ ମୋହର କ୍ଷୁଦ୍ର ଜୀବନ ଅଦ୍ୟ ଗୋଟିଏ ସୁମହତ୍ ପଥର ପଥିକ ହୋଇଅଛି । ପୃଥିବୀର କାର୍ଯ୍ୟ କଳାପର ଉନ୍ନତି ନିମନ୍ତେ ମନୁଷ୍ୟର ସୃଷ୍ଟି, ସେହି ସବୁ ଉନ୍ନତିର ପ୍ରଧାନ ସହାୟ ସାହସ ଓ ଉତ୍ସାହ । ଈଶ୍ୱର ଆମ୍ଭମାନଙ୍କୁ ଏହି ଉଭୟ ଶକ୍ତିଦାନ କରି ଅଛନ୍ତି । ପରମେଶ୍ୱରଙ୍କର ଅନୁଗ୍ରହ ସ୍ମରଣ ରଖି ଆମ୍ଭେମାନେ ଏହି ଶକ୍ତି ଯୁଗଳକୁ ଅପଚୟ ନକଲେ ଅବଶ୍ୟ କର୍ତ୍ତବ୍ୟ ପାଳନ କରିପାରିବୁ । କର୍ତ୍ତବ୍ୟ ପାଳନ ନିମନ୍ତେ ଶ୍ରମ ସ୍ୱୀକାର କରିବା ପ୍ରତ୍ୟେକ ବ୍ୟକ୍ତିର ଆବଶ୍ୟକ । ଏହି ଆବଶ୍ୟକ ବିଷୟଟି କେବଳ ସ୍ୱକାର୍ଯ୍ୟର ବଶବର୍ତ୍ତୀ ନୁହେଁ, ତାହା ସ୍ୱକାର୍ଯ୍ୟ ଓ ପରକାର୍ଯ୍ୟର ମଧ୍ୟସ୍ଥ ଅଟେ । ସୁତରାଂ ହିତୈଷିଣୀ ପତ୍ରିକାର ଯାବତୀୟ କାର୍ଯ୍ୟ କଳାପର ଉନ୍ନତି କେବଳ ଯେ ସଂପାଦକର କର୍ତ୍ତବ୍ୟ କାର୍ଯ୍ୟ ଏମନ୍ତ ନୁହେଁ । ଏହା ସହଯୋଗୀ, ଲେଖକ, ଗ୍ରାହକ ଓ ଅନୁଗ୍ରାହକ ମାନଙ୍କର କର୍ତ୍ତବ୍ୟ ମଧ୍ୟରେ ଗ୍ରହଣ କରିବାକୁ ହେବ । ସୁତରାଂ କର୍ତ୍ତବ୍ୟାଧୀନ ବ୍ୟକ୍ତିମାନଙ୍କର ସାହସ ଓ ଉତ୍ସାହ ସ୍ମରଣ କରି ମୁଁ ସକଳ ଦୁର୍ଭାବନା ତ୍ୟାଗ କରିଅଛି ।'' *(୪୧)*

ବ୍ରଜବଂଧୁଙ୍କ ସଂପାଦନା ସମୟେ ହିତୈଷିଣୀ ସାରସ୍ୱତ କୃତି ଉପରେ ଅଧିକ ଗୁରୁତ୍ୱ ଦେଇଥିବାର ମନେହୁଏ । ହିତୈଷିଣୀର ଅଧିକ ସ୍ଥାନ କାବ୍ୟ, କବିତା, ସାହିତ୍ୟିକ ଆଲୋଚନା, ପୁସ୍ତକ ସମୀକ୍ଷା ପ୍ରଭୃତିରେ ବ୍ୟୟିତ ହେଉଥିବାରୁ ସଂବାଦ ପ୍ରକାଶନ ପୂର୍ବାପେକ୍ଷା ସୀମିତ ହୋଇ ପଡିଥିଲା । ସଂପାଦକ ବିଭିନ୍ନ ଅନୁଷ୍ଠାନର କାର୍ଯ୍ୟ ପ୍ରଣାଳୀ ଓ ଉତ୍କଳୀୟ ମାନଙ୍କ ମଧ୍ୟରେ ଜାତୀୟ ଭାବ ଉଦ୍ରେକ ଦିଗରେ ଅଧିକ ରୁଚି ପ୍ରଦର୍ଶନ କରୁଥିଲେ । ଏଣୁ ପ୍ରେରିତ ପତ୍ର ସ୍ତଂଭରେ "ଜଣେ ଗ୍ରାହକ" ବ୍ରଜବଂଧୁଙ୍କ ସମୟରେ ହିତୈଷିଣୀ ତା'ର ପ୍ରାଚୀନ ନାମ ରଖି ପାରି ନଥିବାରୁ ଦୁଃଖ ପ୍ରକାଶ କରିଛନ୍ତି । *(୪୨)* କିନ୍ତୁ ଏ ଅଭିଯୋଗ ଥିଲା ଏକଦେଶଦର୍ଶୀ । ବ୍ରଜବଂଧୁ ବିଦ୍ୟାରତ୍ନ ପ୍ରବର୍ତ୍ତିତ ଧାରାକୁ ଅଧିକ ପରିପୁଷ୍ଟ କରିଥିବା ଅନୁମିତ ହୁଏ । ୩୦.୩.୧୯୦୪ ସଂଖ୍ୟାରୁ ସଂପାଦକ ପଦରୁ ବ୍ରଜବଂଧୁ ଓହୋରି ଯାଆନ୍ତି ।

୧୯୧୩ ବେଳକୁ ସଂବଲପୁର ଫ୍ରେଜର ପ୍ରେସରେ ପଣ୍ଡିତ ଧରଣୀଧର ମିଶ୍ର ପ୍ରମୁଖଙ୍କ ପୃଷ୍ଠପୋଷକତାରେ 'ଉତ୍କଳ ସେବକ' ସାପ୍ତାହିକ ପ୍ରକାଶ ଲଭେ । ଏ ପତ୍ରିକାର ପ୍ରଥମ ସଂପାଦକ ରୂପେ ବ୍ରଜବଂଧୁ ପତ୍ରିକାର ସର୍ବାଙ୍ଗୀନ ଉନ୍ନତି ସାଧନ କରିଥିଲେ ।

୧୯୩୩-୩୪ ବେଳକୁ ବ୍ରଜବଂଧୁ ତାଳଚେର ପ୍ରକାଶିତ 'ଗଡଜାତ ବାସିନୀ' ପତ୍ରିକାର ସଂପାଦନା ଗ୍ରହଣ କରନ୍ତି । ଏ ପତ୍ରିକାରେ ସାହିତ୍ୟପ୍ରତି ସମ୍ବାଦ ସହିତ ସମଧିକ ସମ୍ମାନ ଦିଆଯାଉଥିଲା ।

ଉଲ୍ଲିଖିତ ପତ୍ର ପତ୍ରିକା ସଂପାଦନା ବ୍ୟତିରେକେ ବ୍ରଜବନ୍ଧୁ ଏକ ମୌଳିକ ସ୍ରଷ୍ଟା । ସେ ଏକାଧାରାରେ କବି, ଗାଳ୍ପିକ, ସମାଲୋଚକ ଓ ନାଟ୍ୟକାର । ହିତୈଷିଣୀ, ଉତ୍କଳସେବକ, ଉତ୍କଳଦୀପିକା, ଉତ୍କଳମଧୁପ, ଗଡଜାତ ବାସିନୀ ପ୍ରଭୃତି ପତ୍ର ପତ୍ରିକାରେ ତାଙ୍କର ଅନେକ ରଚନା ପ୍ରକାଶିତ ।

ବ୍ରଜବନ୍ଧୁ ଅର୍ଦ୍ଧ ଶତାଧିକ ପୁସ୍ତକର ରଚୟିତା । ସଦ୍ୟୋଜାତ ସ୍ତବ, ଦୁର୍ଗାସ୍ତବ, ଛାଦମନାସ, କୀଚକବଧ, ଭୀଷ୍ମ ଶରଶଯ୍ୟା, ବାଳୀବଧ, ବାଲ୍ମୀକି , ଶ୍ରୀକୃଷ୍ଣସ୍ତବ, ପଞ୍ଚଧାରା, କୁସୁମଲତା, ବସନ୍ତ କାନନ, ଶିଶିର ପଲ୍ଲୀ, ବୀଣାପାଣି, ଚିତ୍ର ସମନ୍ୱୟ, ଜୀବନଦର୍ପଣ, ଉତ୍କଳମାତା, ଆଲେଖ୍ୟଗୀତି, ଉପଦେଶ ସୁଧାନିଧି, ମହୁଆର ବିଳାପ, ପ୍ରାର୍ଥନା, କୌତୁକ ଗୀତି, ଅଦ୍‌ଭୁତ ସ୍ୱପ୍ନ ପ୍ରଭୃତି ତାଙ୍କର ଉଲ୍ଲେଖନୀୟ କାବ୍ୟ । ଏତଦ୍ ବ୍ୟତୀତ ପ୍ରେମବାଣୀ, ନବସଙ୍ଗୀତ, ସଙ୍ଗିନୀ ଚଉତିଶା, ସୁଡ଼ଙ୍ଗ କୋଇଲି, ତାଳଚେର ପ୍ରଶସ୍ତି, ଭ୍ରାନ୍ତ ପଥିକ ପ୍ରଭୃତି କବିତା ମଧ ତାଙ୍କର କାବ୍ୟ ପରାକାଷ୍ଠାର ପରିଚୟ ପ୍ରଦାନ କରେ ।

ଜୀବନ ଦର୍ପଣ, ଚିତ୍ର ସମନ୍ୱୟ ଓ ଭୀଷ୍ମ କାବ୍ୟ କବିଙ୍କର ଅନନ୍ୟ ସୃଷ୍ଟି । ଚିତ୍ର ସମନ୍ୱୟ ଓ ବୀଣାପାଣି କାବ୍ୟ ଯଥାକ୍ରମେ ସଚ୍ଚିଦାନନ୍ଦଙ୍କ ଚିତ୍ର ଓ ରାଧାନାଥଙ୍କ ଚିଲିକା କାବ୍ୟର ସମନ୍ୱୟ । କାବ୍ୟ ସମନ୍ୱୟ ରଚନାର ଏ ପରଂପରା ବ୍ରଜବନ୍ଧୁଙ୍କ କାବ୍ୟରେ ଅଭିନବ ରସ ସୌନ୍ଦର୍ଯ୍ୟ ଲାଭ କରିଛି ।

ବ୍ରଜବନ୍ଧୁ ସଚ୍ଚିଦାନନ୍ଦ ଦେବଙ୍କ ମାୟା ଶବରୀ ଓ ଭୀଷ୍ମ କାବ୍ୟର ଯାତ୍ରାରୂପ ପ୍ରଦାନ କରିଥିଲେ । ଏହା ଓଡ଼ିଶାରେ ଖୁବ୍ ଲୋକ ପ୍ରିୟ ହୋଇ ପାରିଥିଲା । 'ବସନ୍ତ ମାଳତୀ' (୧୯୦୨) ଓଡ଼ିଶାର ପ୍ରାରମ୍ଭିକ ସମୟର ଏକ ଲୋକପ୍ରିୟ ଉପନ୍ୟାସ । ଉପଧା ବିଚାର (୧୯୧୩) ବ୍ରଜବନ୍ଧୁଙ୍କର ଏକ ଶ୍ରେଷ୍ଠ ଆଲୋଚନା ପୁସ୍ତକ । ଉପଧା ମିଳନ ଉପରେ ଏ ପୁସ୍ତକରେ ବୈଜ୍ଞାନିକ ପର୍ଯ୍ୟାଲୋଚନା କରାଯାଇଛି । ଉପଧା ଦ୍ୱାରା ଓଡ଼ିଆ କବିତାର ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ଗତିପଥର ବିଶ୍ଳେଷଣ କରାଯାଇଛି । ଉପଧା ପ୍ରଚଳିତ ଯୁଗରେ ଏ ପୁସ୍ତକ ଏକ ବଳିଷ୍ଠ ପଦକ୍ଷେପ । 'ଉପଧା ଅନିଷ୍ଟ ଚିନ୍ତା' (୧୯୧୪) ଏ ପ୍ରସଙ୍ଗରେ ଅନ୍ୟ ଏକ କ୍ରାନ୍ତିକାରୀ ସୃଷ୍ଟି । ବ୍ରଜବଂଧୁ ହିତେଷିଣୀ ସଂପାଦନା କାର୍ଯ୍ୟ ପରିତ୍ୟାଗ କରିଥିଲେ । କିନ୍ତୁ ହିତୈଷିଣୀ ସହିତ ଶେଷ ପର୍ଯ୍ୟନ୍ତ ତାଙ୍କର ସଂପର୍କ ଅତୁଟ ଥିଲା । ତାଙ୍କର ଅନେକ ରଚନା ହିତୈଷିଣୀରେ ପ୍ରକାଶିତ, ହିତୈଷିଣୀରେ ପ୍ରକାଶିତ ଉଚ୍ଚକୋଟୀର କାବ୍ୟ କବିତା ମଧ୍ୟରେ ପଞ୍ଚଧାରା (୧୪.୩.୧୮୯୪) ଅଦ୍ଭୁତସ୍ୱପ୍ନ (୮.୪.୧୮୯୬) ବଂଧୁ ଠାରୁ ବିଦାୟ (୪.୧୨.୧୮୯୬) ପଦ୍ମ (୨୨.୨.୧୯୦୨) ପ୍ରାର୍ଥନା (୧୫.୧.୧୯୦୨) ସଂସାର (୨୮.୫.୧୯୦୨), ଭ୍ରାନ୍ତ ପଥିକ (୧୦.୬.୧୯୦୩) ୧୯୧୧ ବିଦାୟଗୀତି (୧୧.୧.୧୯୧୩) ମର୍ମବ୍ୟଥା (୮.୫.୧୯୨୦) ଏକପଦୀ (୯.୧୨.୧୯୨୨) ପ୍ରକୃତି ପ୍ରଧାନ । ବାମଣ୍ଡା ଆଲୋଚନା ସଭାର ସେ ଥିଲେ ଅନ୍ୟତମ ସମ୍ମାନନୀୟ ସଭ୍ୟ ।

ରାଧାନାଥ ଯୁଗୀୟ ଓଡ଼ିଆ ସାହିତ୍ୟରେ ଏକ ବଳିଷ୍ଠ କାବ୍ୟ ପୁରୁଷ ବ୍ରଜବଂଧୁ ମିଶ୍ର । ସେ ନିଜସ୍ୱ ବହୁମୁଖୀ ଦାନରେ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଥିଲେ ।

## (ଗ) ଦୀନବନ୍ଧୁ ଗଡନାୟକ : (୧୮୭୬-୧୯୩୨):

ଦୀନବଂଧୁ ଗଡନାୟକ ଦେବଗଡର ନନେଇ ଗ୍ରାମ (ବର୍ତ୍ତମାନ ରେଙ୍ଗାଲୀ ବନ୍ଧ ଯୋଜନା ଦ୍ୱାରା ଜଳମଗ୍ନ) ରେ ୧୮୭୬ ରେ ଜନ୍ମ ଲଭିଥିଲେ । ପିତା ଶ୍ରୀପତି ଗଡନାୟକ ବାମଣ୍ଡା ରାଜା ସୁଜଳ ଦେବଙ୍କ ପେଷ୍କାର ତଥା ତିନୋଟି ଗ୍ରାମର ଅଧକ୍ଷ ପଦ ପାଇଥିଲେ । ଦୀନବଂଧୁ ପିତାଙ୍କର ତୃତୀୟ ପୁତ୍ର । ବଡଭାଇ ଜଗନ୍ନାଥ ଜଣେ ସ୍ୱାଧୀନତା ସଂଗ୍ରାମୀ । ପିତା ଓ ବଡ ଭାଇଙ୍କ ଆଦର୍ଶରେ ଅନୁପ୍ରାଣିତ ଦୀନବଂଧୁ ସାହିତ୍ୟିକର ପବିତ୍ର ଜୀବନକୁ ବାଛି ନେଇଥିଲେ । ୧୮୯୨ରେ ମିଡ଼ିଲ ଭର୍ଣ୍ଣାକ୍ୟୁଲାର (ବାମଣ୍ଡା) ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ସହିତ ସର୍ବୋତ୍କୃଷ୍ଟ ବିଜ୍ଞାନ ପରୀକ୍ଷାର୍ଥୀ ରୂପେ ସରକାରଙ୍କ ଦ୍ୱାରା ପୁରସ୍କୃତ ହୁଅନ୍ତି । *(୪୩)* ସେହିବର୍ଷ ଠାରୁ ହିତୈଷିଣୀ ରେ ତାଙ୍କ କବିତାଦି ପ୍ରକାଶ ପାଏ । *(୪୪)*

ଦୀନବଂଧୁ ଜଣେ ଜୀବନବାଦୀ କବି, ଅନୁଭୂତିସିକ୍ତ ଆଲୋଚକ । ଜୀବନାନୁଭବରେ ଅନୁପ୍ରାଣିତ ତାଙ୍କର ସାରସ୍ୱତ କର୍ମ ସାର୍ବଜନୀନ, ଉଦ୍‌ବୋଧନକ୍ଷମ ଏବଂ ଗ୍ରହଣୀୟ ।

ଦେଶକାଳର ବାସ୍ତବ ପଟ୍ଟଭୂମିରେ ନିଜ ମାଟି, ପାଣି ପବନ ପ୍ରତି ବିଶ୍ୱସ୍ତ ରହି ଏକ କାଳୋତ୍ତୀର୍ଣ୍ଣ ସୃଷ୍ଟି ସଂପଦକୁ ବ୍ୟକ୍ତିକ ଚେତନା ଭିତରେ ନୈର୍ବ୍ୟକ୍ତିକ ଅଙ୍ଗୀକାରବଦ୍ଧତା ଆଣି ଦେବାରେ ଦୀନବନ୍ଧୁଙ୍କର ସୃଷ୍ଟିକର୍ମ ଉତ୍ସର୍ଗୀକୃତ । ସାର୍ବଜନୀନ ହିତୈଷଣା କକ୍ଷେ ଏ ପ୍ରତିଭା ସୃଷ୍ଟିକରିଛି ସିନ୍ଧୁ ମନ୍ଥନ (୧୯୦୨), ଜୀବନତରଙ୍ଗ (୧୯୦୪), ଧର୍ମକର୍ମ (୧୯୧୨), ଶୋଭା ସୁନ୍ଦରୀ (୧୯୧୨) ପ୍ରଭୃତି କବିତ୍ୱା ପୁସ୍ତକ ଓ ଅଜସ୍ର ବିବିଧ କବିତା ବିଭିନ୍ନ ପତ୍ରପତ୍ରିକା ପୃଷ୍ଠାରେ । ହିନ୍ଦୀ, ଇଂରାଜୀ, ବଙ୍ଗଳା ଓ ଓଡ଼ିଆ ଭାଷାରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲା । ବହୁ ଶାସ୍ତ୍ର ଦର୍ଶୀ ଏ ସାଧକ ତେଣୁ ସୃଷ୍ଟି କରିଛି ପରିଶ୍ରମ (୧୯୧୨) ନାରୀଶିକ୍ଷା (୧୯୧୩) ବଂଧ୍ୟାଚିକିତ୍ସା, ଛିନ୍ନ ମନ୍ଦାର ମାଳା (୧୯୧୫) କର୍ମପଥ (୧୯୨୦) ଧର୍ମ ଯୁଧିଷ୍ଠିର ସଂବାଦ ପ୍ରଭୃତି ପ୍ରବନ୍ଧ ସଂକଳନ ।

୨୮-୮-୧୯୦୯ ଠାରୁ ଶେଷ ପର୍ଯ୍ୟନ୍ତ ହିତୈଷିଣୀର ସଙ୍କଟମୟ ପରିସ୍ଥିତିରେ ଏହାର ଗୁରୁଭାର ଗ୍ରହଣ କରନ୍ତି ଦୀନବଂଧୁ ଗଡନାୟକ । ବିଦ୍ୟାରତ୍ନଙ୍କ ସମୟରେ ସାହିତ୍ୟ ପ୍ରାଣ ରାଜା ବୃନ୍ଦାବନଦେବଙ୍କ ସଂପୂର୍ଣ୍ଣ ସହାୟତାରେ ପରିଚାଳିତ ଏ ପତ୍ରିକା ଦୀନବଂଧୁଙ୍କ ସମୟରେ ସ୍ୱୟଂଚାଳିତ ହୁଏ । ଦୀନବଂଧୁଙ୍କ ସଂପାଦନାର ଉତ୍କର୍ଷତାର ଭୂୟସୀ ପ୍ରଶଂସା କରନ୍ତି ଅଗ୍ରସୂରୀ ବିଦ୍ୟାରତ୍ନ । "x x x x ବର୍ତ୍ତମାନ ଶ୍ରୀ ଦୀନବଂଧୁ ଗଡନାୟକଙ୍କ ସମୟରେ ପରିଚାଳିତ ହିତୈଷିଣୀ ସର୍ବପ୍ରକାର ଉଚ୍ଛୃଙ୍ଖଳତାଶୂନ୍ୟ ଥିଲା ସେ ଧୀର ଭାବରେ ବିଷୟ ନିର୍ବାଚନ କରି ପତ୍ରିକା ସଂପାଦନ କରୁଥିଲେ । ଏଥି ସକାଶେ ସେ ବିଶେଷ ଧନ୍ୟବାଦର ପାତ୍ର ।" *(୪୫)*

ଦୀନବଂଧୁଙ୍କ ସଂପାଦନାରେ ହିତୈଷିଣୀର ସାମାଜିକ ଓ ସାରସ୍ୱତ କର୍ତ୍ତବ୍ୟ ବଢ଼ିଯାଇଥିଲା । ଲେଖକ ଗୋଷ୍ଠୀ ପ୍ରସାରିତ ହୋଇଥିଲେ । ମାସିକ ସାହିତ୍ୟ ସମାଲୋଚନା କ୍ରମରେ ଓଡ଼ିଆ ସାହିତ୍ୟ ତଥା ପ୍ରକାଶିତ ପତ୍ର ପତ୍ରିକାର ଲେଖା ଗୁଡିକର ନିରପେକ୍ଷ ମୂଲ୍ୟାୟନ କରାଯାଉଥିଲା । ଏ ସମୟକୁ ହିତୈଷିଣୀର ଅର୍ଦ୍ଧାଂଶ ସାହିତ୍ୟ ପାଇଁ ବିନିଯୋଗ ହେଉଥିଲା ।

ଦୀନବଂଧୁ ଗଡ଼ନାୟକ ଦୀନବଂଧୁ ପ୍ରଧାନଙ୍କ ଠାରୁ ହିତୈଷିଣୀ ସଂପାଦନା ଗ୍ରହଣ କରିଥିଲେ । ସଂପାଦନା ଗ୍ରହଣ ସମୟେ ସୂଚୀତ ତାଙ୍କର ସବିନୟ ନିବେଦନ ତାଙ୍କର ବିନମ୍ରତାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ହିତୈଷିଣୀ ସଂପାଦନାକୁ ରାମଙ୍କ ସେତୁବଂଧ ଓ ତାଙ୍କର କର୍ତ୍ତବ୍ୟକୁ ଗୁଣ୍ଡୁଚିତୁଲ୍ୟ ବୋଲି ସ୍ୱୀକାର କରି ସେ ଓଡ଼ିଆ ପାଠକଙ୍କୁ ସହଯୋଗ ନିବେଦନ କରିଛନ୍ତି । *(୪୬)*

ଓଡ଼ିଆ ସାମାଜିକ ଦୂରାବସ୍ଥାର ଆଶୁ ସମାଧାନ ପାଇଁ ହିତୈଷିଣୀ ମାଧ୍ୟମରେ ଦୀନବଂଧୁ ସଂଗ୍ରାମ ଚଳାଇଥିଲେ । ଏଥି ସହିତ ଓଡ଼ିଆ ସାହିତ୍ୟର ବିକାଶ ସାଧନ ପାଇଁ ତାଙ୍କର ହୃଦୟ ସତତ ତତ୍ପର ଥିଲା । ସଂପାଦକୀୟ ଟୀପ୍ପଣୀରେ ସେ ବାରଂବାର ସାହିତ୍ୟ ସେବକ ମାନଙ୍କୁ ଆହ୍ୱାନ କରୁଥିଲେ । "ଉତ୍କଳରେ ସାହିତ୍ୟ ଚର୍ଚ୍ଚା ନିତ୍ୟାନ୍ତ ପଶ୍ଚାତ୍‌ପଦ । ଉତ୍କଳ ସାହିତ୍ୟ

ସେବକବୃନ୍ଦ ନିତ୍ୟାନ୍ତ ଉଦାସୀନ । ଅତଏବ ଏ କ୍ଷେତ୍ରରେ ସାହିତ୍ୟ ଚର୍ଚ୍ଚା କି ରୂପ ଅସହାୟତାର କାର୍ଯ୍ୟ ତାହା ନିତ୍ୟାନ୍ତ ଶୈଶବାବସ୍ଥାରେ ପତିତ ଏହା ସମସ୍ତେ ସ୍ୱୀକାର କରିବେ । x x x x ଆଧୁନିକ ରୁଚି, ନୀତି, ସମୟ, ବ୍ୟବସ୍ଥା, କର୍ତ୍ତବ୍ୟ ସାହିତ୍ୟର ଅବସ୍ଥା ପ୍ରତି ଦୃଷ୍ଟି ପାତ କରି କଲମ ଧାରଣ ନିମନ୍ତେ ଆମ୍ଭେମାନେ ନବୀନ ଲେଖକ ମାନଙ୍କୁ ଅନୁରୋଧ କରୁଅଛୁଁ ।'' *(୪୭)*

ଦୀନବଂଧୁଙ୍କ ସମୟେ ହିତୈଷିଣୀର ଆକାର ବୃଦ୍ଧି ପାଇଥିଲା । ଏଥିପାଇଁ ଶିକ୍ଷିତ ବ୍ୟକ୍ତି ମାନଙ୍କ ଠାରୁ ସେ ଉତ୍କଟ ରାଜନୀତି ବ୍ୟତୀତ ଅନ୍ୟ ସମସ୍ତ ବିଷୟର ଲେଖା ଆହ୍ୱାନ କରୁଥିଲେ । ହିତୈଷିଣୀ (୩୪/୨୦) ତା-୩.୩.୧୯୨୩ ସଂଖ୍ୟାରୁ ଏହା ବନ୍ଦ ହେବାର ଘୋଷଣା କରି ଦୀନବଂଧୁ ପତ୍ରିକାର ଅନ୍ତ ଦେଖିଥିଲେ । ଏହା ଥିଲା ଦୀନବଂଧୁଙ୍କ ଜୀବନର ସର୍ବଶ୍ରେଷ୍ଠ ଦୁଃଖଦ ମୁହୂର୍ତ୍ତ । ହିତୈଷିଣୀ ସଂପାଦନା ଥିଲା ତାଙ୍କ ଜୀବନର ମହତ୍ତମ ସୌଭାଗ୍ୟ ।

## (ଘ) ଅନ୍ୟାନ୍ୟ ସଂପାଦକ :

ହିତୈଷିଣୀର ପଇଁତିରିଶ ବର୍ଷର ପ୍ରକାଶନ ମଧ୍ୟରେ ଅନେକ ବିଦ୍ୱାନ ସାରସ୍ୱତ ସାଧକ ଏହାର ସଂପାଦନା ଗ୍ରହଣ କରିଛନ୍ତି । ବିଦ୍ୟାରତ୍ନଙ୍କ ସଂପାଦନା ସମୟେ ତାଙ୍କର ଅନୁପସ୍ଥିତିରେ ଦାମୋଦର ମିଶ୍ର ସଂପାଦନା କାର୍ଯ୍ୟ ନିର୍ବାହ କରୁଥିଲେ । ଦାମୋଦର ମିଶ୍ର ରାଧାନାଥ ଯୁଗୀୟ ଜଣେ ବହୁପ୍ରସୂ କବି । ସେ ନୀଳମଣି ବିଦ୍ୟାରତ୍ନଙ୍କ ଅନୁଜ । ହିତୈଷିଣୀ ମାଧ୍ୟମରେ ତାଙ୍କର କାବ୍ୟ ପ୍ରତିଭା ପ୍ରକାଶିତ ହୋଇଥିଲା । ବାମଣ୍ଡାରେ ଶିକ୍ଷକ ପଦରେ ସେ ନିଯୁକ୍ତ ଥିଲେ । ହିତୈଷିଣୀ ସଂପାଦନା କ୍ଷେତ୍ରରେ ସେ ବିଦ୍ୟାରତ୍ନଙ୍କୁ ସାହାଯ୍ୟ କରୁଥିଲେ । ଓଡ଼ିଆ କବିତା କ୍ଷେତ୍ରରେ ପଦ୍ମାବତୀ, ଦୁର୍ଗାବତୀ, କମଳ ସୁନ୍ଦରୀ, ଅଂଶୁପା, ସୁମିତ୍ରା, କମଳା ପ୍ରଭୃତି ଅଜସ୍ର କାବ୍ୟ କବିତାର ସେ ରଚକ । ହିତୈଷିଣୀ ବ୍ୟତିରେକେ ସେ ବିଜୁଳି (୧୮୯୩) ପତ୍ରିକାର ମେନେଜର ଥିଲେ ଏବଂ ଭଦ୍ରାପୁରରୁ ପ୍ରକାଶିତ ଉତ୍କଳବାସୀ ପତ୍ରିକାର ସଂପାଦନା ୧୯୦୫ ବେଳକୁ ଗ୍ରହଣ କରିଥିଲେ ।

ବ୍ରଜବଂଧୁ ମିଶ୍ର ୩୦.୩.୧୯୦୪ ରେ ହିତୈଷିଣୀର ସଂପାଦନା କାର୍ଯ୍ୟରୁ ବିଦାୟ ନେଲାବେଳେ ଘୋଷଣା କରନ୍ତି...''ଏଣିକି ହିତୈଷିଣୀ ଓ ପ୍ରେସ କାର୍ଯ୍ୟ ରାଜଭ୍ରାତା ବଳଭଦ୍ର ଦେବ ବଡ଼କୁଅଁର ଚଳାଇବେ । ଭରସା କରୁଁ ସେ ସାଧାରଣ ସହାନୁଭୂତି ଲାଭକରି ଉନ୍ନତି ଲାଭ କରିପାରିବେ ।'' *(୪୮)* କିନ୍ତୁ ହିତୈଷିଣୀ ୧.୬.୧୯୦୪ ସଂଖ୍ୟାରେ ଏକ ଭ୍ରମ ସଂଶୋଧନ ଦେଇ ବଳଭଦ୍ର ଦେବ ପ୍ରକାଶ କରନ୍ତି, ''ଆମ୍ଭେ ହିତୈଷିଣୀ ପତ୍ରର ସଂପାଦକତ୍ୱ ଓ ସ୍ୱତ୍ୱାଧିକାରୀତ୍ୱ ନେଇଥିବା ଭୂତପୂର୍ବ ସଂପାଦକ ବ୍ରଜବଂଧୁ ବାବୁ ପ୍ରକାଶ କରିଅଛନ୍ତି ମାତ୍ର ଏ କଥା ଠିକ୍ ନୁହେ । ଆମ୍ଭେ ଏଥିରେ କୌଣସି ଭାର ନେଇନାହୁଁ ତେବେ ବ୍ରଜବଂଧୁ ବାବୁ ପତ୍ରିକାର ପ୍ରତ୍ୟେକ ଭାର ପରିତ୍ୟାଗ କରିଅଛନ୍ତି ।''*(୪୯)* ହିତୈଷିଣୀ ୨୭.୪.୧୯୦୪ ସଂଖ୍ୟାରେ ବାମଣ୍ଡା ସଂବାଦ ଶୀର୍ଷକରେ ପ୍ରକାଶ ପାଇଥିଲା, ''ବଡ କୁମାର ବଳଭଦ୍ର ଦେବ

କାର୍ଯ୍ୟ ବଶତଃ ସ୍ଥାନାନ୍ତରକୁ ଯାଇ ଅଛନ୍ତି ସୁତରାଂ ହିତୈଷିଣୀର ଭାର ଶ୍ରୀ ଭାଗିରଥି ରଥଙ୍କ ହସ୍ତରେ ନ୍ୟସ୍ତ ହୋଇଅଛି ।'' ଭାଗିରଥି ରଥ ପୁରୀ ଜନ୍ମିତ ଜଣେ ସଂସ୍କୃତଜ୍ଞ ପଣ୍ଡିତ । ସେ ବାମଣ୍ଡାରେ ଶିକ୍ଷକତା କରୁଥିଲେ । ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ଇତଃସ୍ତତଃ ପ୍ରକାଶିତ କିଛି ଦୁଷ୍ପ୍ରାପ୍ୟ ରଚନା ବ୍ୟତିରେକେ ଯେଉଁ କେତୋଟି କୃତି ତାଙ୍କର ପ୍ରତିଭାକୁ ପରିପୁଷ୍ଟ କରେ ସେ ଗୁଡ଼ିକ ହେଲା ଶରତ ସୁନ୍ଦରୀ (କାବ୍ୟ-୧୮୯୪), ପଦ୍ମାବତୀ ପରିଣୟ (କାବ୍ୟ-୧୯୦୬), ଉତ୍କଳଚରିତ (କାବ୍ୟ-୧୯୧୧) । ଏଥି ସହିତ ମାନସ ପ୍ରସାଦିନୀ ଓ ଅଳଙ୍କାର ମୀମାଂସା ତାଙ୍କର ସଂସ୍କୃତ ଜ୍ଞାନର ପରିଚୟ ପ୍ରଦାନ କରେ ।

କିଛି ସମୟ ପାଇଁ ଦୀନବଂଧୁ ପ୍ରଧାନ ହିତୈଷିଣୀର ସଂପାଦନା କାର୍ଯ୍ୟ ଗ୍ରହଣ କରିଥିଲେ । ସେ କେଉଁ ସଂଖ୍ୟାଠାରୁ ସଂପାଦନା ଗ୍ରହଣ କଲେ ତାର ସଠିକ ବିବରଣୀ ନାହିଁ । ପରନ୍ତୁ ବଳଭଦ୍ର ଦେବଙ୍କ ଉପରୋକ୍ତ ଘୋଷଣା ସହିତ କୌଣସି ସଂପାଦକୀୟ ଟୀପ୍ପଣୀ ମଧ୍ୟ ପ୍ରକାଶ ପାଇନାହିଁ । ତଥାପି ଅନୁମାନ କରାଯାଇପାରେ ପ୍ରଚାର ବିମୁଖ ଦୀନବଂଧୁ ପ୍ରଧାନ ବ୍ରଜବଂଧୁ ମିଶ୍ରଙ୍କ ପରଠାରୁ ସଂପାଦନା କାର୍ଯ୍ୟ ସଂଭାଳନ୍ତି । ୧୯୦୫ ରେ କେତେକ ସଂଖ୍ୟାରେ ହିତୈଷିଣୀ ମେନେଜର ରୂପେ ଦୀନବନ୍ଧୁ ପ୍ରଧାନଙ୍କ ନାମୋଲ୍ଲେଖ ଦେଖାଯାଏ । ପୁନଶ୍ଚ ଦୀନବଂଧୁ ଗଡ଼ନାୟକ ଦୀନବଂଧୁ ପ୍ରଧାନଙ୍କ ଠାରୁ ସଂପାଦନା ଗ୍ରହଣ କରିଥିବାର ସ୍ୱୀକାର କରନ୍ତି । ଏଣୁ ବ୍ରଜବନ୍ଧୁଙ୍କ ପରବର୍ତ୍ତୀ ୬.୪.୧୯୦୪ ଠାରୁ ଦୀନବଂଧୁ ଗଡ଼ନାୟକଙ୍କ ପୂର୍ବବର୍ତ୍ତୀ (୨୧/୪୦) ତା ୨୧.୮.୧୯୦୯ ସଂଖ୍ୟା ପର୍ଯ୍ୟନ୍ତ ସଂପାଦନା ଦୀନବଂଧୁ ପ୍ରଧାନ ଗ୍ରହଣ କରିଥିବାର ଅନୁମାନ ହୁଏ ।

ଦୀନବଂଧୁ ପ୍ରଧାନ ବୈଷୟିକ ଜ୍ଞାନରେ ପ୍ରବୀଣ ଥିଲେ । ସେ ବାମଣ୍ଡା ରାଜ୍ୟର କେନାଲ ସୁପରିଟେଣ୍ଡେଣ୍ଟ ଥାଇ D.P.Canal କାର୍ଯ୍ୟ ସଂପନ୍ନ କରିଥିଲେ । ଦେବଗଡ଼ ସହରର ମାଷ୍ଟର ପ୍ଲାନ ତାଙ୍କର ମସ୍ତିଷ୍କ ପ୍ରସୂତ । ଅନ୍ୟାନ୍ୟ ସ୍ଥପତି ବିଦ୍ୟାରେ ସେ ପରାକାଷ୍ଠା ଦେଖାଇଥିଲେ । ରାଜାଙ୍କ ସ୍ଲିପର ବ୍ୟବସାୟରେ ମଧ୍ୟ ସେ ସହାୟତା କରିଥିଲେ । ଦେବଗଡ଼ର ନୂଆପଡା ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ ।

ହିତୈଷିଣୀ ପୃଷ୍ଠାରେ ତାଙ୍କର ଅନେକ ପ୍ରକୃତି ଚିତ୍ରଣମୂଳକ କବିତା ପ୍ରକାଶ ଲଭିଥିଲା । ଜନୈକ ଦୁର୍ଭିକ୍ଷ ପୀଡ଼ିତା ବିଧବା ପ୍ରତି (୨୧.୧୦.୧୯୦୦), ନବବର୍ଷ (୮.୧.୧୯୦୨), ମନପ୍ରତି (୧୯.୦୨.୧୯୦୨) ଆଦର୍ଶକୀର୍ତ୍ତି (୧୯.୦୩.୧୯୦୨), ଜଳକଷ୍ଟ (୧୮.୫.୧୯୦୪) ଜନୈକ ଦରିଦ୍ର ରମଣୀ (୩.୯.୧୯୦୪), ପର୍ବତ ପ୍ରତି (୨୩.୧୦.୧୯୦୬),ବ୍ରାହ୍ମନଦୀ ପ୍ରତି(୫.୨.୧୯୧୦) ଶୋକୋଚ୍ଛ୍ୱାସ (୨୬.୧୧.୧୯୧୦) ଆବାହନ ସଙ୍ଗୀତ (୧.୧୧.୧୯୧୯) ପ୍ରଭୃତି ରଚନା ତାଙ୍କର ପ୍ରତିଭାର ସ୍ୱାକ୍ଷର ବହନ କରେ । ବ୍ରତୋତ୍ସବ (୧୯୦୯) ତାଙ୍କର ଏକମାତ୍ର ପ୍ରକାଶିତ ପୁସ୍ତକ । ବାମଣ୍ଡାରେ ଦିବ୍ୟାଶଙ୍କରଙ୍କ

ବୃତୋତ୍ସବର ସବିଶେଷ ବିବରଣୀ ଏଥିରେ ପ୍ରଦତ୍ତ । ୧୯୦୪ରେ ସେ ଦେବଗଡ଼ ଛାପାଖାନାର ସେକ୍ରେଟାରୀ ଥାଇ ହିତୈଷିଣୀର ସଂପାଦନା ଗ୍ରହଣ କରିଥିଲେ ।

ଦୀନବଂଧୁ ଗଡ଼ନାୟକଙ୍କ ଅନୁପସ୍ଥିତିରେ କିଛି ସଂଖ୍ୟା ରତ୍ନାକର ଶର୍ମା କବିଭୂଷଣ ସଂପାଦନା କରିଥିଲେ । ରତ୍ନାକର ଶର୍ମାଙ୍କ ସାହିତ୍ୟ ପ୍ରୀତି ଓ ମହନୀୟତା ହିତୈଷିଣୀରେ ପ୍ରକାଶିତ "ଆତ୍ମ ନିବେଦନ"ରୁ ଜଣାପଡେ ।-"ସଂବାଦ ପତ୍ର ପରିଚାଳନା କାର୍ଯ୍ୟ ଅତି କଠିନ ଏବଂ ଦାୟିତ୍ୱ ପୂର୍ଣ୍ଣ । ତାହା ଚଳାଇବା ଭଳି ଯୋଗ୍ୟତା ଓ ପ୍ରତିଭା ମୋହର ନାହିଁ । ଏହା ମୁଁ ସ୍ୱୟଂ ବୁଝି ପାରୁଅଛି । ତେବେ ହିତୈଷିଣୀର ଅନେକ ସୁଲେଖକ ଅଛନ୍ତି ସେମାନଙ୍କ ସାହାଯ୍ୟରେ ମୁଁ ପତ୍ରିକା ଚଳାଇ ଶିକ୍ଷା ଲାଭ କରିବି । ଏହି ଆଶା ହୃଦୟରେ ପୋଷଣ କରି ଏହି ଗୁରୁଭାର ବହନ କରିବାକୁ ସାହସୀ ହୋଇ ଅଛି ।" *(୫୦)* ୯.୪.୧୯୧୦ରୁ କିଛି ସଂଖ୍ୟା ରତ୍ନାକର ଶର୍ମା ସଂପାଦନା କରନ୍ତି ।

ରତ୍ନାକର ଶର୍ମା କୋଚିଣ୍ଡା (ବର୍ତ୍ତମାନ ସଂବଲପୁର ଜିଲ୍ଲା ଅନ୍ତର୍ଗତ) ଠାରେ ୧୮୭୯ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ଦେବଗଡ଼ଠାରେ ମିଡ଼ିଲ ଭର୍ଣ୍ଣାକ୍ୟୁଲାର ଶିକ୍ଷା ସମାପ୍ତ ପରେ କିଛି ସମୟ ଶିକ୍ଷକତା କରିଥିଲେ । ହିତୈଷିଣୀ ପୃଷ୍ଠାରେ ତାଙ୍କର ପ୍ରାରମ୍ଭିକ ଜୀବନର କାବ୍ୟ କବିତା ପ୍ରକାଶ ପାଏ । ହେମଲତା(୧୮୯୨) ଅଜବିଳାପ (୧୯୦୦) ନୀତି ଦର୍ପଣ, ନୀତିକୁସୁମ (୧୯୦୦) ସଂଯୁକ୍ତା, (୧୯୦୭) ଚଂପାବତୀ (୧୯୧୦), ବପାଳିମାଳୀ (୧୯୧୨) ଦୁଇସଂଗାତ (୧୯୧୦) ପ୍ରଭୃତି ସଂକଳନ ତାଙ୍କୁ କବି ପ୍ରସିଦ୍ଧି ଆଣିଦିଏ । ପାର୍ବତୀ କାବ୍ୟ ଉପସଂହାର ଅବଲମ୍ବନରେ ସେ ପାର୍ବତୀ କାବ୍ୟ ରଚନା କରିଥିଲେ । ଏତଦ୍ ବ୍ୟତୀତ ଅନେକ ଭ୍ରମଣକାହାଣୀ ଓ କବିତା ହିତୈଷିଣୀରେ ପ୍ରକାଶ ପାଇଥିଲା । ତାଙ୍କର କାବ୍ୟକୃତିରେ ମୁଗ୍ଧ ହୋଇ ବଡଖେମୁଣ୍ଡିଦରବାର ତାଙ୍କୁ "କବିଭୂଷଣ" ଉପାଧି ପ୍ରଦାନ କରିଥିଲେ ଏବଂ କାଶୀପୁର ଅଧିଶ୍ବର ସ୍ୱର୍ଣ୍ଣକୁଣ୍ଡଳ ସହ "ସାହିତ୍ୟାଳଙ୍କାର" ଉପାଧିରେ ଭୂଷିତ କରିଥିଲେ *(୫୧)* ରତ୍ନାକର ଶର୍ମା ଆଜୀବନ ହିତୈଷିଣୀ ପ୍ରକାଶନ ସହିତ ଜଡିତ ଥିଲେ । "ସମାଜର କୁ-ସଂସ୍କାର ଓ ଅଶିକ୍ଷାର କବର ଉପରେ ଆଦର୍ଶ ଶିକ୍ଷା ଆଦର୍ଶ ଜୀବନ ପ୍ରତିଷ୍ଠା ତାଙ୍କର ଧେୟଥିଲା ।" *(୫୨)*

ପ୍ରାଜ୍ଞ ବୈରାଗୀ ପଣ୍ଡା, ନବଘନ ନାୟକ, କରୁଣାକର ସାହୁ ପ୍ରମୁଖ ଗୋଟିଏ ଗୋଟିଏ ସଂଖ୍ୟା ସଂପାଦନା କରିଛନ୍ତି । କିନ୍ତୁ ସୁସାହିତ୍ୟିକ ବୃନ୍ଦାବନ ନାଥଶର୍ମା ଓ କବି ଲିଙ୍ଗରାଜ ପାଣିଗ୍ରାହୀ, ସଂପାଦକ ଦୀନବଂଧୁ ଗଡ଼ନାୟକଙ୍କୁ ପତ୍ରିକାଟିକୁ ରୁଚିସଂପନ୍ନ କରି ଗଢ଼ିତୋଳିବାରେ ସାହାଯ୍ୟ କରିଥିଲେ । ହିତୈଷିଣୀ ଅନ୍ତରାଳରେ ଯେଉଁ ଲେଖକ ମାନଙ୍କୁ ସାରସ୍ୱତ ପ୍ରତିଷ୍ଠା ମିଳିଥିଲା ସେଇମାନେ ହିଁ ହିତୈଷିଣୀ ସଂପାଦନାରେ ଆଗ୍ରହ ପ୍ରଦର୍ଶନ କରିଥିଲେ । ବୈରାଗୀ ପଣ୍ଡା, ନବଘନ ନାୟକ, କରୁଣା କର ସାହୁ ପ୍ରମୁଖ ବାମଣ୍ଡା ଜନ୍ମିତ ସାହିତ୍ୟିକ । ସେମାନେ ବାମଣ୍ଡା ରାଜ୍ୟରେ ଶିକ୍ଷକତା ତଥା ଅନ୍ୟାନ୍ୟ କାର୍ଯ୍ୟରେ ନିଯୁକ୍ତ ଥିଲେ । ସେମାନଙ୍କର ରଚନା

ହିତୈଷିଣୀ ପୃଷ୍ଠାରେ ପ୍ରକାଶିତ । ବୈରାଗୀ ପଣ୍ଡା ଓ କରୁଣାକର ସାହୁ ପ୍ରାଜ୍ଞଥିଲେ । କରୁଣାକର ବିଦ୍ୟାଚକୋର ଉପାଧି ପାଇଥିଲେ । ସେ ବାମଣ୍ଡା ରାଜାଙ୍କ ଭଣ୍ଡାର ରକ୍ଷକ ମଧ୍ୟଥିଲେ । ତାଙ୍କର 'ଶିଶୁ ଶିକ୍ଷା ବିଧାନ' (୧୯୧୪) ପୁସ୍ତକ ଛାତ୍ରମାନଙ୍କ ପାଇଁ ଶିକ୍ଷଣୀୟ ଅଟେ । ତାଙ୍କର ନୂତନ ବର୍ଷ ଆଗମନ (୩.୧.୧୯୧୪) ଈଶ୍ୱର ପ୍ରାର୍ଥନା (୪.୯.୧୯୧୫) ଉତ୍କଳ ପ୍ରକୃତି (୪.୯.୧୯୧୫) ପ୍ରଭୃତି କବିତା ହିତୈଷିଣୀରେ ପ୍ରକାଶ ପାଇଥିଲା ।

ଅନେକ ପ୍ରବୀଣ ଆସିଛନ୍ତି, ଅନେକ ନବୀନ ଆସିଛନ୍ତି । ହିତୈଷିଣୀ ସଂସର୍ଶରେ ସମସ୍ତେ ଧନ୍ୟ ହୋଇଛନ୍ତି । ଅନେକ ଅନାମଧେୟ ସାଧକ ହିତୈଷିଣୀର ପ୍ରାଚୁର୍ଯ୍ୟରେ ମହିମା ମଣ୍ଡିତ ହୋଇଛନ୍ତି । ହିତୈଷିଣୀର ଆଭିମୁଖ୍ୟ ଶେଷ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଛି ।



## ପ୍ରଥମ ଅଧ୍ୟାୟର ପାଦସୂଚୀ


*୧. ସାମନ୍ତ ରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ (୨ୟ ସଂ-୧୯୮୧) ପୃ-୧୭୪ ।*

*୨. ତତ୍ରୈବ ପୃ-୧୭୫ ।*

*୩. ମିଶ୍ର, ଗୋପାଳଚନ୍ଦ୍ର : ଓଡ଼ିଶାର ବିକାଶରେ ପତ୍ର-ପତ୍ରିକାର ପ୍ରଭାବ (୧୯୭୯)ପୃ-୬ ।*

*୪. ଚାଟାର୍ଜୀ, ସୁବୋଧ କୁମାର : ଊନବିଂଶ ଶତକର ଓଡ଼ିଆ ସଂବାଦପତ୍ର ଓ ଉତ୍କଳ ଦୀପିକା=ଗୌରଶଙ୍କର ପରିକ୍ରମା (ଗୌରୀ ଶଙ୍କର ସ୍ମୃତି ସଂସଦ, କଟକ-୧୯୮୯) ପୃ-୧୨୩ ।*

*୫. ପ୍ରବୋଧ ଚନ୍ଦ୍ରିକା-୧/୧-୧୮୫୬ ପୃ ୨-୩ । ଉଦ୍ଧୃତ କର, ଡ: ବାଙ୍କରୀବନ୍ଧୁ : ଓଡ଼ିଆ ପ୍ରବନ୍ଧ ସାହିତ୍ୟ (୧୯୯୩) ପୃ-୧୨ ।*

*୬. ମିଶ୍ର, ଶ୍ରୀନିବାସ : ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ, ବିଦ୍ୟାପୁରୀ-୨ୟ ମୁଦ୍ରଣ-୧୯୯୫ : ପୃ-୯୨ ।*

*୭. ସାମନ୍ତରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ-ପୃ-୧୭୪ ।*

*୮. ମିଶ୍ର, ଗୋପାଳଚନ୍ଦ୍ର : ଓଡ଼ିଶାର ବିକାଶରେ ପତ୍ର- ପତ୍ରିକାର ପ୍ରଭାବ-ପୃ-୨୦ ।*

*୯. ଉଦୀ-୨୪/୨୬ ତା ୧୯.୬.୧୮୮୯ ।*

*୧୦. ଆଧୁନିକ ଓଡିଆ ଗଦ୍ୟ ସାହିତ୍ୟ-ପୃ-୯୯ ।*

*୧୧. ଉଦୀ-୨୨/୨୫ ତା ୧୮-୬-୧୮୮୭ ।*

*୧୨. ସାମନ୍ତ ରାୟ, ନଟବର : ଓଡିଆ ସାହିତ୍ୟର ଇତିହାସ ପୃ-୧୭୫ ।*

୧୩. ବ୍ରହ୍ମା, ରାମଚନ୍ଦ୍ର : ଆଧୁନିକ ଓଡିଆ ସାହିତ୍ୟକୁ ବାମଣ୍ଡାର ଦାନ : (୧୯୭୭) ପୃ-୫ ।
୧୪. ତତ୍ରୈବ ।
୧୫. ସହି : ୨୨/୧୭ ତା ୧୧.୨.୧୯୧୧ ।
୧୬. ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ-ପୃ-୯୧ ।
୧୭. ବନ୍ଦୋପାଧ୍ୟାୟ, ଚଣ୍ଡୀଚରଣ : ସାର୍ ବାସୁଦେବ ଜୀବନୀ (ବଙ୍ଗଳା) ଇଣ୍ଡିଯାନ ପବ୍ଲିଶିଂ ହାଉସ, କଲିକତା-୧୯୦୬-ପୃ-୫୪ ।
୧୮. ଉଦୀ-୨୧/୨୯, ୨୧/୩୦, ୨୧/୩୨...ଇତ୍ୟାଦି (୧୮୮୬) ।
୧୯. ଉଦୀ-୨୨/୧୪ ତା ୨.୪.୧୮୮୭ ।
୨୦. ତତ୍ରୈବ ।
୨୧. ବନ୍ଦୋପାଧ୍ୟାୟ, ଚଣ୍ଡୀଚରଣ : ସାର୍ ବାସୁଦେବ ଜୀବନ-ପୃ-୧୧୪ ।
୨୨. ମହାନ୍ତି, ଚିନ୍ତାମଣି : ଚିନ୍ତାମଣି ଗ୍ରନ୍ଥାବଳୀ (୧୯୪୨) ୪ର୍ଥ ଖଣ୍ଡ-ପୃ-୪୯୫ ।
୨୩. କର, କୃଷ୍ଣଚନ୍ଦ୍ର : ସୁଜଳ ଦେବ : ସାରସ୍ୱତ ଭଣ୍ଡାର-କଟକ ୧୯୩୧-ପୃ-୨୦ ।
୨୪. ରାୟ, ଦୁର୍ଗାଚରଣ : ରାଧାନାଥ ଜୀବନୀ : ଫ୍ରେଣ୍ଡସ୍ ପବ୍ଲିଶର୍ସ ୨ୟ ସଂସ୍କରଣ-୧୯୯୮: ପୃ-୧୭୮ ।
୨୫. ସହି-୭/୧୨. ତା ୨୮.୮.୧୮୯୫ ।
୨୬. ସହି-୧/୬-ତା ୨୪.୭.୧୮୮୯ ।
୨୭. ସହି-୧୩/୩୪ ତା ୧.୧.୧୯୦୨ ।
୨୮. ଶଂଖ ୩/୮, ଫାଲଗୁନ-୧୯୪୮ ପୃ-୪୫୯ ।
୨୯. Ram say, L.E.B. Cobden : Feudatory states of Orissa. Firma KLM (P) LTD, Calcutta-1982, P-29.
୩୦. ସହି-୩୩/୧ ତା- ୮.୪.୧୯୨୨ ।
୩୧. ଚିନ୍ତାମଣି ଗ୍ରନ୍ଥାବଳୀ (୧୯୪୨) ୪ର୍ଥଖଣ୍ଡ -ପୃ-୪୯୩ ।
୩୨. ମାନସିଂହ, ମାୟାଧର : ଓଡ଼ିଆ ସାହିତ୍ୟର ଇତିହାସ :
୩୩. ଶର୍ମା, ବୃନ୍ଦାବନ ନାଥ : ମୋର ଜଣାଲୋକ : (ବିଦ୍ୟାରତ୍ନ) ଉତ୍କଳ ସାହିତ୍ୟ-୪୦/୩ ଆଷାଢ଼-୧୩୪୩-ପୃ-୧୩୪ ।
୩୪. ବିଦ୍ୟାରତ୍ନ, ନୀଳମଣି : ଗଙ୍ଗାଧର ପ୍ରସଙ୍ଗ : ଉତ୍କଳ ସାହିତ୍ୟ-୨୮/୧.-ପୃ-୧୫ ।
୩୫. Mansingh, M.History of Oriya Literature : Sahitya Akademi, New Delhi-1962, P-213.
୩୬. ଉଦୀ-୫୮/୪୨ ତା- ୩-୧୧-୧୯୨୩ ।

୩୭. ସହି-୧୩/୩୪ ତା ୧.୧.୧୯୦୨ ।
୩୮. ସ୍ମାରକୀ-୧୯୭୧, ଓଡ଼ିଶା ସାହିତ୍ୟ ଏକାଡେମୀ ସଙ୍ଗୀତ ସାହିତ୍ୟ ସମାରୋହ, କୁଚିଣ୍ଡା
୩୯. ସହି-ତା-୧୫.୧୨.୧୮୯୭ ।
୪୦. ସହି -ତା-୨୦.୯.୧୮୯୯ ।
୪୧. ସହି ୧୩/୩୫ ତା-୮.୧-୧୯୦୨ ।
୪୨. ସମ୍ପାଦକ ପରିବର୍ତ୍ତନ, ସହି-ତା-୬.୪.୧୯୦୪ ।
୪୩. ସହି- ତା-୩.୮.୧୮୯୨ ।
୪୪. ଗୋଟିଏ ପ୍ରଶ୍ନ-ସହି-୪/୧୫ ତା ୧୪.୯.୧୮୯୨ ।
୪୫. ଉଦୀ-୫୮/୧୧-ତା ୧୬.୩.୧୯୨୨ ।
୪୬. ସହି-୨୦/୪୧ ତା ୨୮.୮.୧୯୦୯ ।
୪୭. ସହି ୨୦/୪୮ ତା ୧୬.୧୦.୧୯୦୯
୪୮. ସହି-ତା-୩୦.୩.୧୯୦୪ ।
୪୯. ସହି-୧-୬.୧୯୦୪ ।
୫୦. ସହି-୨୧/୨୫ ତା ୯.୪.୧୯୧୦ ।
୫୧. ସହି-୨୧/୮ ତା ୧୧.୧୨.୧୯୦୯ ।
୫୨. ନନ୍ଦ, ପଣାନ୍ଦ୍ର ଭୂଷଣ : ଅନାଲୋଚିତ ପ୍ରତିଭା କବିଭୂଷଣ ରତ୍ନାକର ଶର୍ମା ସାହିତ୍ୟାଳଙ୍କାର : କୋଣାର୍କ-୧୧୬, ଫେବୃୟାରୀ-ଅପ୍ରେଲ-୨୦୦୦ ।



# ଦ୍ୱିତୀୟ ଅଧ୍ୟାୟ

## ହିତୈଷିଣୀରେ ସମକାଳୀନ ସମାଜ-ଚିତ୍ର :

ତତ୍‌କାଳୀନ ସମାଜର ଏକ ସ୍ପଷ୍ଟଚିତ୍ର ହିତୈଷିଣୀରୁ ମିଳିଥାଏ । ଧର୍ମ, ସଂସ୍କୃତି, ଓ ସଭ୍ୟତା ମଣିଷର ଜୀବନ ସ୍ତରକୁ ନେଇ ଗଢ଼ି ଉଠେ । ମଣିଷକୁ ଛାଡି ଏମାନଙ୍କର କିଛି ମୂଲ୍ୟ ନାହିଁ । ସମାଜର ବୃହତ୍ତର ଭାବ ଭୂମିରେ ସମଗ୍ର ଜୀବ ଜଗତକୁ ଅନ୍ତର୍ଭୁକ୍ତ କଲେ ମଧ୍ୟ ଆମେ ସମାଜ କହିଲେ ମଣିଷ ସମାଜକୁ ହିଁ ବୁଝିଥାଉ । ସମାଜର କେନ୍ଦ୍ର ବିନ୍ଦୁ ମଣିଷ । ସମାଜର ଇତିବୃତ୍ତକୁ ନେଇ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି ହୁଏ । ସମାଜର ବିଭିନ୍ନ ଅବସ୍ଥା, ସମସ୍ୟା ସବୁର ଯଥାଯଥ ଚିତ୍ରଣ ସହିତ ଏକ ଉତ୍କର୍ଷ ସମାଜ ଗଠନ ହିଁ ପ୍ରତ୍ୟେକ ସଂବାଦପତ୍ରର ଲକ୍ଷ୍ୟ । ସମାଜର ବିକାଶ ସାଧନ ସହିତ ମଣିଷର ସାମଗ୍ରିକ ଉନ୍ନତି ହିଁ ଲକ୍ଷ୍ୟବସ୍ତୁ । ଏ ଲକ୍ଷ୍ୟ ସାଧନ ପାଇଁ ସଂବାଦପତ୍ର ଗୁଡିକ ସମାଜର ଅବହେଳିତ ଦିଗ ସହିତ ଉନ୍ନତ ସମାଜ ଚିତ୍ର ପ୍ରଦାନ କରନ୍ତି । ଦେଶ କାଳ ପାତ୍ରର ପରିବର୍ତ୍ତନ ସହିତ ସମାଜର ସ୍ଥିତି ସ୍ଥାପକତା ତଥା ସମୟକ୍ରମେ ପରିବର୍ତ୍ତନର ମନ୍ଥର ଗତିକୁ ସଂବାଦପତ୍ର ଚିତ୍ରଣ କରିଥାଏ । ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ସୁସ୍ପଷ୍ଟ ଚିତ୍ର ଦୃଶ୍ୟମାନ । ସମାଜ ଚିତ୍ରକୁ ଆମେ ବିଭିନ୍ନ ସ୍ତର ଦେଇ ଅଧ୍ୟୟନ କରି ପାରିବା ।

ସଂବାଦପତ୍ର ଏକ ନିର୍ଜୀବ ବସ୍ତୁ, ଏକ କଳାଗତ ମାଧ୍ୟମ ହେଲେ ମଧ୍ୟ ସାମ୍ବାଦିକ, ସଂପାଦକ ତଥା ଏକ ରୁଚିଶୀଳ ପାଠକର ମାନସଭୂମିରେ ଏହା ସ୍ପନ୍ଦିତ ହୋଇଥାଏ । ଫଳରେ କୃଷି, ଶିଳ୍ପ, ବାଣିଜ୍ୟ, ବ୍ୟବସାୟ, ପ୍ରଶାସନ, ସାମାଜିକ ରୀତିନୀତି, ରାଜା--ଜମିଦାର, ଶାସନ, ମେଳି, ପ୍ରଜାପୀଡନ, ବିଦ୍ରୋହ, ଗ୍ରାମପଞ୍ଚାୟତର ସୁଫଳ ଠାରୁ ଆରମ୍ଭ କରି ବିଭିନ୍ନ ସାମାଜିକ କୁସଂସ୍କାର, ନିଶା ସେବନ ବିରୁଦ୍ଧରେ ହିତୈଷିଣୀ ସ୍ୱର ଉତ୍ତୋଳନ କରିଛି । ହିତୈଷିଣୀର ପ୍ରତି ପୃଷ୍ଠାକୁ ବିଶ୍ଳେଷଣ କଲେ ଏହା ସମାଜକୁ ପରିଚ୍ଛନ୍ନ ସରସ ସୁନ୍ଦର କରି ଗଢ଼ିତୋଳି ଗତିଶୀଳ କରିଥିବାର ସୁସ୍ପଷ୍ଟ ହୁଏ । ହିତୈଷିଣୀ ମଣିଷ ଜୀବନ ବଞ୍ଚିବାର ମୌଳିକ ସତ୍ୟକୁ ଖୋଜିଛି । ମଣିଷ ଗଢ଼ା ବିଷୟ ସବୁକୁ ଜୀବନଭ ସ୍ୱତଃସ୍ଫୁର୍ତ୍ତ ଅଗ୍ରଗମନ ପାଇଁ ଉତ୍ସର୍ଗୀ

ଦେଇଛି । ଏ ଭିତରେ ବି ନିଜର ଆଦର୍ଶବୋଧକୁ ଜଳାଞ୍ଜଳି ଦେଇନି । ସତ୍ୟର ଲକ୍ଷ୍ମଣରେଖାକୁ ଅତିକ୍ରମ ନ କରି ଶୁଭ୍ର ଦିଗନ୍ତ ଆଡେ ଅଙ୍ଗୁଳି ନିର୍ଦ୍ଦେଶ କରିଛି ।

ହିତୈଷିଣୀର ଆବିର୍ଭାବ ପରାଧୀନ ଭାରତର, ବିଚ୍ଛିନ୍ନ ଓଡ଼ିଶାର ଏକ ଗଡଜାତ ରାଜ୍ୟ ବାମଣ୍ଡାରେ ହୋଇଥିଲା । ବାମଣ୍ଡା ସେତେବେଳକୁ ମଧ ପ୍ରଦେଶ ଅନ୍ତର୍ଗତ ଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପୂର୍ବରୁ ହିତୈଷିଣୀର ବିଲୟ ଘଟେ । ଫଳତଃ ଗଡଜାତର ଚିତ୍ର, ପରାଧୀନ ଭାରତର ଦୁର୍ଦ୍ଦଶା, ପରାଧୀନ ରାଷ୍ଟ୍ରରେ ଏକ ସୁସ୍ଥ ସମାଜ ଜୀବନ ଗଠନର ଆଭିମୁଖ୍ୟ ଦେଇ ହିତୈଷିଣୀ ଗତିଶୀଳ । ଏ ପର୍ଯ୍ୟାୟରେ ହିତୈଷିଣୀରେ ପ୍ରକାଶିତ ବିବିଧ ବିଷୟକ ସଂବାଦ ଓ ତାର ଚାରିତ୍ରିକ ବିଶ୍ଳେଷଣ ମାଧ୍ୟମରେ ହିଁ ହିତୈଷିଣୀର ଅବଦାନକୁ ମୂଲ୍ୟାୟନ କରାଯାଇପାରେ ।

## (କ) ବ୍ରିଟିଶ ଅପଶାସନର ସମାଲୋଚନା :

ବ୍ରିଟିଶ ଶାସନରେ ଓଡ଼ିଶାର ଦୁର୍ଗତିକୁ ହିତୈଷିଣୀ ନିର୍ଭୀକ ଭାବେ ସମାଲୋଚନା କରିଛି । ବ୍ରିଟିଶ ଶାସନର ଛତ୍ରଛାୟା ତଳେ ଦେଶୀୟ ରାଜା ଜମିଦାରମାନେ ମଧ ଜନ ସାଧାରଣଙ୍କ ଉପରେ ଅତ୍ୟାଚାର କରୁଥିଲେ । ଇଂରେଜ ଅଧୀନସ୍ଥ ଏକ ଦେଶୀୟ ରାଜାଙ୍କ ପୃଷ୍ଠ ପୋଷକତାରେ ପ୍ରକାଶ ପାଇ ମଧ ହିତୈଷିଣୀ ନିଜର ସ୍ୱାଧୀନମତ ବ୍ୟକ୍ତ କରିବାରେ ପରାଙ୍ମୁଖ ହୋଇନାହିଁ ।

ଊନବିଂଶ ଶତାବ୍ଦୀର କଳାପାହାଡ଼ ଶୀର୍ଷକରେ ସଂବଲପୁର ସୋମନାଥ ମନ୍ଦିରର ଏକ ଯୁଗଳ ମୂର୍ତ୍ତିକୁ ଏକଷ୍ଟ୍ରା ଆସିଷ୍ଟାଣ୍ଟ କମିଶନର ଦେବୀପ୍ରସାଦ ଭାଙ୍ଗି ଥିବାରୁ ଆକ୍ଷେପ କରାଯାଇଛି । (୧) ଦେବୀ ପ୍ରସାଦ ସଂବାଦଦାତାର ନାମ ଜଣାଇବାକୁ ହିତୈଷିଣୀକୁ ଓ ସୁଢ଼ଳଦେବଙ୍କୁ ଅନୁରୋଧ କରନ୍ତି । ହିତୈଷିଣୀ ସଂପାଦକ ଦେବୀ ପ୍ରସାଦଙ୍କ କାର୍ଯ୍ୟକୁ ସମାଲୋଚନା କରି ସଂବାଦ ସତ୍ୟ ଅଟେ ଏବଂ ଦେବୀ ପ୍ରସାଦ ଚାହିଁଲେ ତାଙ୍କ ନାମରେ ନାଲିଶ କରି ପାରନ୍ତି ବୋଲି ସଂବାଦ ପ୍ରକାଶ ସହିତ ଏକ ଚିଠି ସୁଢ଼ଳଦେବଙ୍କୁ ପ୍ରଦାନ କରନ୍ତି । (୨) ଏଥିରୁ ସଂପାଦକଙ୍କ ନିର୍ଭୀକତା ପ୍ରକାଶ ପାଏ ।

ବରିଶାଳର ପୋଲିସ ସାହେବଙ୍କ ବାଡିରୁ ଜଣେ ମାଝି ଶିମ୍ବଚୋରି କରିଥିବାରୁ ତାକୁ ବେତ୍ରାଘାତ, କଠିନ ପରିଶ୍ରମ ସହ ଚଉଦ ଦିନ କାରାଦଣ୍ଡ ପ୍ରଦାନ କରାଯାଇଥିଲା (୩) ପୋଲିସ ମାନଙ୍କ ଅନ୍ୟାୟ ଅତ୍ୟାଚାରକୁ ହିତୈଷିଣୀ କଠୋର ଭାବେ ସମାଲୋଚନା କରିଛି ।

ପୋଲିସ ଅତ୍ୟାଚାରରେ ଲୋକେ ଅତିଷ୍ଠ ହେଉଥିଲେ । ଜଣେ ସଂଜ୍ଞାହୀନ ବାଳକକୁ ମୃତ ଭାବି ପୋଲିସ ତଦନ୍ତ କରି ଏକ ଭଦ୍ର ମହିଳାଙ୍କୁ ମୃତ୍ୟୁ ଲାଗି ଦାୟୀ କରି ବିଚାରାଳୟକୁ ପଠାଇଥିଲେ । ବିଚାରାଳୟରେ ବାଳକଟି ସାକ୍ଷ୍ୟ ଦେଲା ପରେ ମହିଳା ଛାଡ ପାଇଲେ । (୪)

ଇଂରେଜମାନଙ୍କ ଦ୍ୱାରା ହିନ୍ଦୁ ଦେବା ଦେବୀ ବିଗ୍ରହକୁ ତାଙ୍କ ଦେଶକୁ ଚାଲାନ ଓ ବିଗ୍ରହ ଗୁଡ଼ିକୁ ନଷ୍ଟ କରିବାର ଚକ୍ରାନ୍ତ ବିରୁଦ୍ଧରେ ଜନମତ ଜାଗ୍ରତ କରିବାକୁ ହିତୈଷିଣୀ ଦୃଢ଼ ପ୍ରତିଜ୍ଞ ଥିଲା ।"ଉତ୍କଳ କି ଜାଗ୍ରତ ହେବ ନାହିଁ "? ଶୀର୍ଷକ ସଂବାଦରେ କୋଣାର୍କ ନବଗ୍ରହ ମୂର୍ତ୍ତିକୁ ଖଣ୍ଡ ଖଣ୍ଡ କରି କାଟି ନିଜ ଦେଶକୁ ନେବାକୁ ଉଦ୍ୟମ କରୁଥିବାରୁ ହିନ୍ଦୁ ମାନେ ବାଧା ଦେବାକୁ ହିତୈଷିଣୀ ଆହ୍ୱାନ ଦେଇଥିଲା । *(୫)*

ବନ୍ଦୋବସ୍ତ କର୍ମଚାରୀଙ୍କ ଅତ୍ୟାଚାର ଓ ପ୍ରଜା ପୀଡନକୁ ହିତୈଷିଣୀ ନିନ୍ଦା କରିଥିଲା *(୬)* କର୍ମଚାରୀ ମାନଙ୍କ ଉପରେ ମଧ୍ୟ ଅଫିସର ମାନେ ଜୁଲୁମ କରୁଥିଲେ । ସମ୍ବଲପୁର କଚେରୀରେ ଅମଲାମାନେ ରବିବାର ଏବଂ ଛୁଟି ମାନଙ୍କରେ ଖଟୁଥିଲେ । ହିତୈଷିଣୀ ଏକାର୍ଯ୍ୟ ପ୍ରତି କ୍ଷୋଭର ସହିତ ନିର୍ଦ୍ଦେଶ କରିଛି । "ମଧ୍ୟ ପ୍ରଦେଶରେ କମିଶନର ଛୁଟିଦିନ ମାନଙ୍କରେ କଚେରୀରେ ନ ଖଟିବା ପାଇଁ ଚିଠି ଦେଇଥିବା ସତ୍ତ୍ୱେ ଚିଠି ପ୍ରାପ୍ତ ହୋଇନାହିଁ କହି କଚେରୀ ବନ୍ଦ କରୁ ନ ଥିଲେ ।" *(୭)*

ଦେଶୀୟ ରାଜାମାନେ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ । ତେଣୁ ପ୍ରଜାମାନଙ୍କ ଅସନ୍ତୋଷ ପ୍ରଜା ଆନ୍ଦୋଳନ ରୂପେ ଦେଖାଯାଉଥିଲା । ଏପରି ବିଦ୍ରୋହ ଚିତ୍ର ହିତୈଷିଣୀରେ ସୁଲଭ ଅଟେ । କେନ୍ଦୁଝରର ବିଦ୍ରୋହ ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଏ ବିଦ୍ରୋହର ଟିକିନିଖି ବିବରଣୀ ହିତୈଷିଣୀରେ ପ୍ରଦତ୍ତ । ୧୮୯୧ ମସିହା ମେ ମାସରେ ପ୍ରଥମେ କେନ୍ଦୁଝରର ବିଦ୍ରୋହର ସୂତ୍ରପାତ ହୁଏ । ପ୍ରଜାମାନେ ରାଜାଜ୍ଞା ପାଳନ ନକରି ଖମାର ପ୍ରଭୃତି ଲୁଟିନେଲେ । ଗ୍ରାମେ ଗ୍ରାମେ ବୁଲି ରସଦ ସଂଗ୍ରହ କଲେ । ପୂର୍ବରୁ କେନ୍ଦୁଝରର ରାଜପଦର ପୋଷ୍ୟପୁତ୍ର ବଦଳରେ ରକ୍ଷିତାପୁତ୍ର ବସିଥିବାରୁ ଭୂୟାଁମାନେ ବିଦ୍ରୋହ କରିଥିଲେ । ଏମାନଙ୍କର ଦଳପତିଥିଲେ ରତ୍ନାନାୟକ ।*(୮)* ବର୍ତ୍ତମାନ ବିଦ୍ରୋହର ମୂଳକାରଣ ମାଛ କାନ୍ଦଣା ଜୋରରୁ ବେଠିଦ୍ୱାରା ନିଜ ରାଜଧାନୀକୁ ଜଳ ଆଣିବାକୁ କେନାଲ ଖୋଳିବା । ଭୂୟାଁ ମାନେ ରାଜ କର୍ମଚାରୀଙ୍କ ଦ୍ୱାରା ନିଷ୍ଠୁର ଭାବେ ଉତ୍ପୀଡିତ ହୋଇ ବିଦ୍ରୋହୀ ପାଲଟିଥିଲେ । ଧରଣୀଧର ରାଜକାର୍ଯ୍ୟରୁ ବହିଷ୍କୃତ ହୋଇ ବିଦ୍ରୋହର ନେତୃତ୍ୱ ନେଇଥିଲେ । (୯) ବିଦ୍ରୋହର ପ୍ରକୃତ ରୂପ, ଫକୀର ମୋହନଙ୍କ ପାନଗୁଆ ପ୍ରସଙ୍ଗ ପ୍ରଭୃତି ହିତୈଷିଣୀରେ ପ୍ରକାଶ ଲଭିଥିଲା ।

ହିତୈଷିଣୀରେ ତତ୍କାଳୀନ ରାଜନୈତିକ ଅପଶାସନର ଚିତ୍ର ନିର୍ଭୀକ ଭାବେ ପ୍ରଦତ୍ତ ହେଉଥିଲା । "ଭାରତରେ ଜାତୀୟ ଦୁର୍ଗତିର କାରଣ" ଶୀର୍ଷକରେ ଇଂରେଜ ଶାସନକୁ ଭାରତର ଦୁର୍ଭାଗ୍ୟ ରୂପେ ଚିତ୍ରଣ କରି ଭାରତ ବାସୀକୁ ଏହାର ପ୍ରତିକାର କରିବାକୁ ହିତୈଷିଣୀ ଆହ୍ୱାନ ଦେଇଛି । "ପଚିଶ କୋଟି ଭାରତବାସୀଙ୍କୁ କେତେକ ଜଣ ଇଂରେଜ ଶାସନରେ ରଖି ଅଛନ୍ତି । ପିଞ୍ଜରାବଦ୍ଧ ବିହଙ୍ଗର ମଧ୍ୟ ଟିକିଏ ସ୍ୱାଧୀନତା ଅଛି କିନ୍ତୁ ଭାରତର ହଲିବାର ଅଧିକାର ନାହିଁ । ଇଂରେଜମାନେ ଦେଶୀୟ ମାନଙ୍କୁ କୁକୁର, ବିରାଡ଼ି ପରି ଦେଖନ୍ତି । ମନୁଷ୍ୟ ମନୁଷ୍ୟ ପ୍ରତି ଯେପରି

ସମ୍ମାନ ଓ ଶ୍ରଦ୍ଧା ପ୍ରଦର୍ଶନ କରିଥାଏ; ଇଂରେଜମାନେ ଏ ଦେଶୀୟମାନଙ୍କ ପ୍ରତି ତାହା କିଛି ମାତ୍ର କରନ୍ତି ନାହିଁ । ଏପରି ତାଚ୍ଛଲ୍ୟର କିଛି କାରଣ ନାହିଁ ?'' *(୧୦)*

ହିତୈଷିଣୀରେ ତତ୍କାଳୀନ ରାଜା ମହାରାଜାଙ୍କ ବିଳାସ ବ୍ୟସନ, ଅଯଥା ଅର୍ଥବ୍ୟୟକୁ ଅକ୍ଷେପ କରାଯାଇଛି । ବିଭିନ୍ନ ଗଡ଼ଜାତରେ ପ୍ରଚଳିତ ବେଠି ବେଗାରୀ ପ୍ରଥାର ମୂଳୋତ୍ପାଟନେ ପାଇଁ ସ୍ୱର ଉତ୍ତୋଳନ କରାଯାଇଛି । ବିଭିନ୍ନ ଟିକସ ପ୍ରଚଳନର ଉଭୟ ଦିଗ ଆଲୋଚିତ ହୋଇଛି । ଯେ କୌଣସି ରାଜ୍ୟ ହେଉ ଯେଉଁଠି ଅପଶାସନର ସଂବାଦ ମିଳିଛି ତାକୁ ହିତୈଷିଣୀ ନିରପେକ୍ଷ ଭାବେ ପରିବେଷଣ କରିଛି ।

## (ଖ)ଗ୍ରାମ୍ୟଚିତ୍ର :

ସେ ସମୟରେ ଗ୍ରାମ ସମୂହର ଉନ୍ନତି ପାଇଁ ଗ୍ରାମପଞ୍ଚାୟତ ଉପରେ ଗୁରୁତ୍ୱ ଦିଆଯାଉଥିଲା । ଏ ପ୍ରସଙ୍ଗରେ ହିତୈଷିଣୀର ମତ ପ୍ରଣିଧାନ ଯୋଗ୍ୟ-''x x ଗ୍ରାମପଞ୍ଚାୟତ ଦ୍ୱାରା ଗ୍ରାମର ଶାନ୍ତିରକ୍ଷା ହେବ । ଗ୍ରାମବାସୀ ମାନଙ୍କର ଅଭାବ ଅସୁବିଧା ଦୂର କରାଯାଇ ପାରେ । ସମଷ୍ଟି ଚେଷ୍ଟା ଦ୍ୱାରା ବିଦ୍ୟାଳୟ ସ୍ଥାପନ, ରାସ୍ତା ନିର୍ମାଣ ଦୀନଦୁଃଖୀ ମାନଙ୍କର ଅନ୍ନ ସଂସ୍ଥାନ, ମନୁଷ୍ୟ ଏବଂ ପଶୁମାନଙ୍କର ରୋଗ ନିରାକରଣ, କୂପ ପୁଷ୍କରଣୀ ପ୍ରଭୃତି ଖନନ । ଜମିରେ ଜଳ ସେଚନର ବ୍ୟବସ୍ଥା ଫଳରେ ବୃକ୍ଷରୋପଣ, କୃଷିର ଉନ୍ନତି, କବିରାଜି ଓ ହୋମିଓପ୍ୟାଥିକ ଔଷଧ ସଂଗ୍ରହ । ଚୋର ଓ ଅଗ୍ନିଠାରୁ ରକ୍ଷାର ଉପାୟ, ସମବାୟ ଋଣ ସମିତି, ସାମାଜିକ ଧର୍ମଗଠନ ଓ କୁରୁଚି ଓ କୁରୀତିର ପ୍ରତିରୋଧ କରାଯାଇପାରେ । x x'' *(୧୧)*

ଗ୍ରାମ୍ୟର ଉନ୍ନତି ନିମନ୍ତେ ଗ୍ରାମବାସୀଙ୍କ ଅବଗତି ପାଇଁ ଋଣ ଗ୍ରହଣ ସମିତି, ବିଭିନ୍ନ ଦେଶୀୟ ଚିକିତ୍ସା, ଉନ୍ନତି ମୂଳକ ଚାଷ ଉପରେ ଲୋକପ୍ରିୟ ଶିକ୍ଷଣୀୟ ସଂବାଦ ପରିବେଷଣ କରୁଥିଲେ ।

## (ଗ)ସମବାୟ ସମିତି :

ଋଣ ଗ୍ରହଣ ସମିତି (Co-operative Society) ର ଉତ୍କୃଷ୍ଟ କର୍ଯ୍ୟପନ୍ଥା ଗ୍ରହଣ, ଋଣ ପ୍ରଦାନ, କିସ୍ତି ଆକାରରେ ଋଣ ଆଦାୟ ପ୍ରଭୃତି ଉପରେ ହିତୈଷିଣୀ ଗଠନ ମୂଳକ ଉପଦେଶ ପ୍ରଦାନ କରୁଥିଲା । ହିତୈଷିଣୀର ଉପଦେଶ ଅନୁସାରେ ଦର୍ପଣ ଜିଲ୍ଲାର ସୁଯୋଗ୍ୟ ମେନେଜର ଶ୍ରୀଯୁକ୍ତ ବାବୁ କୃଷ୍ଣଚନ୍ଦ୍ର ନନ୍ଦ ଦେଉଳକୁର ଗ୍ରାମର ପ୍ରଜା ମାନଙ୍କୁ ପ୍ରୋତ୍ସାହିତ କରି ଗୋଟିଏ ଋଣ ଗ୍ରହଣ ସମିତି ସ୍ଥାପନ କରିଥିଲେ । ଷ୍ଟେଟ ଫଣ୍ଡରୁ ବାର୍ଷିକ ଟ ୮/= ହାରରେ ଟ ୧୨୦୦୦ଙ୍କା ସମିତିକୁ ଦିଆଯାଇଥିଲା । ଗତ ୯ମାସରେ ସମସ୍ତ ଖର୍ଚ୍ଚ ଯାଇ ସମିତି ନେଟ *୬୭*ଟଙ୍କା ଲାଭ କରିଅଛି । ଗ୍ରାମବାସୀ ମାନେ ଅକ୍ଳେଶରେ ଅଳ୍ପସୁଧରେ ଟଙ୍କା ପାଇ ଆନନ୍ଦିତ

ହେଉଛନ୍ତି । ଉତ୍କଳର ହିତାକାଂକ୍ଷୀ ରାଜା ମହାରାଜା ମାନେ ନିଜ ରାଜ୍ୟର ଉନ୍ନତିପାଇଁ ଋଣ ସମିତି ମାନ ଗଠନ କରିବାକୁ ହିତୈଷିଣୀ ନିବେଦନ କରିଛି । *(୧୨)*

ଗ୍ରାମ ମାନଙ୍କର ନିଷ୍ଠୁର ମହାଜନଗଣ ସରଳବିଶ୍ୱାସୀ ଗ୍ରାମବାସୀ ମାନଙ୍କୁ ଚଢ଼ାସୁଧରେ ଋଣଦେଇ ଶୋଷଣ କରୁଥିଲେ ଏ ଉପାୟ ସେହି କୁ ପ୍ରଥାକୁ ଅନେକ ପରିମାଣରେ ହ୍ରାସ କରିଥିଲା । ମହାଜନଙ୍କ ଦାଉରେ ଅନେକ ଲୋକ ଋଣ ସୁଝି ନ ପାରି ଘରଦ୍ୱାର ହରାଇଛନ୍ତି । ଏ ସାମାଜିକ ଦୁସ୍ଥିତି ବିରୁଦ୍ଧରେ Co-opertive socity ଆନ୍ଦୋଳନକୁ ବହୁ ପ୍ରସାରୀ କରିବାର ଉଦ୍ୟମ ଜାରି ରଖିଛି ହିତୈଷିଣୀ ।

## (ଘ)ସହଜ ଚିକିତ୍ସା :

ଲୋକଙ୍କ ମଙ୍ଗଳ ନିମନ୍ତେ ହିତୈଷିଣୀ ଅନେକ ପ୍ରକାର ଦେଶୀୟ ଚିକିତ୍ସା ପଦ୍ଧତିକୁ ପ୍ରକାଶ କରୁଥିଲା । ହିତୈଷିଣୀ ସଂପାଦକ ନୀଳମଣି ବିଦ୍ୟାରତ୍ନ ଲୋକଙ୍କ ସୁବିଧା ପାଇଁ ଅନେକ ଚିକିତ୍ସା ପୁସ୍ତକ ପ୍ରଣୟନ କରି ବଣ୍ଟନ କରୁଥିଲେ । ବସନ୍ତ ରୋଗ ଚିକିସା, ଜ୍ୱର ଚିକିତ୍ସା, ସର୍ପ ରୋଗର ଚିକିତ୍ସା, ବିସୂଚିକା ଚିକିସା, ମେହରୋଗ ଚିକିତ୍ସା, ଶିରରୋଗ ଚିକିତ୍ସା, ପ୍ରଭୃତି ପୁସ୍ତକ ଜନ ସମାଜର ଅଶେଷ କଲ୍ୟାଣ ସାଧନ କରିଥିଲା । ପଶୁ ମାନଙ୍କ ଚିକିତ୍ସା ପାଇଁ ତାଙ୍କ ପ୍ରଣୀତ ପଶୁ ଚିକିତ୍ସା, ଗୋ ଚକିତ୍ସା, ଗୋଧନ ରକ୍ଷା ପୁସ୍ତକ ଲୋକପ୍ରିୟ ହୋଇ ପାରିଥିଲା । ଏ ପୁସ୍ତକ ସମୂହର ଅବଦାନକୁ ହିତୈଷିଣୀର ଅନେକ ପୃଷ୍ଠାରେ ସ୍ୱୀକାର କରାଯାଇଛି । ଏତଦ୍ ବ୍ୟତୀତ ବିଦ୍ୟାରତ୍ନଙ୍କ 'ଜିହ୍ୱାସୁଖ ଓ ଜୀବନ'ପୁସ୍ତକ ଅନେକ ପାଠକଙ୍କୁ ନିରାମିଷ ଭୋଜନ ପାଇଁ ଅନୁପ୍ରାଣିତ କରିଥିଲା । ଏହାର ଏକ ତାଲିକା ହିତୈଷିଣୀ (୮/୩୭) ରେ ପ୍ରଦ୍ତ । *(୧୩)* ସମଗ୍ର ଓଡ଼ିଶାର ଅନେକ ସ୍ଥାନରେ ଏ ବହିର ଉପାଦେୟତାକୁ ହୃଦୟଙ୍ଗମ କରି ଏକ ନୀରୋଗ ଜୀବନ ଯାପନ ପାଇଁ ନିରାମିଷ ଭୋଜନକୁ ଅନେକ ଲୋକ ସ୍ୱାଗତ କରିଥିଲେ । *(୧୪)*

ହିତୈଷିଣୀର ଅନେକ ପୃଷ୍ଠାରେ ବିଭିନ୍ନ ରୋଗ ତଥା ତାର ନିରାକରଣ ସଂପର୍କରେ ଜ୍ଞାତବ୍ୟ ତଥ୍ୟ ସନ୍ନିବେଶିତ ହୋଇଛି । ବିଭିନ୍ନ ରୋଗକୁ ସାମାଜିକ ବାସନ୍ଦ କରୁଥିବା ବ୍ୟବସ୍ଥାକୁ ହିତୈଷିଣୀ ସମାଲୋଚନା କରିଛି ।

କୁଷ୍ଠରୋଗର ଭୟାବହତା, କୁଷ୍ଠରୋଗୀଙ୍କ ସଂଖ୍ୟା ବୃଦ୍ଧି, ଏଥିର ପ୍ରାଥମିକ ଚିକିତ୍ସା, କୁଷ୍ଠରୋଗୀକୁ ଅଭିଶାପ ଗ୍ରସ୍ତ ଭାବି ବାସନ୍ଦ କରିବା ପ୍ରଭୃତି ତଥ୍ୟର ଉପସ୍ଥାପନା କରି ପାଠକଙ୍କ ସଂବେଦନା ଆକର୍ଷଣ କରିବାରେ ହିତୈଷିଣୀ ସଫଳ ହୋଇଥିଲା । ଭାରତରେ ପ୍ରଥମେ କଲିକତା ଠାରେ ରାଜପୌତ୍ର ଭିକ୍ଟରଙ୍କ ଭାରତ ଭ୍ରମଣ ଉପଲକ୍ଷେ ତାଙ୍କ ନାମାନୁସାରେ କୁଷ୍ଠାଶ୍ରମ ପ୍ରତିଷ୍ଠାକୁ ପ୍ରଶଂସା କରାଯାଇଛି । *(୧୫)* କୁଷ୍ଠ ରୋଗର ଚିକିତ୍ସା ପଦ୍ଧତିକୁ ସରଳ ଭାଷାରେ ରୋଗୀଙ୍କ ପାଇଁ ହିତୈଷିଣୀରେ ଦିଆଯାଇଥିଲା । *(୧୬)*

ପ୍ଲେଗରୋଗ କିପରି ମୂଷା ଦ୍ୱାରା ବ୍ୟାପେ, ଏ ରୋଗର ଉକ୍ରଟତା, ମୂଷାମାନଙ୍କ ଠାରୁ ଖାଦ୍ୟଦ୍ରବ୍ୟ ଦୂରେଇ କିପରି ଏ ରୋଗର ପ୍ରତିକାର କରାଯିବ ଲୋକଙ୍କୁ ସତର୍କ କରାଇ ଦିଆଯାଇଛି । (୧୭)

ସର୍ପଦଂଶନ, ମୁଖରନ୍ଧ୍ରରେ ଜୀବାଣୁ, ବିସୂଚୀକା ଚିକିତ୍ସା, ମ୍ୟାଲେରିଆ ଜ୍ୱର ମୃଗୀରୋଗ ପ୍ରଭୃତି ଯାବତୀୟ ରୋଗର ବିସ୍ତାର ଓ ପ୍ରତିକାର ଉପାୟ ସମୟାନୁସାରେ ହିତୈଷିଣୀରେ ପ୍ରକାଶ ଲଭିଛି । ଏଥି ସହିତ ଆୟୁର୍ବେଦିକ ଚିକିତ୍ସା ଓ ହୋମିଓପ୍ୟାଥିକ ଚିକିତ୍ସା ସଂପର୍କରେ ପାଠକଙ୍କୁ ଅବଗତ କରାଯାଇଛି । ଅଦା, ହଳଦୀ, ପିଆଜ, ହରିଡ଼ା, ବାହାଡ଼ା, ଅଁଳା, ଘାଡ଼ାଳଗରୁଡ଼ ପ୍ରଭୃତିର ଔଷଧୀୟ ଗୁଣ ସହିତ ଟୁଟ୍‌କା ଔଷଧ ସଂପର୍କରେ ବିବରଣୀ ବିଭିନ୍ନ ସଂଖ୍ୟାରେ ପ୍ରକାଶ ପାଇଛି । କେବଳ ପ୍ରାଚୀନ ଚିକିତ୍ସା ପଦ୍ଧତିର ପ୍ରଶଂସା କରୁଥିଲା ତା ନୁହେଁ ବରଂ ଆଧୁନିକ ଚିକିତ୍ସାର ମଧ୍ୟ ପ୍ରଶଂସକ ଥିଲା ହିତୈଷିଣୀ ।

## (ଙ)କୃଷି :

ଭାରତୀୟ ଅର୍ଥନୀତି ମୁଖ୍ୟତଃ କୃଷି ଉପରେ ନିର୍ଭରଶୀଳ । ଓଡ଼ିଶାର ଲୋକମାନେ ମୁଖ୍ୟତଃ କୃଷିଜୀବୀ । ଗ୍ରାମ୍ୟ ଅର୍ଥନୀତିର ମୂଳଭିତ୍ତି କୃଷି । ଊନବିଂଶ ଶତାବ୍ଦୀରେ ଶିଳ୍ପ ଓ ବାଣିଜ୍ୟର ପ୍ରସାର ଓଡ଼ିଶାରେ ଆଶାଜନକ ନଥିଲା । କୃଷି ହିଁ ଥିଲା ପ୍ରଧାନ ଅବଲମ୍ବନ ।

ଉନ୍ନତ କୃଷି ଯନ୍ତ୍ରପାତି ବ୍ୟବହାର, ଧାନ ଗହମ ଝୋଟ ସହିତ ବିଭିନ୍ନ ଅର୍ଥକାରୀ ଫସଲ ସଂପର୍କିତ ସଂବାଦ ହିତୈଷିଣୀରେ ପ୍ରକାଶ ପାଉଥିଲା । ଧୂଆଁପତ୍ର, ବିଲାତି ଆଳୁ ଚା, କଫି, ପ୍ରଭୃତି ଚାଷର ସବିଶେଷ ବିବରଣୀ ସହିତ କୃଷକ ମାନଙ୍କୁ ଉତ୍ସାହ ପ୍ରଦାନ କରାଯାଉଥିଲା । ଏ ସମସ୍ତ ଶସ୍ୟ ଉତ୍ପାଦନ ସହିତ ଏମାନଙ୍କର ବଜାର ଦର ଓ ବ୍ୟବସାୟର ସୂତ୍ର ମଧ୍ୟ ହିତୈଷିଣୀ ଜଣାଇ ଦେଉଥିଲା । ''ଓଡ଼ିଶାରେ ଚା ଚାଷ ସଂଭବ କି ନା'' ଶୀର୍ଷକ ସଂବାଦରେ ଚା ଚାଷର ଅର୍ଥକାରୀ ଦିଗ ଉପରେ ହିତୈଷିଣୀ ଆଲୋକପାତ କରିଛି । ଅସାମର ଚା ବଗିଚାରେ ହଜାର ହଜାର ଓଡ଼ିଆ କୁଲିକାମ କରୁଥିବାରୁ ଓଡ଼ିଶାରେ ଚା ଚାଷ ହେଲେ ଅନେକ ଲୋକ ଉପକୃତ ହେବେ ଓ ନିଯୁକ୍ତି ପାଇବେ । (୧୮)

କୃଷକର ସମସ୍ତ ଉତ୍ପାଦନକୁ ସାହୁକାର ମାନେ କବଳିତ କରନ୍ତି । କୃଷକ ମାନଙ୍କ ଦୟନୀୟ ଅବସ୍ଥାକୁ ଉପଲବ୍ଧି କରି ହିତୈଷିଣୀ କୃଷି ବ୍ୟାଙ୍କ ସ୍ଥାପନ ପାଇଁ ଆହ୍ୱାନ ଦେଇଛି । ''କୃଷକ ମାନଙ୍କର ବିପରିରେ ଗଭର୍ଣ୍ଣମେଣ୍ଟଙ୍କର ଉପେକ୍ଷା ପ୍ରଦର୍ଶନ କରିବା ଉଚିତ ନୁହଇ । ସ୍ଥାନେ ସ୍ଥାନେ କୃଷି ବ୍ୟାଙ୍କ ସ୍ଥାପିତ ହେଲେ କୃଷିଜୀବୀମାନେ-ଅଳ୍ପ ସୁଧରେ ଋଣ ନେବାକୁ ପ୍ରବୃତ୍ତ ହେବେ । ଅଥବା ସଞ୍ଚିତ ଅର୍ଥ ବାଣିଜ୍ୟ ବ୍ୟବସାୟରେ ଲଗାଇ ନିଜର ଏବଂ ଦେଶର ଉପକାର ସାଧନ କରିବେ । ଗଭର୍ଣ୍ଣମେଣ୍ଟଙ୍କର ଏ ବିଷୟରେ ଉଦାସୀନ ରହିବା ଉଚିତ ନୁହଇ ।'' (୧୯)

ଶସ୍ୟ ଉତ୍ପାଦନ ସହିତ ମାଛ ଚାଷ, କୁକୁଡ଼ାଚାଷ, ଲାଖଚାଷ ଓ ଟସର ଚାଷ ଉପରେ ମଧ୍ୟ ହିତୈଷିଣୀ ଗୁରୁତ୍ୱ ପ୍ରଦାନ କରିଥିଲା । କୌଣସି ସ୍ଥାନରେ ଉନ୍ନତ ମାନର ଗବେଷଣାମୂଳକ କୃଷି ଉତ୍ପାଦନକୁ ହିତୈଷିଣୀ ସ୍ୱାଗତ କରୁଥିଲା । ବାମଣ୍ଡାରେ ଆଖୁଚାଷ, ବିଭିନ୍ନ ସାର ପ୍ରୟୋଗର ଉପକାରିତା ଉପରେ ହୋଇଥିବା ଗବେଷଣାମୂଳକ ସଂବାଦକୁ ଏହା ସର୍ବସାଧାରଣଙ୍କ ଅବଗତି ନିମନ୍ତେ ପ୍ରକାଶ କରିଥିଲା । ବିଭିନ୍ନ ସ୍ଥାନରେ ସଂଘଠିତ ହୋଇଥିବା କୃଷି ପ୍ରଦର୍ଶନୀର ବିବରଣୀ ଓ ଉନ୍ନତ ଦ୍ରବ୍ୟଗୁଡ଼ିକୁ ହିତୈଷିଣୀ ଆନନ୍ଦ ସହିତ ପରିବେଷଣ କରୁଥିଲା । ଦେଶୀୟ କୃଷକ ମାନଙ୍କୁ ଜାପାନ ରୁଷ ପ୍ରଭୃତି ବିଦେଶୀୟ କୃଷକ ମାନଙ୍କର ଉଦାହାରଣ ଦେଇ ଅନୁପ୍ରେରିତ କରୁଥିଲା ।

## (ଚ)ଶିଳ୍ପ ଓ ବାଣିଜ୍ୟ :

କୃଷି ସମାଜ ଜୀବନର ଭିତ୍ତି । କିନ୍ତୁ ଶିଳ୍ପ ଓ ବାଣିଜ୍ୟ ଏହାର ବିକାଶର ମାଧ୍ୟମ । ଶିଳ୍ପ ଓ ବାଣିଜ୍ୟର ବିକାଶ ସାଧନ ଦ୍ୱାରା ଦେଶ ସମୃଦ୍ଧ ହୋଇଥାଏ । ହିତୈଷିଣୀ ଶିଳ୍ପ ଓ ବାଣିଜ୍ୟ ପ୍ରସଙ୍ଗରେ ଅନେକ ସଂବାଦ ପରିବେଷଣ କରିଛି । ବିଭିନ୍ନ ସ୍ଥାନରେ ନାନା ପ୍ରକାର କାରଖାନା ସ୍ଥାପନର ସଂବାଦ ପାଠକ ମାନଙ୍କୁ ଉତ୍ସାହିତ କରେ । ବିଭିନ୍ନ ଶିକ୍ଷା ଉପରେ ହିତୈଷିଣୀ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଛି । ବଙ୍ଗ ଦେଶରେ ଶିଳ୍ପ ଶିକ୍ଷାର ବ୍ୟବସ୍ଥା ଗୁଡ଼ିକର ଉଦାହରଣ ପ୍ରଦତ୍ତ ହୋଇଛି । କୁଟୀର ଶିଳ୍ପ ଠାରୁ ଯାନ୍ତ୍ରିକ ଶିଳ୍ପ ଯାଏ ପ୍ରତିଟି ଶିଳ୍ପ ଯେ ସଭ୍ୟତାର ବିକାଶର ହେତୁ ଏହା ହିତୈଷିଣୀ ପ୍ରତିପାଦନ କରିଛି । ଔଷଧ, ଦିଆସିଲି,କାଚ, କପଡ଼ା, ମୂର୍ତ୍ତି ଶିଳ୍ପ ସଂପର୍କରେ ଅନେକ ସଂବାଦ ହିତୈଷିଣୀରେ ପ୍ରକାଶିତ । ବାମଣ୍ଡା ରାଜାଙ୍କ ଉଦ୍ୟମରେ ପ୍ରତିଷ୍ଠିତ ଚିନି କାରାଖାନା, କପଡା କାରଖାନା, ଟାଇଲ ଫେକ୍ଟୋରୀ ଓ କରତକଳ ଦ୍ୱାରା କିପରି ଲୋକଙ୍କର ସମୃଦ୍ଧି ସାଧନ ଓ ରାଜ୍ୟର ଆୟ ବୃଦ୍ଧି ହୋଇଥିଲା ତାହା ହିତୈଷିଣୀ ପ୍ରଚାର କରିଛି । ସ୍ୱଦେଶ ସାମଗ୍ରୀର ବ୍ୟବହାର ସହିତ ବିଦେଶୀ ଦ୍ରବ୍ୟର ବର୍ଜନ କରିବା ପାଇଁ ପରୋକ୍ଷରେ ହିତୈଷିଣୀ ଆହ୍ୱାନ ଦେଇଥିଲା । ସ୍ୱଦେଶୀ ଶିଳ୍ପ ପ୍ରତିଷ୍ଠା ଦିଗରେ ହିତୈଷିଣୀ ଗୁରୁତ୍ୱ ଦେଇଥିଲା । 'ବିଲାତି ସମାଗ୍ରୀର ଆମଦାନୀ ଭାରତର ଘୋର ଅନିଷ୍ଟ ସାଧନ କରୁଥିବା କଥା ଭାରତର ହିତାଭିଳାଷୀ ସକଳ ସମ୍ବାଦପତ୍ର ଉଚ୍ଚସ୍ୱରରେ ଘୋଷଣା କରୁଛନ୍ତି । ତଥାପି ଏ ପର୍ଯ୍ୟନ୍ତ କିଛି ଫଳ ନ ଫଳି ଦିନକୁ ଦିନ ବିଲାତି ଆମଦାନୀ ବୃଦ୍ଧି ଲାଭ କରୁଅଛି । ତେବେ ଏତିକି ମାତ୍ର ଫଳ ଫଳିଅଛି ଯେ, ଲୋକମାନେ ବିଲାତି ଆମଦାନୀକୁ ଅନିଷ୍ଟକର କାରଣ ବୋଲି ବୁଝି ପାରିଅଛନ୍ତି । ମାତ୍ର ସୁଯୋଗ ଅଭାବରେ ବିଲାତି ସାମଗ୍ରୀ ତ୍ୟାଗ କରି ପାରିନାହାନ୍ତି । ଦେଶର ଧନୀ ଲୋକମାନେ ମିଳି ଏ ଦେଶରେ କଳ-କାରଖାନା ପ୍ରସ୍ତୁତ କରି ପ୍ରୟୋଜନୀୟ ପଦାର୍ଥ ଯୋଗାଇ ପାରିଲେ ଲୋକମାନେ ବିଲାତି ସାମଗ୍ରୀ ବିମୁଖ ହେବେ । ବର୍ତ୍ତମାନ ଏକ ସହଯୋଗୀ ବିଲାତି

ଆମଦାନୀର ନିମ୍ନୋକ୍ତ ହିସାବଟି ପ୍ରକାଶ କରିଥିବାରୁ ତାହା ଏଠାରେ ଉଦ୍ଧୃତ କରିଦେଲୁ, ବସ୍ତ୍ର, ତମ୍ବା, ସୂତା, ଲୁହା, ଇସ୍ପାତ, ଟିଣ ଅନ୍ୟାନ୍ୟ ଧାତୁ, ଛୁରୀ, କଇଁଚି ଓ ଅଠାରେଶମୀ ବସ୍ତ୍ର, ପଶମୀ ବସ୍ତ୍ର, ଚିନି, ଛତା, ଦିଆସିଲି, କାଚପାତ୍ର ଇତ୍ୟାଦି ବାବଦରେ ମୋଟ ୬୩ କୋଟି ୪୨ଲକ୍ଷ ଟଙ୍କା ଦିଆଯାଇଛି । ଏଗୁଡ଼ିକ ଆମର ଜୀବନରକ୍ଷା କ୍ଷେତ୍ରରେ ପ୍ରୟୋଜନୀୟ ନୁହ ।''(୨୦)

## (ଛ)ଯୋଗାଯୋଗ ଓ ପରିବହନ :

ଯୋଗାଯୋଗ ଓ ପରିବହନ ସଭ୍ୟତାର ଏକ ବିଶିଷ୍ଟ ଅଙ୍ଗ । ଏହାର ଉନ୍ନତି ବିନା ପ୍ରଶାସନ ଓ ପ୍ରଜା ମଧ୍ୟରେ ସଂପର୍କ ପ୍ରତିଷ୍ଠିତ ହୋଇ ପାରିବ ନାହିଁ । ଶାସନର ସୁଫଳ ଅଂଧାରି ମୂଳକକୁ ପହଞ୍ଚି ପାରେ ନାହିଁ । ସଡକ ପଥ, କେନାଲ, ରେଳପଥ, ଡାକ ଓ ତାର ବ୍ୟବସ୍ଥା ଯୋଗାଯୋଗ ଓ ପରିବହନର ଅନ୍ତର୍ଭୁକ୍ତ ।

୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷର ବିଭିନ୍ନ କାରଣ ମଧ୍ୟରେ ଓଡ଼ିଶାରେ ଗମନାଗମନ ପଥର ଅଭାବକୁ ପ୍ରଧାନ କାରଣ ରୂପେ ଦର୍ଶାଯାଇଥିଲା । ତତ୍‌କାଳୀନ ଓଡ଼ିଶା ଭୌଗୋଳିକ ଦୃଷ୍ଟିରୁ ଅନ୍ୟାନ୍ୟ ଅଞ୍ଚଳ ଠାରୁ ବିଚ୍ଛିନ୍ନଥିଲା । ଏହି ଅଭାବ ଓ ଅସୁବିଧା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାରେ ଦୀପିକାର ଉଦ୍ୟମ ପ୍ରଶଂସନୀୟ । ଦୀପିକାର ଉଦ୍ୟମକୁ ପୂର୍ଣ୍ଣପ୍ରାଣରେ ହିତୈଷିଣୀ ସମର୍ଥନ ଜଣାଇଥିଲା । ଓଡ଼ିଶାରେ ରେଳପଥ ନିର୍ମାଣର ଦାବୀକୁ ହିତୈଷିଣୀ ବହୁ ପ୍ରସାରୀ କରିଥିଲା । ତାଳଚେରରୁ ସଂବଲପୁର ରେଳପଥ ସଂଯୋଗ ପାଇଁ ମଧ ହିତୈଷିଣୀ ଆହ୍ୱାନ ଦେଇଥିଲା । (୨୧) ପାର୍ବତୀପୁର ଗୁଣୁପୁର ଶାଖାରେଳପଥ, ବେଙ୍ଗଲ ନାଗପୁର ରେଳପଥ ପ୍ରଭୃତିର କାର୍ଯ୍ୟର ଅଗ୍ରଗତି ସଂପର୍କେ ଅନେକ ସଂବାଦ ହିତୈଷିଣୀରେ ପ୍ରକାଶ ଲଭିଛି । ଭାରତ ସରକାରଙ୍କ ରେଳ ବଜେଟର ଆୟବ୍ୟୟ ରେଳପଥର ପରିମାଣ ପ୍ରଭୃତିର ସୁସ୍ପଷ୍ଟ ଚିତ୍ର ହିତୈଷିଣୀରୁ ମିଳିଥାଏ ।

ସେ ସମୟର ରାଜା ମହାରାଜାମାନେ ନିଜ ରାଜ୍ୟର ସଡକ ପଥର ଉନ୍ନତି କରି ଲରି ବା ମଟର ଆଦି ଚଳାଉଥିଲେ । ବାମଣ୍ଡା ରାଜାଙ୍କ ଦେବଗଡ଼ ଗୋବିନ୍ଦପୁର ରାସ୍ତାନିର୍ମାଣକୁ ହିତୈଷିଣୀ ପ୍ରଶଂସା କରିଥିଲା । (୨୨)

ହିତୈଷିଣୀ ପୃଷ୍ଠାରେ ଡାକ ଚଳାଚଳର ସବିଶେଷ ବିବରଣୀ, ଫୋନ ସଂଯୋଗ ଉପରେ ସଂବାଦ ପ୍ରକାଶ ପାଇଥିଲା । ବିଭିନ୍ନ ଅଞ୍ଚଳରେ ଡାକସେବା, ଡାକକର୍ମଚାରୀଙ୍କ ଅଭାବ, ପୋଷ୍ଟ ଅଫିସର ହିସାବ ଆଦିକୁ ହିତୈଷିଣୀ ଆଲୋକିତ କରିଥିଲା ।

ଏଥି ସହିତ ବିଭିନ୍ନ ଜଳପଥ, ବନ୍ଦର ଗୁଡ଼ିକ ଦ୍ୱାରା ବାଣିଜ୍ୟ ବ୍ୟବସାୟର ଚିତ୍ର ମଧ ହିତୈଷିଣୀରେ ପ୍ରଦତ୍ତ ।

## (ଜ)ନିଶା ନିବାରଣ :

ସାର ବାସୁଦେବ ସୁଢ଼ଳଦେବ ନିଶା ସେବନର ଘୋର ବିରୋଧି ଥିଲେ । ସେ ନିଜ ରାଜ୍ୟରେ ନିଶା ଦ୍ରବ୍ୟର କାରବାରକୁ ନିଷିଦ୍ଧ କରିଥିଲେ । ନିଶା ସେବୀକୁ ରାଜକର୍ମରୁ ବହିଷ୍କାର ଅର୍ଥଦଣ୍ଡ ଓ ବେତ୍ରାଘାତ କରାଯାଉଥିଲା । ଏପରିକି ଇଷ୍ଟଦେବୀ କନକ ଦୁର୍ଗାଙ୍କ ପୂଜାରେ ମଧ ମଦ ପ୍ରଚଳନ ନିଷେଦ୍ଧ କରାଯାଇଥିଲା । ସୁଢ଼ଳଦେବ ନିଜର ମାନସ ସନ୍ତାନ ହିତୈଷିଣୀରେ ନିଶା ବିରୁଦ୍ଧରେ ଜନମତ ପ୍ରତିଷ୍ଠାକୁ ପ୍ରୋତ୍ସାହନ ଦେଉଥିଲେ । ତାଙ୍କର ଏ ଆଭିମୁଖ୍ୟକୁ ପ୍ରତିଟି ସଂପାଦକ ଉଚିତ ସମ୍ମାନ ଦେଉଥିଲେ । ହିତୈଷିଣୀ ଅନେକ ସଂଖ୍ୟାରେ ବିଭିନ୍ନ ମାଦକ ଦ୍ରବ୍ୟର କ୍ଷୟକାରକ ଗୁଣ, ମାଦକ ଦ୍ରବ୍ୟ ସେବନ ଯୋଗୁଁ ଦୁର୍ଘଟଣା ଆଦିର ଚିତ୍ର ପ୍ରଦାନ ସହିତ ସାଧାରଣଙ୍କୁ ସତର୍କ କରାଇ ଦିଆଯାଇଛି । ହିତୈଷିଣୀର ପ୍ରାରମ୍ଭିକ ସଂଖ୍ୟାରୁ ନିଶାବିରୋଧି ମନୋଭାବ ସ୍ପଷ୍ଟ ହୋଇଥାଏ । ପ୍ରଥମ ଭାଗ ଷଷ୍ଠ ସଂଖ୍ୟାରେ କଳି ଭାଗବତ ଶୀର୍ଷକରେ ନିଶାସେବନକୁ ଇଙ୍ଗିତ କରାଯାଇଛି ।

"ତୀର୍ଥସ୍ଥାନର ପଣ୍ଡାଗଣ, ଯାତ୍ରୀଙ୍କୁ ପାଇଣ ତେସନ
ଗଞ୍ଜାଇ, ଭାଙ୍ଗ, ଅହିଫେନ, ସର୍ବଦା କରିବେ ଭକ୍ଷଣ ।" *(୨୩)*

ପରବର୍ତ୍ତୀ ସଂଖ୍ୟାରେ କଳି ଭାଗବତରେ ମଧ ଗୁଡାଖୁ, ଗଞ୍ଜେଇ ସେବନର ମାତ୍ରାଧିକ୍ୟକୁ ସୂଚାଇ ଦିଆଯାଇଛି । ମାଦକ ଦ୍ରବ୍ୟ ସେବନର ଅପକାରିତା ସଂପର୍କରେ ରାଶି ରାଶି ପ୍ରବନ୍ଧ ପ୍ରକାଶ ଲଭିଛି । "ମାଦକ ସେବନ କଲେ ମନୁଷ୍ୟର ପ୍ରକୃତ ମଣିଷ ପଣିଆ ରହେନାହିଁ । ବୁଦ୍ଧି ବିକୃତି ଲାଭକରେ । ବାଚାଳତା ବୃଦ୍ଧିହୁଏ । ଦୁର୍ଲଭ ସମୟ ମାଦକ ସେବନ ହେତୁ ପଶୁ ସ୍ୱଭାବପନ୍ନ ଦିଶାରେ ଅତିବାହିତ କିରବାକୁ ହୁଏ । ବହୁକଷ୍ଟରେ ଉପାର୍ଜିତ ଅର୍ଥର ଅପବ୍ୟୟ ହୁଏ । ମାଦକ ସେବନ ହେତୁ ଲୋକମାନେ ଘୃଣା କରନ୍ତି । ସମୟରେ ଅର୍ଥାଭାବ ହେତୁ ପ୍ରୟୋଜନୀୟ ମାଦକଦ୍ରବ୍ୟ ନପାଇ ବିଶେଷ ଯନ୍ତ୍ରଣା ଭୋଗ କରିବାକୁ ପଡିଥାଏ । ଏହି ଅଭାବ ଅଧିକ କ୍ଷଣସ୍ଥାୟୀ ବା ଚିରସ୍ଥାୟୀ ହେଲେ ଚୋରୀ ଡକାୟତି ଆଦି ନୀଚ ବୃତ୍ତିମାନ ବାଧ୍ୟ ହୋଇ ଅବଲମ୍ବନ କରିବାକୁ ପଡେ । ଭଦ୍ରବ୍ୟକ୍ତି ନିକଟରେ ମାଦକ ଦ୍ରବ୍ୟସେବୀ ବୋଲି ଧରା ପଡିଲେ ଲଜ୍ଜିତ ହେବାକୁ ହୁଏ । ରାଷ୍ଟ୍ର କଳଙ୍କମୟ ହୁଏ । ଆପଣା ବଂଶୀୟ ଲୋକମାନେ ଲଜ୍ଜିତ ଓ କଳଙ୍କିତ ହୁଅନ୍ତି । *(୨୪)*

ଅହିଫେନ ସମ୍ବନ୍ଧେ ବାମଣ୍ଡାଧିପତିଙ୍କ ନିଷେଧାଜ୍ଞାକୁ ହିତୈଷିଣୀ ସ୍ୱାଗତ କରିଛି । "ବାମଣ୍ଡାଧିପତି ମାଦକ ସେବନର ଏକାନ୍ତ ବିରୋଧି ସେ ମାଦକ ଦ୍ରବ୍ୟକୁ ଯେପରି ଘୃଣା କରନ୍ତି, ମାଦକ ସେବୀମାନଙ୍କୁ ତତୋଧିକ ଘୃଣା କରନ୍ତି । ସେ ସଂପ୍ରତି ଆଦେଶ ଦେଇ ଅଛନ୍ତି ଯେ ବାମଣ୍ଡା ରାଜକର୍ମଚାରୀ ମାନଙ୍କ ମଧରୁ ଯେଉଁମାନେ ଅହିଫେନ ସେବନ କରୁଅଛନ୍ତି

ସେମାନେ ତିନିମାସ ମଧ୍ୟରେ ତାହା ତ୍ୟାଗ ନକଲେ ସେମାନଙ୍କୁ କର୍ମଚ୍ୟୁତ କରାଯିବ । ଆମ୍ଭେମାନେ ଏହି ଆଦେଶରେ ତୁଷ୍ଟ ହୋଇଅଛୁ । x x x x ବର୍ତ୍ତମାନ ବାମଣ୍ଡାର ଚିଫ୍ ମହୋଦୟଙ୍କୁ ବିନୀତ ନିବେଦନ ଏହି ଯେ ସେ କର୍ମଚାରୀମାନଙ୍କ ମଙ୍ଗଳ ସକାଶେ ଯେପରି କଠିନ ବିଧାନ କରିଅଛନ୍ତି,ପ୍ରଜାମାନଙ୍କୁ ମାଦକାସୁର ହସ୍ତରୁ ରକ୍ଷା କରିବା ସକାଶେ ତଦ୍ରୂପ କୌଣସି ବିଧାନ କରନ୍ତୁ ।'' *(୨୪)*

ବାମଣ୍ଡା ସଦର ଷ୍ଟେସନର ଚିଫ୍ କନେଷ୍ଟବଳ କମୁଖାଁ ନିଜେ ଅଫିମୀ ଥିବା ଏବଂ ଭଦ୍ର ସନ୍ତାନ ମାନଙ୍କୁ ଅଫିମ ଖୁଆଇବା ଆଦି ମନ୍ଦ କାର୍ଯ୍ୟ କରିବାରୁ ସୁଡ଼ଳଦେବ ସସ୍‌ପେଣ୍ଡ କରିଥିଲେ । *(୨୬)* ଏ ସବୁଥିରୁ ବାମଣ୍ଡାରେ ନିଶା ବିରୁଦ୍ଧରେ କଡାକଡି ଆଇନ୍ ପ୍ରଚଳିତ ଥିବାର ଜଣାପଡେ । ରାଜସ୍ୱ ଅଧିକ ହେଲେ ମଧ୍ୟ ବିଭିନ୍ନ ମାଦକ ଦ୍ରବ୍ୟକୁ ବର୍ଜନ କରିବାକୁ ହିତୈଷିଣୀ ଆହ୍ୱାନ ଦେଇଛି । *(୨୭)*

ସୁରାପାନ, ତମାଖୁ, ଗଞ୍ଜେଇର ଅପକାରିତା ମଦ୍ୟ ଓ ବେଶ୍ୟା ପ୍ରଭୃତି ଅନେକ ସଂବାଦ ଅନ୍ତରାଳରେ ଜନସଚେତନତା ସୃଷ୍ଟି ହିତୈଷିଣୀର ଲକ୍ଷ୍ୟଥିଲା । ନିଶାକୁ ହଳାହଳ ସହିତ ତୁଳନା କରାଯାଇଛି । ''ମଦ୍ୟଦ୍ୱାରା ମାନବ ସମାଜର ସମୂହ କ୍ଷତି ସାଧିତ ହେଉଅଛି । ସୁବୁଦ୍ଧି ସଂପନ୍ନ ମାନବ ପଶୁତ୍ୱ ଲାଭ କରୁଅଛି, ଲୋକମାନେ ଏହା ଅନୁଭବ କରି ମଧ୍ୟ ସେହି ପୁରୀଷସମ ହଳାହଳ ବିଷପାନ କରି ଆପଣାର ହିନ୍ଦୁତ୍ୱ ହରାଉଅଛନ୍ତି ଏବଂ ଶାରିରୀକ, ମାନସିକ ଆର୍ଥିକ ଓ ପାରିବାରିକ କଷ୍ଟରେ ପତିତ ହେଉଅଛନ୍ତି । x x x x ସକଳ ସ୍ଥାନର ଶିକ୍ଷିତ ସମ୍ଭ୍ରାନ୍ତ ଲୋକମାନେ ଅନ୍ତରର ସହିତ ମଦ୍ୟ ବିରୋଧି ହେଲେ ଆଶାତୀତ ସୁଫଳ ଲାଭର ସମ୍ଭାବନା ।'' *(୨୮)*

ହିତୈଷିଣୀ ନିଜର ଦୀର୍ଘ ପ୍ରକାଶନ ସମୟ ମଧ୍ୟରେ ନିଶାବିରୁଦ୍ଧରେ ଜନମତ ସୃଷ୍ଟିରେ ସଫଳ ହୋଇଥିଲା ।

ନିଶା ବିରୁଦ୍ଧରେ ଲିଖିତ ପୁସ୍ତକ ସମୂହର ପ୍ରଶଂସାର ସହ ବିଜ୍ଞାପନ ଓ ଆଲୋଚନା କରାଯାଉଥିଲା । ଏ ପ୍ରସଙ୍ଗରେ ବିଦ୍ୟାରତ୍ନଙ୍କ ପ୍ରଣୀତ ତମାଖୁର ଅପକାରିତା, ଅହିଫେନର ଅପକାରିତା, ବିଷବୈରୀ, ମଦିରା ମହାତ୍ମ୍ୟ ପ୍ରଭୃତି ପୁସ୍ତକର ସମାଲୋଚନାକୁ ସ୍ମରଣ କରାଯାଇପାରେ ।

## (୯)କୁସଂସ୍କାର ଦୂରୀକରଣ :

ଊନବିଂଶ ଶତାବ୍ଦୀର ପୁଞ୍ଜିଭୂତ ଅଂଧକାର ଓ କୁସଂସ୍କାର ଦୂରୀକରଣରେ ହିତୈଷିଣୀ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଭାଷା ସାହିତ୍ୟର ଉନ୍ନତି ସାଧନ ସହିତ ସାମାଜିକ କୁସଂସ୍କାର ଗୁଡିକର ମୂଳୋତ୍ପାଟନ ଥିଲା ତାର ମୂଳ ଲକ୍ଷ୍ୟ । ନରବଳୀ, ଜାତିଭେଦ, ସତୀଦାହ ପ୍ରଥା,

ବାଲ୍ୟବିବାହ, ବହୁ ବିବାହ, ବୃଦ୍ଧ ବିବାହ, କନ୍ୟାସୁନା, ନାରୀଶିକ୍ଷା ପ୍ରଭୃତି ଦିଗରେ ହିତୈଷିଣୀ ଦେଇଥିବା ଦିଗ୍‌ଦର୍ଶନ ମହାର୍ଘ୍ୟ ଓ ସମୟୋପଯୋଗୀ ।

ଭାରତୀୟ ରମଣୀ ମାନଙ୍କର ଦୂରାବସ୍ଥା ଅନେକତ୍ର ଆଲୋଚିତ । ଏ ପ୍ରସଙ୍ଗରେ ଭାରତୀୟ ରମଣୀମାନଙ୍କର ଅତୀତର ସମ୍ମାନ ସହିତ ଆଧୁନିକ ଦୂରାବସ୍ଥାର ଚିତ୍ରଣ କରାଯାଇଛି । ଅନେକ କୃତବିଦ୍ୟ ଲେଖକଙ୍କ ଉଚ୍ଚକୋଟୀର ପ୍ରବନ୍ଧ ମଧ୍ୟ ସ୍ଥାନିତ ହୋଇଛି ।

କୁସଂସ୍କାର ଦୂରୀକରଣ ହିତୈଷିଣୀର ଅନ୍ୟତମ ଲକ୍ଷ୍ୟ । ଏ ଲକ୍ଷ୍ୟ ସାଧନ ପାଇଁ ପ୍ରଥମ ପର୍ଯ୍ୟାୟରୁ ଏହା ସଂଗ୍ରାମରତ ।

ଦକ୍ଷ ଯଜ୍ଞରେ ସତୀଙ୍କର ଅଗ୍ନିରେ ଝାସ ଦେବା ଅଖ୍ୟାୟିକାରୁ ସତୀଦାହ ପ୍ରଥାର ସୃଷ୍ଟି । ପତିର ଚିତାରେ ବିଧବା ପତ୍ନୀର ସହମରଣକୁ ଏକ ପୁଣ୍ୟ କାର୍ଯ୍ୟ ରୂପେ ଚିତ୍ରଣ କରାଯାଇଥିଲା । ଏ କୁସଂସ୍କାର ବିରୁଦ୍ଧରେ ଇଂରେଜମାନେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ । ପୂର୍ବରୁ ଅବଶ୍ୟ ମୋଗଲ ସମ୍ରାଟ ଆକବର ଓ ମହମ୍ମଦ ବିନ୍ ତୋଗଲକ୍ ଏ ପ୍ରଥାକୁ ରଦ କରିଥିଲେ କିନ୍ତୁ ଏହା ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ଲର୍ଡ ବେଣ୍ଟିକ୍ । ତାଙ୍କର ଏ ଉଦ୍ୟମକୁ ରାଜା ରାମମୋହନ ପ୍ରମୁଖ ସଫଳ ରୂପାୟନ କଲେ । ଏହି ପ୍ରଥା ବିରୁଦ୍ଧରେ ଜନମତ ସୃଷ୍ଟିରେ ହିତୈଷିଣୀ ସଫଳ ହୋଇଥିଲା ।

ସତୀଦାହ ପ୍ରଥାଠାରୁ ଅତି ଉତ୍କଟ ଥିଲା ବାଲ୍ୟ ବିଧବା, ବୃଦ୍ଧ ବିବାହ ଓ ବହୁବିବାହ ପ୍ରଥା । ଏମାନଙ୍କ ବିରୁଦ୍ଧରେ ହିତୈଷିଣୀ ବିଷୋଦ୍‌ଗାର କରିଥିଲେ । ବମ୍ବେ ଜାତୀୟ ସମିତିର ବିଧବା ବିବାହ ପ୍ରବର୍ତ୍ତନ, ବାଲ୍ୟବିବାହ ନିବାରଣ ପ୍ରସ୍ତାବକୁ ହିତୈଷିଣୀ ସ୍ୱାଗତ କରିଥିଲା *(୨୯)* ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା ଶୀର୍ଷକରେ ବୃଦ୍ଧ ବିବାହକୁ କଟାକ୍ଷ କରିଥିଲେ । *(୩୦)* ହିତୈଷିଣୀର ମତ ଏ ପ୍ରସଙ୍ଗରେ ସୁସ୍ପଷ୍ଟଥିଲା । ''ବାଲ୍ୟବିବାହ ପ୍ରଥା ଦେଶରେ ଚଳୁଥିବାରୁ ତଦ୍ୱାରା ଅନେକ ପ୍ରକାର ଅନିଷ୍ଟ ଜାତ ହେଉଅଛି । ଏହି ବାଲ୍ୟ ବିବାହ ବିଧବା ଆମଦାନୀର ଗୋଟିଏ ପ୍ରଶସ୍ତ ପଥ ସ୍ୱରୂପ ହୋଇ ବାଳିକା ମାନଙ୍କୁ ବୈଧବ୍ୟ ଯନ୍ତ୍ରଣାରେ ନିକ୍ଷେପିତ କରୁଅଛି ।'' *(୩୧)*

ବାସୁଦେବ ସୁଢ଼ଳଦେବ ବାମଣ୍ଡାର ବାସୁଦେବପୁର ଶାସନର ଜଣେ ବ୍ରାହ୍ମଣ ନିଜର ସାତ ଆଠ ବର୍ଷର କନ୍ୟାକୁ ଏକ ଅଶି ନବେ ବର୍ଷର ବୃଦ୍ଧକୁ ୨୫୦ଟଙ୍କାରେ ବିକ୍ରୟ କରୁଥିବାରୁ ବନ୍ଦ କରିଥିଲେ । *(୩୨)* ପରେ ପରେ ସୁଢ଼ଳଦେବ ନିଜ ରାଜ୍ୟରେ ବୃଦ୍ଧ ବିବାହ ନିଷିଦ୍ଧ କରିଥିଲେ *(୩୩)* ଏବଂ ୧୯୦୩ ରେ କନ୍ୟାର ୧୨ ବର୍ଷ ଓ ବରର ୧୪/୧୫ ବର୍ଷରୁ କମ୍‌ରେ ବିବାହ କରାଯାଇ ପାରିବ ନାହିଁ ବୋଲି ଘୋଷଣା କରିଥିଲେ । *(୩୪)*

ବଙ୍ଗପ୍ରଦେଶରେ ବହୁ ବିବାହ ପ୍ରଚଳିତ ଥିବାରୁ ହିତୈଷିଣୀ କ୍ଷୋଭ ପ୍ରକାଶ କରିଛି । "x x x ବଙ୍ଗ ଦେଶରୁ କି ଏହି ଜଘନ୍ୟ ପ୍ରଥା ତିରୋହିତ ହେବନାହିଁ ।'' *(୩୫)* କଳିକତାର

ଏକ ବାଳିକା ବେଦିରେ ଏକ ବୃଦ୍ଧ ବେଖି ପଳାୟନ କରିବାର ଚିତ୍ର ପ୍ରଦାନ କରାଯାଇଛି । *(୩୬)* ଜନୈକ ବଙ୍ଗୀୟ ପାଠକ ବଙ୍ଗୀୟ ବାଳବିଧବା ମାନଙ୍କର ଦୁର୍ଦ୍ଦଶା ବର୍ଣ୍ଣନା କରିଛନ୍ତି । *(୩୭)* ନାଗପୁର ଅଧିବେଶନରେ ଜାତୀୟ ମହାସମିତିରେ ଆଲୋଚିତ ବହୁ ବିବାହ ନାମଞ୍ଜୁର ହୋଇ ବାଲ୍ୟବିବାହ ବିପକ୍ଷରେ ଓ ବିଧବା ବିବାହ ସପକ୍ଷରେ ମତ ପ୍ରକାଶ ପାଇଥିଲା ।*(୩୮)*

ଭାରତର ବିଭିନ୍ନ ସ୍ଥାନରେ ନାରୀମାନଙ୍କର ଦୂରାବସ୍ଥାର ସଂବାଦ ହିତୈଷିଣୀରେ ପ୍ରଦତ୍ତ ହୋଇ ପାଠକୀୟ ସଂବେଦନା ଉଦ୍ରେକ କରିପାରିଥିଲା । ସ୍ତ୍ରୀ ଜାତିର ଦୁଃଖକୁ କଳାତ୍ମକ ଭାବେ ଜନ ମାନସରେ ପରିବେଷଣ କରାଯାଇଥିଲା । ଏ ପ୍ରସଙ୍ଗରେ ହିତୈଷିଣୀର ଉଦ୍‌ଘୋଷଣା ପ୍ରଣିଧାନଯୋଗ୍ୟ । ''ଏ ଦେଶରେ ସ୍ତ୍ରୀ ମାନଙ୍କୁ ପୁରୁଷ ମାନଙ୍କ ଅପେକ୍ଷା ଅଧିକତର ସାମାଜିକ ଯନ୍ତ୍ରଣା ସହିବାକୁ ପଡୁଛି । ପୁରୁଷ ମାନେ ତାହା ଦେଖି ନ ଦେଖିଲା ପରି ହେଉଅଛନ୍ତି, କେହି ସେମାନଙ୍କର ଯନ୍ତ୍ରଣା କଥା ଉଲ୍ଲେଖ କଲେ ସମାଜ ଦ୍ରୋହୀ, ବିଧର୍ମୀ ବୋଲି ତିରସ୍କାର ହେଉଅଛନ୍ତି । ଏହା ପୁରୁଷ ମାନଙ୍କର ସଙ୍କୀର୍ଣ୍ଣ ସ୍ୱାର୍ଥପରତା ଓ ନିର୍ମମତାର ପରିଚାୟକ । x x x x ବହୁ ବିବାହ ଓ ବୃଦ୍ଧ ମାନଙ୍କର ଶିଶୁ ବିବାହ ପ୍ରଥା ଗବର୍ଣ୍ଣମେଣ୍ଟ ଆଇନ୍ ବଳରେ ଉଠାଇ ଦେଲେ ଆମ୍ଭେମାନେ ଦୁଃଖିତ ନହୋଇ ବରଂ ଆନନ୍ଦିତ ହେବୁ । x x x x " *(୩୯)*

ବହୁ ବିବାହ ବିରୁଦ୍ଧରେ ସହଯୋଗୀ ବଙ୍ଗ ପତ୍ରିକା ''ସଞ୍ଜୀବନୀ'' ର ଉଦ୍ୟମକୁ ହିତୈଷିଣୀ ପୂର୍ଣ୍ଣ ପ୍ରାଣରେ ସମର୍ଥନ ଜଣାଇ ସ୍ୱାଗତ କରିଥିଲା *(୪୦)* ଏ ସମସ୍ତ କୁସଂସ୍କାରକୁ ନାରୀ ଶିକ୍ଷାର ବହୁଳ ପ୍ରଚାର ଦ୍ୱାରା ଦୂରୀକରଣ କରାଯାଇ ପାରେ । ହିତୈଷିଣୀର ପ୍ରତି ଛତ୍ରେ ଛତ୍ରେ ନାରୀଶିକ୍ଷା ପ୍ରତି ଗୁରୁତ୍ୱ ଦିଆଯାଇଛି । ସ୍ତ୍ରୀ ଶିକ୍ଷା ଦେଶୋନ୍ନତିର ଗୋଟିଏ ଲକ୍ଷଣ ବୋଲି ମନେ କରାଯାଉଥିଲା । *(୪୧)*

କାବ୍ୟ କବିତା ଛଳରେ ମଧ କୁସଂସ୍କାର ବିରୁଦ୍ଧରେ ଜନମତ ପ୍ରକାଶ ପାଉଥିଲା । ହିତୈଷିଣୀରୁ କେତେକ କବିତାଂଶ ଉଦ୍ଧୃତ କରାଯାଇପାରେ ।

୧: ''ମନଦେଇ ଶୁଣ ସୁଜନେ ନାରୀ ଜାତିଙ୍କ କଥା,
ପୁରୁଷମାନଙ୍କ ହେତୁରୁ ମନେ ପାଉଁଛୁ ବ୍ୟଥା (ହିନ୍ଦୁ ରମଣୀର ଖେଦୋକ୍ତି)''*(୪୨)*

୨: ''କେ ତୁହି ଲଳନେ ! କିପାଁ ଦୁଃଖ ମନେ
ନେତ୍ରାସାରେ ଭାସି କରୁ ରୋଦନ ?
ଜବା ଫୁଲସମ ଓଷ୍ଠ ଅନୁପମ
ଦିଶେ ଶୁଷ୍କ ପକ୍ୱ ବିମ୍ବ ଯେସନ
ଯେସନେ ବିଷର୍ଣ୍ଣ ବାସେ ଶଶଧର ·
ତେସନେ କିପାଁ ତୋ ବଦନ୍ ଇନ୍ଦୁ

ନାହିଁ କି କାରଣ ଅଙ୍ଗେ ଆଭରଣ

ସୀମନ୍ତିରେ ଚାରୁ ସିନ୍ଦୁର ବିନ୍ଦୁ ।'' *(୪୩)*

ବାମଣ୍ଡା ଆଲୋଚନା ସଭାରେ ବାଲ୍ୟବିବାହ ଉପରେ ଗଭୀର ଆଲୋଚନା ହୋଇଥିଲା । ଅନେକ ଅଧିବେଶନରେ ଯୁକ୍ତିତର୍କ ପରେ ଶାସ୍ତ୍ରୀୟ ପ୍ରମାଣ ସହ ଆଲୋଚକ ଗଣ ଯୁବତୀ ବିବାହ ସପକ୍ଷରେ ଏକମତ ହୋଇଥିଲେ । ଦେଶର ଶାସ୍ତ୍ର ସମୂହକୁ କାଳୋପଯୋଗୀ ପରିବର୍ତ୍ତନ କରି ସ୍ଵ ସ୍ଵ ସମାଜରେ ଯୁବତୀ ବିବାହ ପ୍ରଚଳନ କରିବାକୁ ସମସ୍ତେ ବଦ୍ଧ ପରିକର ହୋଇଥିଲେ । ବାଲ୍ୟ ବିବାହ ସମାଜର ଅନୁପଯୋଗୀ ଥିବାରୁ ତାହା ରହିତ ହେବାର ସ୍ଥିର କରାଗଲା । ଏ ଅଲୋଚନାରେ ଅନେକ କୃତବିଦ୍ୟ ପଣ୍ଡିତଗଣ ଭାଗନେଇଥିଲେ *(୪୪)* ବାମଣ୍ଡା ବ୍ରାହ୍ମଣ ସମିତି ବାଲ୍ୟ ବିବାହ ବିରୁଦ୍ଧରେ ସଂଗ୍ରାମ ଜାରି ରଖିଥିଲା । ବ୍ରାହ୍ମଣ ସମିତି ସୁସାହିତ୍ୟିକ ଜଳନ୍ଧର ଦେବଙ୍କୁ ନିଜର ସଭାପତି ନିର୍ବାଚିତ କରିଥିଲା । ଜଳନ୍ଧର ଦେବ ଏ ଆନ୍ଦୋଳନର ଫଳସ୍ଵରୂପ ବିଭିନ୍ନ ଶାସ୍ତ୍ର ଅନୁଧ୍ୟାନ କରି ''ବିବାହ ବିଚାର'' ପୁସ୍ତକ ପ୍ରଣୟନ କରିଥିଲେ । *(୪୫)* ଏ ପୁସ୍ତକ ଯୁବତୀ ବିବାହ ଓ ଅକ୍ଷତ ଯୋନୀ ବିଧବା ବିବାହ ସପକ୍ଷରେ ବଳିଷ୍ଠ ଯୁକ୍ତି ବାଢ଼ିଥିଲା ।

ଜାତିଭେଦ ଶୀର୍ଷକରେ ଅନେକ ଆଲୋଚନା ହିତୈଷିଣୀ ପୃଷ୍ଠା ମଣ୍ଡନ କରିଥିଲା । ଶ୍ରୀ ଶର୍ମା ଜାତିଭେଦକୁ ସମର୍ଥନ କରି ପ୍ରବଂଧ ପ୍ରକାଶ କରିଥିଲେ । *(୪୬)* ବିଶ୍ଵନାଥ କର ଜାତିଭେଦ ବିରୁଦ୍ଧରେ ମତ ପ୍ରକାଶ କରିଥିଲେ ଓ ଶ୍ରୀ ଶର୍ମାଙ୍କ କୁସଂସ୍କାରାଚ୍ଛନ୍ନ ମତକୁ ଖଣ୍ଡନ କରିଥିଲେ । *(୪୭)* ହିତୈଷିଣୀ ୨୬-୭-୧୮୯୩ ସଂଖ୍ୟାରେ ଜାତିଭେଦ ସଂପର୍କିତ ବାଦାନୁବାଦ ଉପରେ ପାଠକ ଓ ଆଲୋଚକ ମାନଙ୍କର ମତ ଆହ୍ଵାନ କରାଯାଇଥିଲା ।

ହିତୈଷିଣୀ ନରବଳୀ, ପଶୁବଳୀ ବିରୁଦ୍ଧରେ ନିଜର ମତ ପ୍ରଦାନ କରିଥିଲା । କ୍ରୀତଦାସ ପ୍ରଥା, କନ୍ୟା ସୁନା ପ୍ରଥା ପ୍ରତି ଆକ୍ଷେପ କରିଥିଲା । ଏକ ସ୍ଵଚ୍ଛ ସୁନ୍ଦର ସମାଜ ଗଠନ ହିତୈଷିଣୀର ଲକ୍ଷ୍ୟଥିଲା । ନାରୀ ଶିକ୍ଷିତ ହେଲେ ଦେଶର ଉନ୍ନତି ସମ୍ଭବ ଏହା ସେ ବିଶ୍ଵାସ କରୁଥିଲା । ସମାଜର ସାମଗ୍ରିକ ବିକାଶ ସାଧନ ପାଇଁ କୁସଂସ୍କାର ସମୂହର ମୂଳୋତ୍ପାଟନ ସହ ଏକ ମହତର ସମାଜ ଜୀବନ ଗଠନ ହିତୈଷିଣୀର ମହାର୍ଘ ଲକ୍ଷ୍ୟ ଥିଲା ।



# ଦ୍ୱିତୀୟ ଅଧ୍ୟାୟର ପାଦସୂଚୀ

୧. ସହି-୧/୨୧ ତା ୨୦.୧୧.୧୮୮୯ ।
୨. ସହି-୧/୨୪ ତା -୧୧.୧୨.୧୮୮୯ ।
୩. ସହି ୧/୪୨ ତା ୧୭.୪.୧୮୯୦ ।
୪. ସହି ୧/୩୬ ତା ୫.୩.୧୮୯୦ ।
୫. ସହି୪/୧୧ ତା ୧୭.୮.୧୮୯୨ ।
୬. ତତ୍ରୈବ ।
୭: ସହି-୫/୪୭ ତା ୨୫.୪.୧୮୯୪ ।
୮. ସହି-୨/୪୯ ତା ୨୦.୫.୧୮୯୧ ।
୯. ସହି୨/୫୨ ତା ୧୦.୬.୧୮୯୧ ।
୧୦. ସହି ୪/୨୭ ତା ୭.୧୨.୧୮୯୨ ।
୧୧. ସହି ତା ୨୨.୫.୧୯୧୫ ।
୧୨. ସହି ତା ୧୯.୯.୧୯୧୪ ।
୧୩. ସହି ୮/୩୭ ତା ୧୦.୨.୧୮୯୭ ।
୧୪. ସହି ୮/୪୦ ତା. ୩.୩.୧୮୯୭ ।
୧୫. ସହି ୧/୨୯ ତା ୧୫.୧.୧୮୯୦ ।
୧୬. ସହି ୮/୧୪ ତା ୨.୯.୧୮୯୬ ।
୧୭. ସହି ୮/୧୫ ତା ୯.୯.୧୮୯୬ ।
୧୮. ସହି ୨୯/୧୯ ତା ୧୬.୩.୧୯୧୮ ।
୧୯. ସହି ୭/୩୩ ତା ୧୫.୧.୧୮୯୬ ।
୨୦. ସହି ୨/୫୨ ତା-୧୦.୬.୧୮୯୧ ।
୨୧. ସହି ୩୩/୨୦ ତା ୧୬.୯.୧୯୨୨ ।
୨୨. ସହି ୧/୨୯ ତା ୧୫.୧.୧୮୯୦ ।
୨୩. ସହି ୧/୬ ତା -୨୪.୭.୧୮୮୯ ।
୨୪. ସହି ୨/୪୧ ତା ୨୨.୪.୧୮୯୧ ।
୨୫. ସହି ୪/୧୬ ତା ୨୧.୯.୧୮.୯୨ ।

୨୬. ସହି ୫/୧୮ ତା ୪.୧୦.୧୮୯୩ ।
୨୭. ସହି ତା ୧୩.୧.୧୮୯୨ ।
୨୮. ସହି ୩/୩ ତା ୬.୧.୧୮୯୨ ।
୨୯. ସହି୧/୨୯ ତା ୧୫.୧.୧୮୯୦ ।
୩୦. ସହି୧/୩୨ ତା ୫.୨.୧୮୯୦ ।
୩୧. ସହି-୨/୧ ତା ୧୮.୬.୧୮୯୦ ।
୩୨. ସହି ତା ୨୩.୪.୧୮୯୦ ।
୩୩. ସହି ୪/୪୫ ତା ୧୨.୪.୧୮୯୨ ।
୩୪. ସହି ୧୫/୩ ତା ୫.୮.୧୯୦୩ ।
୩୫. ସହି ୩/୩୪ ତା-୩.୨.୧୮୯୨ ।
୩୬. ତତ୍ରୈବ ।
୩୭. ସହି- ୩/୪୪ ତା ୧୩.୪.୧୮୯୨ ।
୩୮. ସହି ୩/୩ ତା ୬.୧.୧୮୯୨ ।
୩୯. ତତ୍ରୈବ ।
୪୦. ସହି ୩/୩୬ ତା ୧୭.୨.୧୮୯୨ ।
୪୧. ସହି- ୩/୩୩ ତା ୨୭.୧.୧୮୯୨ ।
୪୨. ସହି ୩/୪୬ ତା ୬.୪.୧୮୯୨ ।
୪୩. ମିଶ୍ର, ଦାମୋଦର : ବିଧବାପ୍ରତି : ସହି-୪/୫୧ ତା -୨୪.୫.୧୮୯୩ ।
୪୪. ସହି-୧୧/୪୯ ତା ୧୧.୪.୧୯୦୦ ।
୪୫. ଦେବ, ଜଳଧର : ବିବାହ ବିଚାର, ଉତ୍କଳ ସାହିତ୍ୟ ପ୍ରେସ କଟକ -୧୯୨୮ ।
୪୬. ସହି ୪/୫୨ ତା ୩୧.୫.୧୮୯୩ ।
୪୭. ସହି ୫/୭ ତା ୧୯.୭.୧୮୯୩ ।



# ତୃତୀୟ ଅଧ୍ୟାୟ

## ଶିକ୍ଷା ସଂସ୍କାର:

ଶିକ୍ଷା ହିଁ ସଭ୍ୟତାର ମୂଳ । ପ୍ରକୃତ ଶିକ୍ଷା ମନୁଷ୍ୟକୁ ବିକାଶର ଶିଖରରେ ପହଞ୍ଚାଏ । ସଭ୍ୟତାର ଅଗ୍ରଗତି କରାଏ । ଶିକ୍ଷା ସର୍ବପ୍ରକାରେ କଲ୍ୟାଣପ୍ରଦ । ଶିକ୍ଷା ଦ୍ୱାରା ମଣିଷର ମାନସିକ ଉତ୍କର୍ଷତା ସାଧିତ ହୁଏ । ସୁଖ ସ୍ୱାଚ୍ଛନ୍ଦ୍ୟ ଐଶ୍ୱର୍ଯ୍ୟ ବୃଦ୍ଧିପାଏ । ଅନ୍ତର୍ନିହିତ ଶକ୍ତି ପ୍ରସାରିତ ଓ ପରିବ୍ୟାପ୍ତ ହୋଇଥାଏ । ଶିକ୍ଷାଦ୍ୱାରା ବ୍ୟକ୍ତି ମଧ୍ୟ ଦେଶ ଜାତିର ସ୍ୱାଧୀନାକାଂକ୍ଷା ବୃଦ୍ଧିପାଏ । ଜ୍ଞାନର ପ୍ରଦୀପ ପ୍ରଜ୍ଜ୍ୱଳିତ ହୋଇ ମଣିଷକୁ ଆତ୍ମ ନିର୍ଭରଶୀଳ କରେ ।

ଆଧୁନିକ ଶିକ୍ଷାର ପ୍ରସାର ଓ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଅଭ୍ୟୁଦୟ ସହିତ ବିକାଶ ଲଭିଛି ଆଧୁନିକ ଓଡ଼ିଆ ସାହିତ୍ୟ । ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ ସହିତ ଏକ ନୂତନ ଯୁଗରୁଚି ଓ ନୂତନ ସାହିତ୍ୟାଦର୍ଶର ଉଦ୍‌ବର୍ତ୍ତନ ଘଟିଛି । ଏହାରି ଉପରେ ଗଢ଼ି ଉଠିଛି ଆଧୁନିକ ଓଡ଼ିଆ ସାହିତ୍ୟ । ଆଧୁନିକ ଶିକ୍ଷା ସମାଜକୁ କୁସଂସ୍କାରହୀନ ସତ୍ୟାଲୋକର ସନ୍ଧାନ ଦେଇଛି । ସାହିତ୍ୟ ଓ ଭାଷାକୁ ତାର ଉପଯୁକ୍ତ ସ୍ଥିତି ଓ ସ୍ୱୀକୃତିଦେଇଛି । ସତ୍ୟାନୁସଂଧାନର ମୂଳ ଆଲୋକିତ ହୋଇଛି । ସାମାଜିକ ଓ ସାଂସ୍କୃତିକ ଘଟଣା ପ୍ରବାହ ଶିକ୍ଷାର ଏ ଉଦବର୍ତ୍ତନ ସହିତ ସମ୍ବାଦ ପତ୍ରରେ ଯଥାର୍ଥଭାବେ ପ୍ରତିଫଳିତ ହୋଇଛି । "ଜାତୀୟ କର୍ତ୍ତବ୍ୟ ସଚେତନ, ଦାୟିତ୍ୱଜ୍ଞାନ ସମ୍ପନ୍ନ ଯେ କୌଣସି ସମ୍ବାଦପତ୍ର ଏବଂ ସାହିତ୍ୟ ପତ୍ରର ମୁଖ୍ୟଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ହେଉଛି ଗଣଶିକ୍ଷା ବିଧାନ, ଗଣଶିକ୍ଷା ପ୍ରଚାର ଏବଂ ସାଧାରଣ ମଧ୍ୟରେ ଶିକ୍ଷାର ମାନ ଏବଂ ପରିମାଣ ବୃଦ୍ଧି କରିବା । ବିସ୍ମୟର କଥା ଯେ ଭାରତୀୟ ସମ୍ବାଦପତ୍ର ପ୍ରାରମ୍ଭରୁ ନିରକ୍ଷର ଜନସାଧାରଣଙ୍କୁ ଶିକ୍ଷିତ କରାଇବା ତା'ର କର୍ତ୍ତବ୍ୟ ବୋଲି ଉପଲବ୍ଧି କରିଥିଲା ।" (୧) ଏମିତି ଏକ ଆଭିମୁଖ୍ୟକୁ ସୁଚାରୁ ରୂପେ ସଂପାଦନ କରିଥିଲା ହିତୈଷିଣୀ । ହିତୈଷିଣୀର ପ୍ରତିଟି ସଂପାଦକ ନିରକ୍ଷର ଜନ ସାଧାରଣ, କୁସଂସ୍କାରାଚ୍ଛନ୍ନ ମହାଜନ ଓ ବିପଥଗାମୀ ପ୍ରଶାସନଙ୍କୁ ଶିକ୍ଷା ପ୍ରଦାନର କ୍ରାନ୍ତିକାରୀ ଭୂମିକା ନିର୍ବାହ କରିଥିଲେ । ଏ ପ୍ରସଙ୍ଗରେ ଆଧୁନିକ ଶିକ୍ଷା ବ୍ୟବସ୍ଥାର ପ୍ରଚାର ଓ ପ୍ରସାର ପ୍ରତି ହିତୈଷିଣୀର ଅବଦାନ ଅଧ୍ୟୟନ କରାଯାଇ ପାରେ ।

''ଶିକ୍ଷା ସମ୍ବନ୍ଧେ ଔଦାସିନ୍ୟ'' ଶୀର୍ଷକ ସଂବାଦରେ ହିତୈଷିଣୀର ନିବେଦନ ପ୍ରଣିଧାନ ଯୋଗ୍ୟ-''ଶିକ୍ଷା ସକଳ ଉନ୍ନତିର ମୂଳ ଅଟଇ, ଅନଭିଜ୍ଞ ଲୋକମାନଙ୍କର କାଣ୍ଡଜ୍ଞାନ ଜନ୍ମଇ ନାହିଁ ସୁତରାଂ ସେମାନେ କ୍ଷଣ କ୍ଷଣକେ ନାନାବି ଅନିଷ୍ଟ ଜନକ ଘଟଣା ଘଟାଇ ବସନ୍ତି । ଏପରି ସ୍ଥଳେ ଶିକ୍ଷା ବିସ୍ତାର ବିଷୟରେ କାହାରି ଅଯତ୍ନ କରିବା କଦାପି ଉଚିତ ନୁହଇ କିନ୍ତୁ ଭାରତର ଉଚ୍ଚଶିକ୍ଷା ବିସ୍ତାର ସମ୍ବନ୍ଧେ ସୁଶିକ୍ଷିତ ଗବର୍ଣ୍ଣମେଣ୍ଟ ଔଦାସିନ୍ୟ ଅବଲମ୍ବନ କରୁଥିବାର ଅବଗତ ହୋଇ ଆମ୍ଭେମାନେ ଅତ୍ୟନ୍ତ ଦୁଃଖି ହୋଇଅଛୁଁ । x x x x ଗବର୍ଣ୍ଣମେଣ୍ଟଙ୍କର ଔଦାସିନ୍ୟ ସମ୍ବନ୍ଧେ ନାନା ଲୋକ ନାନା କଥା କହୁଅଛନ୍ତି । ଆମ୍ଭେମାନେ ତହିଁ ପ୍ରତି ଆସ୍ଥା ନ ରଖି ଅନୁକୂଳ ଦୃଷ୍ଟି ରଖିବା ନିମନ୍ତେ ସରକାରଙ୍କ ନିକଟରେ ସବିନୟ ନିବେଦନ କରୁ ଅଛୁଁ ।'' *(୨)*

ଉନବିଂଶ ଶତାବ୍ଦୀରେ ଓଡ଼ିଶାର ଶିକ୍ଷାର ଦୁର୍ଗତି ଏବଂ ଶିକ୍ଷିତ ଓଡ଼ିଆଙ୍କ ସ୍ୱଳ୍ପତା ସଂପର୍କରେ କଟକ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ୧୮୨୧ର ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ । " Scarcely a single real Oriya received a salary of more than ten rupees per mensem, but several were naturalised Bengalis or Masalmans. I always give a preference to oriyas, but at this moment I scarcely know a single Oriya possessing qualification to fit him for being a common scribe" *(୩)* ଶିକ୍ଷିତ ଓଡ଼ିଆଙ୍କ ସ୍ୱଳ୍ପତା କର୍ତ୍ତୃପକ୍ଷଙ୍କୁ ମୁସଲମାନ ଓ ବଙ୍ଗଳା ଲୋକଙ୍କୁ ନିଯୁକ୍ତି ଦେବାକୁ ବାଧ କରୁଥିଲା ।

ଅଶିକ୍ଷାର ଅନ୍ଧାକାର ହିଁ ନଅଙ୍କ ଦୁର୍ଭିକ୍ଷ ପରି ଏକ କରାଳ ଦୁର୍ବିପାକକୁ ଡାକି ଆଣିଥିଲା । ଦୁର୍ଭିକ୍ଷ ଯେ କେବଳ ଇଂରେଜ ସରକାରଙ୍କ ଆଖି ଖୋଲିଦେଲା ତା ନୁହେଁ ବରଂ ଏହାରି ଅନ୍ତରାଳରେ ଓଡ଼ିଶା ଇତିହାସ ଏକ ନୂଆ ମୋଡ଼ ନେଲା । ଓଡ଼ିଶାର ଏ ଦୁଃସ୍ୱପ୍ନକୁ ସାମ୍ନାକରିବା ପାଇଁ ଯେ ଏକ ଶିକ୍ଷିତ ଗୋଷ୍ଠୀର ପ୍ରୟୋଜନ ଏହା ନିବିଡ଼ ଭାବେ ଅନୁଭୂତ ହେଲା । ଏହାକୁ ଆଧାର କରି ରେଭେନ୍‌ସା ସାହେବ ନିଜର ମନ୍ତବ୍ୟ ପ୍ରକାଶ କଲେ, "No other province in the presidency was so deficient of intelligent and public spirited residents who would appreciate the facts bearing on the prospects and means of the people, and who could give practical information to the authorities as would have been the case in any district of Bengal proper,and in carrying out remedial measures" *(୪)* ଉଲ୍ଲିଖିତ ବକ୍ତବ୍ୟରୁ ସ୍ପଷ୍ଟ ହୁଏ ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାର ଶିକ୍ଷା ପ୍ରତି ଇଂରେଜ ଶାସକଙ୍କ ସୁଦୃଷ୍ଟି ପଡିଥିଲା । ପ୍ରାଚୀନ ଶିକ୍ଷାପଦ୍ଧତି ସମାଜ ଜୀବନର ନୂତନ ଚିନ୍ତା ଓ ଚେତନାର ଉଦ୍ରେକ କରିବାକୁ ସକ୍ଷମ ନଥିଲା । ଇଂରେଜୀ ଶିକ୍ଷା ଯୁଗ ଯୁଗର କୁସଂସ୍କାରକୁ ହଟାଇ ସମାଜ ଜୀବନରେ ଜାତୀୟ ଚେତନାର ଉଦ୍‌ବେଳନ ଘଟାଇଥିଲା । ଓଡିଶାର ଶାସନ ବଙ୍ଗଳା ସହିତ ଦୀର୍ଘଦିନ ସଂଯୁକ୍ତ ଥିବାରୁ ଏହା ଅବହେଳିତ ହୋଇ ପଡିଥିଲା । କଂପାନୀ ସରକାର ମଧ୍ୟ ଏ ଦିଗରେ ଧ୍ୟାନ ଦେଇ ନଥିଲେ ।

ମିଶନାରୀ ମାନେ ହିଁ ପ୍ରଥମେ ସେମାନଙ୍କର ଶିକ୍ଷାଦାନ କାର୍ଯ୍ୟ ୧୮୨୨ ଖ୍ରୀ: ବେଳକୁ ଆରମ୍ଭ କଲେ । *(୫)* ଶିକ୍ଷାର ପ୍ରସାର ମୂଳରେ ଧର୍ମ ପ୍ରଚାର ହିଁ ତାଙ୍କର ମୂଳଲକ୍ଷ୍ୟ ଥିଲା । ବଙ୍ଗ ଅଧିବାସୀ ମାନେ ସହଜରେ ଇଂରେଜ ଶାସନକୁ ମାନିନେଲେ । ପରେ ଇଂରେଜ ଶିକ୍ଷାକୁ ମଧ୍ୟ ଗ୍ରହଣ କରି ନେଇଥିଲେ । କିନ୍ତୁ ଓଡ଼ିଶାରେ ଇଉରୋପୀୟ ଶିକ୍ଷା ପ୍ରଣାଳୀକୁ ଗ୍ରହଣ କଲେ ଧର୍ମ ଓ ସଂସ୍କୃତି କଳୁଷିତ ହେବ ବୋଲି ଲୋକଙ୍କ ମନରେ କୁସଂସ୍କାର ଥିଲା । *(୬)* ମିଶନାରୀ ମାନଙ୍କ ଦ୍ୱାରା ୧୮୨୨ ଜୁନ ୧ ତାରିଖରେ କଟକଠାରେ ପ୍ରଥମ ଆଧୁନିକ ସ୍କୁଲ ପ୍ରତିଷ୍ଠା ହୁଏ । ୧୮୨୩ ଡିସେମ୍ବର ସୁଦ୍ଧା ୧୫ଟି ଦେଶୀୟ ସ୍କୁଲର ପରିଚାଳନା, ୧୮୨୩ ସାଲ ଅକ୍ଟୋବରରେ କଟକ ଇଂରାଜୀ ଚାରିଟି ସ୍କୁଲ ସ୍ଥାପନ, ଆଧୁନିକ ଶିକ୍ଷା-ପ୍ରସାର-ଇତିହାସରେ ଗୋଟିଏ ଗୋଟିଏ ଅବିସ୍ମରଣୀୟ ଘଟଣା । *(୭)* ଲର୍ଡବେଣ୍ଟିଙ୍କଙ୍କ ଶାସନ କାଳରେ ୧୮୩୫ ଖ୍ରୀ:ରେ ଦେଶରେ ଇଂରେଜୀ-ଶିକ୍ଷା ପ୍ରଚଳନର ଐତିହାସିକ ସିଦ୍ଧାନ୍ତ ଗ୍ରହଣ କରାଗଲା । ୧୮୫୪ ଖ୍ରୀ:ରେ 'ଉଡ୍‌ସ ଡେସପାଚ' ଓ ୧୮୫୮ ଖ୍ରୀ:ରେ କଲିକତା ବିଶ୍ୱବିଦ୍ୟାଳୟ ସ୍ଥାପନ ପାଶ୍ଚାତ୍ୟ ଶିକ୍ଷାକୁ ତ୍ୱରାନ୍ୱିତ କଲା । ୧୮୫୮ ବେଳକୁ ସରକାରୀ ଓ ସାହାଯ୍ୟପ୍ରାପ୍ତ ମିଶି ଓଡ଼ିଶାରେ ପ୍ରାୟ ୩୦ଟି ବିଦ୍ୟାଳୟ ଥିଲା । *(୮)* ୧୮୬୯ ଖ୍ରୀ:ରେ ରେଭେନ୍‌ସା ମହାବିଦ୍ୟାଳୟ ପ୍ରତିଷ୍ଠା ସହିତ ପାଶ୍ଚାତ୍ୟ ଶିକ୍ଷାର ଦିଗନ୍ତ ଓଡ଼ିଶାରେ ପରିବ୍ୟାପ୍ତ ହୋଇଥିଲା ।

୧୮୭୦ ଖ୍ରୀ: ପରେ ଓଡ଼ିଶାରେ ଶିକ୍ଷାକ୍ଷେତ୍ର ପ୍ରଶସ୍ତ ହୋଇଥିଲା । ୧୮୭୩-୭୪ ଖ୍ରୀ:ରେ ସ୍କୁଲ ସଂଖ୍ୟା ୯୦୫ ଥିଲାବେଳେ ଛାତ୍ରସଂଖ୍ୟା ୧୯୩୯୭ । ୧୮୯୯-୧୯୦୦ ଖ୍ରୀ:ରେ ସ୍କୁଲ ସଂଖ୍ୟା ୬୩୫୧ ଏବଂ ଛାତ୍ର ସଂଖ୍ୟା ୧୦୮୯୫୬ ହୋଇଥିଲା । *(୯)* ଶିକ୍ଷାର ପ୍ରସାର ସହିତ ଊନବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟ ଓ ଜାତୀୟତାବୋଧର ଯୁଗାନ୍ତକାରୀ ଭିତ୍ତି ପ୍ରସ୍ତୁତ ହୋଇଥିଲା । ଏ ଭିତ୍ତିକୁ ସମୃଦ୍ଧ କରିବାକୁ ଉତ୍କଳ ଦୀପିକା, ସମ୍ବାଦ ବାହିକା, ସମ୍ବଲପୁର ହିତୈଷିଣୀ ପ୍ରଭୃତି ପତ୍ରିକାର ସୃଷ୍ଟି । ଉପରୋକ୍ତ ଦୁଇ ପତ୍ରିକା ବ୍ୟତିରେକେ ସମଗ୍ର ଓଡ଼ିଶା ଯାବତୀୟ ଜାତୀୟ ସମସ୍ୟାର ଉପସ୍ଥାପନ ଏବଂ ସମାଧାନ ଦାୟିତ୍ୱ ସମ୍ବଲପୁର ହିତୈଷିଣୀ ହିଁ ଗ୍ରହଣ କରିଥିଲା । *(୧୦)* ହିତୈଷିଣୀରେ ପ୍ରକାଶିତ ବିଭିନ୍ନ ସମସ୍ୟା ମୂଳକ ସଂବାଦରୁ ଏହାର ଶିକ୍ଷା ସଂପର୍କିତ ଆଭିମୁଖ୍ୟ ସ୍ପଷ୍ଟ ହୁଏ ।

ହିତୈଷିଣୀ ବାମଣ୍ଡା ତଥା ସଂବଲପୁର ଅଞ୍ଚଳର ଶିକ୍ଷା ବିଭାଗର ବିକାଶ ସାଧନ ସହିତ ସମଗ୍ର ଓଡ଼ିଶାର ଶିକ୍ଷାର ଉନ୍ନତି ପ୍ରତି ଦୃଷ୍ଟି ଦେଇଥିଲା ।

'ସମ୍ବଲପୁର ଶିକ୍ଷା' ଶୀର୍ଷକରେ ଶିକ୍ଷୋନ୍ନତିର ବିଶେଷ ସୁବିଧା ନଥିବାରୁ ହିତୈଷିଣୀ କ୍ଷୋଭ ପ୍ରକାଶ କରିଥିଲା । ଇଂରେଜୀ ଏଣ୍ଟ୍ରାନ୍ସ ପରେ ପଢ଼ିବାର ସୁଯୋଗ ନାହିଁ । ଏ ଅଞ୍ଚଳରୁ କେହି ଏଫ:ଏ: ପରୀକ୍ଷା ଦେବାକୁ ଉଦ୍ୟୋଗ କରି ନଥିବାରୁ ଦୁଃଖିତ । *(୧୧)* "ଓଡ଼ିଆ ପାଠ୍ୟପୁସ୍ତକ ନିର୍ବାଚନ ନିଯୋଗ" ଶୀର୍ଷକରେ ମାନ୍ୟବର ଚିଫ୍ କମିଶନର ସାହେବ ଓଡ଼ିଆ

ପାଠ୍ୟ ପୁସ୍ତକ ନିର୍ବାଚନ କମିଟୀର ମେମ୍ବର ନିଯୁକ୍ତିକୁ ହିତୈଷିଣୀ ସମର୍ଥନ କରି ପାରିନାହିଁ । ମେମ୍ବର ରୂପେ ଛତିଶଗଡ କମିଶନର ସମ୍ବଲପୁର ଡେପୁଟୀ କମିଶନର, ଛତିଶଗଡ଼ ପଲଟିକାଲ ଏଜେଣ୍ଟ, ପୂର୍ବ ବିଭାଗ ସ୍କୁଲ ଇନ୍‌ସପେକ୍ଟର, ସଂବଲପୁର ହାଇସ୍କୁଲ ହେଡମାଷ୍ଟରଙ୍କୁ ନିଯୁକ୍ତି ଦିଆଯାଇଥିଲା । ଏ ସଂପର୍କରେ ହିତୈଷିଣୀର ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ-''ଉପରୋକ୍ତ ମେମ୍ବର ମହୋଦୟ ମାନେ ଅତି ସଂଭ୍ରାନ୍ତ ଏବଂ ଉଚ୍ଚ ପଦାରୁଢ଼ ବ୍ୟକ୍ତି ଅଟନ୍ତି । ଏହା ଅବଶ୍ୟ ସମସ୍ତେ ସ୍ୱୀକାର କରିବେ ସତ୍ୟ କିନ୍ତୁ ଏପରି ବ୍ୟକ୍ତି ମାନଙ୍କର ହସ୍ତରେ ଓଡ଼ିଆ ପାଠ୍ୟପୁସ୍ତକ ନିର୍ବାଚନ ଭାର ଦେବା ସର୍ବବାଦୀ ସମ୍ମତ ହୋଇ ନପାରେ । ଯଦି ଏମାନଙ୍କୁ ସେହି କମିଟୀର ମେମ୍ବର କରିବା ଅତ୍ୟାବଶ୍ୟକ ବୋଧ ହୋଇଥାଏ ତେବେ ସେମାନଙ୍କ ସହିତ ଉତ୍କଳ ଭାଷା ପାରଦର୍ଶୀ ଜଣ କେତେ ଦେଶୀୟ ବ୍ୟକ୍ତିଙ୍କୁ ନିୟୋଗ କରିବା ଉଚିତ । ଶ୍ରୀଯୁକ୍ତ ପଣ୍ଡିତ ତ୍ରିଲୋଚନ ମିଶ୍ର, ପଣ୍ଡିତ ଧରଣୀଧର ମିଶ୍ର ଏବଂ ଉପଯୁକ୍ତ ଶିକ୍ଷକ ପ୍ରଭୃତିଙ୍କୁ ମେମ୍ବର ପଦରେ ନିୟୋଗ କରିବା ଉଚିତ । ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ପାଠ୍ୟ ପୁସ୍ତକ ସବୁ ବିବିଧ ଦୋଷାଶ୍ରିତ ହେବାର ପ୍ରଧାନ କାରଣ ପୁସ୍ତକ ନିର୍ବାଚକ ମାନଙ୍କର ଅନଭିଜ୍ଞତା ନକହି ଆଉ କି କହିବୁ ? ଏପରି ସ୍ଥଳେ ଏ ଅଞ୍ଚଳର ଉତ୍କଳ ଭାଷା ପାରଦର୍ଶି ବ୍ୟକ୍ତିମାନଙ୍କଦ୍ୱାରା ପାଠ୍ୟପୁସ୍ତକ ନିର୍ବାଚନ କରାଇବା ବା ଓଡ଼ିଶା ପ୍ରଚଳିତ ପାଠ୍ୟପୁସ୍ତକ ଏ ପ୍ରଦେଶର ଓଡ଼ିଆ ବିଭାଗରେ ଚଳାଇବା ଶ୍ରେୟସ୍କର ବୋଧକରୁ । ଭରସା କରୁ କର୍ତ୍ତୃପକ୍ଷ ମାନେ ଏ ବିଷୟ ପ୍ରତି ପୁନର୍ବିଚାର କରିବେ ।'' *(୧୨)*

ସଂବଲପୁର ହାଇସ୍କୁଲରେ ମରହଟ୍ଟା ଶିକ୍ଷକ ନିଯୁକ୍ତିକୁ ହିତୈଷିଣୀ ତୀବ୍ର ସ୍ୱରରେ ନିନ୍ଦା କରିଛି । ''ଯେଉଁ ଦେଶର ପ୍ରଧାନ ମାତୃଭାଷା ଓଡ଼ିଆ ସେହି ଦେଶର ଶିକ୍ଷକ ଯେ ଓଡ଼ିଆ ଭାଷା ପାରଦର୍ଶୀ ଥିବା ଏକାନ୍ତ ଆବଶ୍ୟକ ଏହା ପାଞ୍ଚବର୍ଷୀୟ ପିଲା ପର୍ଯ୍ୟନ୍ତ ସ୍ୱୀକାର କରିବେ । ନିରପେକ୍ଷ ଭାବରେ ଏ କଥା କେହି ଅସ୍ୱୀକାର କରି ପାରିବେ ନାହିଁ । ଯଦ୍ୟପି ସଂବଲପୁରରେ ହାଇସ୍କୁଲ ଛଡା ଆଉ କୌଣସି ଉଚ୍ଚ ଇଂରାଜୀ ବିଦ୍ୟାଳୟ ଥାଆନ୍ତା ଏବଂ ମାତୃଭାଷା ଶିକ୍ଷାର୍ଥ ନର୍ମାଲ ବିଦ୍ୟାଳୟ ପ୍ରତିଷ୍ଠିତ ଥାଆନ୍ତା ତଥାପି ଆମ୍ଭେମାନେ ମରହଟ୍ଟା ଶିକ୍ଷକ ହସ୍ତରେ କୋମଳମତି ଉତ୍କଳ ତନୟ ମାନଙ୍କ ଶିକ୍ଷାଭାର ଦେବାକୁ କେବେହେଁ ମତ ଦିଅନ୍ତୁ ନାହିଁ । ବର୍ତ୍ତମାନ ଏ ସବୁର ପୂର୍ଣ୍ଣ ଅଭାବ ଥିବା ସ୍ଥଳେ ଆମ୍ଭେମାନେ ଚକ୍ଷୁଲଜ୍ଜା ବା ଅନୁରୋଧ ଉପରୋଧରେ ପଡି ଗୋଟାଦେଶର ଅନିଷ୍ଟ କାମନା କରି କଦାପି ମରହଟ୍ଟା ମାନଙ୍କ ପକ୍ଷାବଲମ୍ବନ କରିପାରିବୁନାହିଁ । ଯେଉଁମାନେ ଜାଣିଶୁଣି ପକ୍ଷାବଲମ୍ବନ କରିବେ ସେମାନେ ଦେଶଦ୍ରୋହୀ କୁସନ୍ତାନ ବୋଲି କଥିତ ହେବେ । x x x x " *(୧୩)*

ହିତୈଷିଣୀର ଏ ଦାବୀକୁ ସମ୍ମାନ ଜଣାଇ ଶିକ୍ଷା ବିଭାଗ ଇନ୍‌ସପେକ୍ଟର ଜେନେରାଲ ଏଥର ଓଡ଼ିଆ ନଥିବାରୁ ପଶ୍ଚିମା ଶିକ୍ଷକ ରଖାଗଲା ଏବଂ ଏତଦ୍ ପରେ ସବୁ କ୍ଷେତ୍ରରେ ଓଡ଼ିଆ ରଖାଯିବ ବୋଲି ହିତୈଷିଣୀକୁ ପତ୍ର ଦେଇଥିଲେ । *(୧୪)*

ସଂବଲପୁର ଶିକ୍ଷା ବିଭାଗ ସଂପର୍କରେ ହିତୈଷିଣୀ ବାରଂବାର ଆଲୋକପାତ କରିଛି । ଶୁଦ୍ଧ ପାଠ୍ୟ ପୁସ୍ତକ ପ୍ରଣୟନ, ଦେଶୀୟ ଭାଷାର ଉନ୍ନତି ସାଧନ ତାର ଲକ୍ଷ୍ୟ ଥିଲା । ''ସଂବଲପୁର ଶିକ୍ଷା ବିଭାଗ'' ଶୀର୍ଷକ ସଂବାଦ ଏ ପ୍ରସଙ୍ଗରେ ବିଶେଷ ପ୍ରଶଂସା ଦାବୀ କରେ । ''ସଂବଲପୁର ଶିକ୍ଷା ବିଭାଗ ସମ୍ୱନ୍ଧେ ଆମ୍ଭେମାନେ ଅନେକବାର ଲେଖନୀ ଚାଳନା କରିଅଛୁ । ଅନେକ ବାର ବଂଧୁ ଭାବରେ ଶିକ୍ଷା ବିଭାଗର ଅନେକ ଅଭାବ ଦେଖାଇ ଦେଇଅଛୁଁ । ମାତ୍ର ବଡ ଦୁଃଖର ବିଷୟ ଯେ ତହିଁ ପ୍ରତି ବିଭାଗୀୟ କର୍ମଚାରୀ ବା କର୍ତ୍ତୃପକ୍ଷ କେହି କିଛି ସୁବିଚାର କଲେ ନାହିଁ । x x x x ସଂବଲପୁର ଶିକ୍ଷା ବିଭାଗରେ ପ୍ରଚଳିତ ଥିବା ପାଠ୍ୟପୁସ୍ତକ ଗୁଡିକ ମଧ୍ୟରୁ ପ୍ରାୟ ସମସ୍ତ ଅବିଶୁଦ୍ଧ । ଭାଷା ଖାଣ୍ଟି ଓଡ଼ିଆ ନୁହେଁ । କେତେକ ପୁସ୍ତକ ଇଂରେଜୀ ପୁସ୍ତକର ଅଜ୍ଞ ବ୍ୟକ୍ତିଙ୍କ ଦ୍ୱାରା କଦର୍ଯ୍ୟ ଭାବରେ ଅନୁବାଦ ହୋଇଥିବାରୁ ସେ ସବୁ ଅପ୍ରାଞ୍ଜଳ ଏବଂ ବିବିଧ ଦୋଷାଶ୍ରିତ, ପୁଣି ଏପରି କେତେକ ପୁସ୍ତକ ପାଠ୍ୟରୂପେ ପ୍ରଚଳିତ ଅଛି, ଯାହାକି ଶିକ୍ଷକମାନଙ୍କ ପକ୍ଷେ ସହଜବୋଧ ନୁହଇ । ଏପରି ଅବିଶୁଦ୍ଧ, ଅପ୍ରାଞ୍ଜଳ ଓ ଦୁର୍ବୋଧ ଇଂରେଜୀ ଧରଣର ଓଡ଼ିଆ ପାଠ୍ୟପୁସ୍ତକ ପଠନରେ ବାଳକମାନେ ଓଡ଼ିଆ ଭାଷାରେ ପାରଦର୍ଶିତା ଲାଭ କରିବା ଆଶା କି ଆକାଶ କୁସୁମବତ୍ ଅଳୀକ ନୁହଇ ? x x x ପାଠ୍ୟପୁସ୍ତକ ଇଦୃଶ ଦୂଷିତ ହେତୁ ବିଭାଗୀୟ କର୍ତ୍ତୃପକ୍ଷମାନେ ଦାୟୀ ଅଟନ୍ତି । ସେମାନେ ଯଦ୍ୟପି ପାଠ୍ୟ ନିର୍ବାଚନ ଭାର ଉପଯୁକ୍ତ ବ୍ୟକ୍ତିଙ୍କ ଉପରେ ଅର୍ପଣ କରୁଥାନ୍ତେ, ତେବେ ଇଦୃଶ ଅପାଠ୍ୟ ପୁସ୍ତକ ଆଜି ସୁପାଠ୍ୟରୂପେ ଚଳି ଛାତ୍ରମାନଙ୍କ ପ୍ରାକୃତୋନ୍ନତିର ଅନ୍ତରାୟ ସାଧିତ ହେଉ ନଥାନ୍ତା ।

କେବଳ ପାଠ୍ୟ ପୁସ୍ତକ ଅବିଶୁଦ୍ଧ ହେଲେ ମଧ ଶିକ୍ଷାଦାନ ଏବଂ ତତ୍ତ୍ୱାବଧାରଣ କାର୍ଯ୍ୟ ଉପଯୁକ୍ତ ଉତ୍କଳ ଭାଷାଭିଜ୍ଞ ବ୍ୟକ୍ତିମାନଙ୍କର ହସ୍ତରେ ଥିଲେ କେତେକ ପରିମାଣରେ ସୁଫଳର ଆଶା କରାଯାଇପାରନ୍ତା, ମାତ୍ର ଯେପରି ପାଠ୍ୟପୁସ୍ତକ ସେହିପରି ଶିକ୍ଷକ ତତ୍ତ୍ୱାବଧାରକ ଏପରି ତ୍ରହ୍ୟ ସ୍ପର୍ଶରେ କି କଦାପି ଶୁଭ ଫଳର ଆଶା କରାଯାଇପାରେ ? x x x x ଶୁଣି ସୁଖି ହେଲୁଁ ଯେ ସମ୍ୱଲପୁର ମରିସ ହାଇସ୍କୁଲର ଉତ୍କଳଭାଷା ପାରଂଦର୍ଶୀ, ଉନ୍ନତ ମନା ହେଡମାଷ୍ଟର ବାବୁ ବିଜୟ ଚନ୍ଦ୍ର ମଜୁମଦାର ବି:ଏ: ପ୍ରଚଳିତ ଓଡ଼ିଆ ପାଠ୍ୟ ପୁସ୍ତକର ଅବିଶୁଦ୍ଧତା ସମ୍ୱନ୍ଧେ ବିଭାଗୀୟ ଇନ୍‌ସପେକ୍ଟର ଜେନେରାଲ ସାହେବ ମହୋଦୟଙ୍କ ନିକଟକୁ ଏକ ରିପୋର୍ଟରେ ସମ୍ୱଲପୁର ବାସୀମାନଙ୍କ ପ୍ରକୃତ ହିତୈଷଣାର କାର୍ଯ୍ୟ କରିଅଛନ୍ତି । x x x x ସଂବଲପୁର ହାଇସ୍କୁଲରେ ଶିକ୍ଷକ ପଦରେ ମରହଟ୍ଟା ବଦଳରେ ଜଣେ ଉତ୍କଳଭାଷା ପାରଦର୍ଶୀ ବଙ୍ଗାଳୀ ଶିକ୍ଷକ ନିଯୋଜିତ ହେବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ସୁଖୀ ହୋଇଅଛୁ । ବର୍ତ୍ତମାନ ହାଇସ୍କୁଲ ସମ୍ୱନ୍ଧେ ବକ୍ତବ୍ୟ ଏତିକି ଯେ କ୍ରମରେ ଉକ୍ତ ବିଦ୍ୟାଳୟକୁ ଉତ୍କଳୀ ଶିକ୍ଷକରେ ପୂର୍ଣ୍ଣ ରଖିବା ଉଚିତ ଏବଂ ଓଡ଼ିଆ ଓ ସଂସ୍କୃତ ଭାଷା ଜଣାଇବା ସକାଶେ ଜଣେ ଉପଯୁକ୍ତ ଶିକ୍ଷକ ସତ୍ୱର ନିଯୋଜିତ ହେବା ବାଞ୍ଛନୀୟ ।'' *(୧୫)*

'ଏ ଦେଶର ପାଶ୍ ପରୀକ୍ଷା ଓ ଦେଶବାସୀଙ୍କ କର୍ତ୍ତବ୍ୟ' ଶୀର୍ଷକ ସଂବାଦରେ ବିଶୁଦ୍ଧ ପାଠ୍ୟ ପୁସ୍ତକ ପ୍ରଚଳନ ଓ ଉପଯୁକ୍ତ ପରୀକ୍ଷା ପ୍ରଣାଳୀ ପ୍ରବର୍ତ୍ତନ ଦିଗରେ ଗୁରୁତ୍ୱ ଦିଆଯାଇଛି । ଏଥିପ୍ରତି ଉଦ୍ୟମ କରିବାକୁ ଦେଶ ହିତୈଷୀ ମାନଙ୍କୁ ହିତୈଷିଣୀ ଆହ୍ୱାନ କରିଛି । *(୧୬)*

ଓଡ଼ିଶାରେ ଶିକ୍ଷା ବ୍ୟବସ୍ଥା ଅତି ଅବହେଳିତ ଅବସ୍ଥାରେ ଥିଲା । ଗଡଜାତ ରାଜ୍ୟ ମାନଙ୍କର ଅବସ୍ଥା ଅଧିକ ଶୋଚନୀୟ । ମୋଗଲବନ୍ଦୀ ଅଞ୍ଚଳରେ ଆଧୁନିକ ଶିକ୍ଷାର ବିକାଶ ସାଧିତ ହେଲାବେଳେକୁ ଗଡଜାତ ରାଜ୍ୟ ଗୁଡ଼ିକରୁ ଅଜ୍ଞାନ କାଳୀମା ଦୂରୀଭୂତ ହୋଇ ନଥିଲା । ଅନେକ ଗଡଜାତ ଶାସକଙ୍କ ଧାରଣା ଥିଲା ପ୍ରଜାମାନେ ଶିକ୍ଷିତ ହେଲେ ଶାସକ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବେ । ଅନେକ ଗଡଜାତ ରାଜ୍ୟର ରାଜା ନିଜେ ଅଶିକ୍ଷିତ ଥିଲେ ଏବଂ ପ୍ରଜାଙ୍କୁ ଶିକ୍ଷିତ କରିବାର ସ୍ପୃହା ମଧ୍ୟ ସେମାନଙ୍କର ନଥିଲା । ବାମଣ୍ଡା ରାଜା ଏହାର ଥିଲେ ତୀବ୍ର ବ୍ୟତିକ୍ରମ ।

ମରହଟ୍ଟା ଓ ଇଂରେଜ ଶାସନ କାଳରେ ସଂବଲପୁର ଗଡଜାତ ସମୂହ ବିଭିନ୍ନ ସମୟରେ ବିଭିନ୍ନ ସରକାରଙ୍କ ଅଧିନରେ ଶାସିତ ହୋଉଥିଲା । ଏପରି ରାଜନୈତିକ ଅସ୍ଥିରତା ମଧ୍ୟରେ ଶିକ୍ଷା ଓ ସଭ୍ୟତାର ବିକାଶ ସାଧନ ଅସମ୍ଭବ ହୋଇ ଉଠିଥିଲା । ଏ ଅଞ୍ଚଳ ଓଡ଼ିଆ ଭାଷୀ ହୋଇ ମଧ୍ୟ ଦୀର୍ଘଦିନ ଧରି ହିନ୍ଦୀ ଭାଷୀ ଅଞ୍ଚଳ ଅଧୀନରେ ଶାସିତ ହେଲା । ଓଡ଼ିଆ ଭାଷାର ବିଲୋପ ଚେଷ୍ଟାରେ ପ୍ରାନ୍ତୀୟ ଶାସକବର୍ଗ ଅଧିକ ଉତ୍ସାହ ଦେଖାଇଥିଲେ । ଏପରି ଏକ ପ୍ରତିକୂଳ ବାତାବରଣ ଶିକ୍ଷାର ବିକାଶ ପଥରେ ମୁଖ୍ୟ ପ୍ରତିବନ୍ଧକ ଭାବେ ଦେଖାଦେଇଥିଲା ।

୧୮୭୦ ପର୍ଯ୍ୟନ୍ତ ବାମଣ୍ଡାର ଲୋକେ ଲେଖନୀ ଓ ତାଳପତ୍ର ସାହାଯ୍ୟରେ ଯାବତୀୟ ବିଷୟ ଲିପିବଦ୍ଧ କରୁଥିଲେ । କାଗଜର ବ୍ୟବହାର ପ୍ରାୟ ନଥିଲା କହିଲେ ଚଳେ । ୧୮୭୨ ରେ ବାମଣ୍ଡାରେ ଗୋଟିଏ ନୂତନ ଧରଣର ବିଦ୍ୟାଳୟ ସ୍ଥାପିତ ହେବା ପରେ ଆଧୁନିକ ଶିକ୍ଷାଲୋକ ପ୍ରସାର ଲଭିଥିଲା । ୧୮୯୪ ସୁଦ୍ଧା ୧୩ ଗୋଟି ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ଏହି ସବୁ ବିଦ୍ୟାଳୟରୁ ୯୦ଜଣ ଛାତ୍ର ଉତ୍ତୀର୍ଣ୍ଣ ହୋଇଥିଲେ । ତହିଁ ମଧ୍ୟରୁ ୭୦ଜଣ ଛାତ୍ର ବର୍ତ୍ତମାନ ବାମଣ୍ଡାର ନାନା ସ୍ଥାନରେ ରାଜ କର୍ମଚାରୀ ସ୍ୱରୂପ କାର୍ଯ୍ୟ କରୁଥିବାର ଉତ୍କଳ ଦୀପିକା ପ୍ରକାଶ କରନ୍ତି । *(୧୭)*

୧୮୬୭ ଖ୍ରୀ:ରେ ବାମଣ୍ଡା ରାଜା 'ଫିଉଡେଟରୀ- ଚିଫ୍' ରୂପେ ସନନ୍ଦ ପାଇଥିଲେ । ଯା ଫଳରେ ରାଜ୍ୟର ଅଭ୍ୟନ୍ତରୀଣ ବ୍ୟାପାରରେ ସେ ସ୍ୱାଧୀନ ଭାବରେ ଶାସନ କରିବାର କ୍ଷମତା ଲଭିଥିଲେ । ରାଜ୍ୟର ଶିକ୍ଷା ବିଭାଗର ଉନ୍ନତି କରିବାକୁ ସେ ଯତ୍ନବାନ ହୋଇଥିଲେ । ରାଜବଂଶ ସହିତ ଜନସାଧାରଣଙ୍କ ଉଚ୍ଚଶିକ୍ଷା ନିମନ୍ତେ ଦେବଗଡଠାରେ 'ରାଜକୁମାର ହାଇସ୍କୁଲ' ପ୍ରତିଷ୍ଠା କରିଥିଲେ । ପ୍ରାରମ୍ଭରେ ସ୍କୁଲର ଦୁଇଟି ବିଭାଗ ଥିଲା । ମଧ୍ୟ ଇଂରାଜୀ (Middle English) ଏବଂ ଭର୍ଣ୍ଣାକୁଲାର (Middle vernacular) ଭାବେ ଦୁଇ ବିଭାଗରେ ଶିକ୍ଷା

ଚାଲିଥିଲା । ୧୮୮୬ ବେଳକୁ ଇଂରାଜୀ ବିଭାଗରେ ୩ଜଣ ଏବଂ ଓଡ଼ିଆ ବିଭାଗରେ ୫୨ଜଣ ଛାତ୍ର ଥିଲେ ଏହି ସମୟରେ ବିଜୟ ଚନ୍ଦ୍ର ମଜୁମଦାର ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଛାତ୍ର ସଂଖ୍ୟା ବୃଦ୍ଧି ପାଇଥିଲା । ଏହାର ସୁପରିଚାଳନାରେ ତତ୍କାଳୀନ ପଲିଟିକାଲ ଏଜେଣ୍ଟ ସନ୍ତୋଷ ପ୍ରକାଶ କରିଥିଲେ- "It is encouraging to find so good a school in a feudatory state. I wish other states would be induced to follow the excellent example. x x x"

"xxx It is generally in a flourishing state. The feudatory chief deserves recognition for the public spirit he has displayed in the efficient maintenance of the school" (୧୮)

କେବଳ ବିଦ୍ୟାଳୟ ସ୍ଥାପନ କରିବା ଦ୍ୱାରା କର୍ତ୍ତବ୍ୟ ସଂପାଦନ ହୋଇଗଲା ନୁହେଁ, ବାମଣ୍ଡାରେ ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ ଥିଲା । ପ୍ରାଥମିକ ଶିକ୍ଷା ଅବୈତନିକ ଥିଲା । ଛାତ୍ରମାନଙ୍କ ଅନୁପସ୍ଥିତି ପାଇଁ ଅଭିଭାବକ ମାନଙ୍କୁ ଦଣ୍ଡ ଦିଆଯାଉଥିଲା । ଶିକ୍ଷକ ସମିତି ଗଠନ କରାଯାଇ, ଶିକ୍ଷକ ମାନଙ୍କ ମଧ୍ୟରୁ ସର୍ବୋତ୍କୃଷ୍ଟ ଲେଖକ ମାନଙ୍କୁ ପୁରସ୍କାର ପ୍ରଦାନର ବ୍ୟବସ୍ଥା କରାଯାଇଥିଲା । ତହସିଲଦାର ନାରାୟଣ ଚନ୍ଦ୍ର ଦାସଙ୍କୁ ଛାତ୍ରମାନେ ରୀତିମତ ସ୍କୁଲରେ ଉପସ୍ଥିତ ହେବାର ଉପାୟ ନିର୍ଦ୍ଧାରଣ ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । (୧୯) ରାଜା ଉପଯୁକ୍ତ ଶିକ୍ଷକ ମାନଙ୍କ ପାଇଁ ପୁରସ୍କାର ଘୋଷଣା କରିଥିଲେ । (୨୦) ବାମଣ୍ଡା ଶିକ୍ଷା ବିଭାଗ ରାଜାଙ୍କ ଅଧୀନରେ ଥିଲା । କିନ୍ତୁ ଶିକ୍ଷାର ଉତ୍କର୍ଷତା ସାଧନ ପାଇଁ ରାଜା ବାମଣ୍ଡା ଶିକ୍ଷା ବିଭାଗକୁ ୧୮୯୨ ରେ ସଂବଲପୁର ଶିକ୍ଷା ବିଭାଗ ସହିତ ଯୋଗ କରିଥିଲେ । ସେହିଦିନଠାରୁ ବାମଣ୍ଡାରେ ସମ୍ବଲପୁରର ପ୍ରଚଳିତ ପାଠ୍ୟପୁସ୍ତକ ପ୍ରଚଳିତ ହେଲା ଏବଂ ଇଂରେଜୀ ସ୍କୁଲଟି 'ରାଜକୁମାର ହାଇଇଂଲିଶ ସ୍କୁଲ' ନାମରେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ହେଲା । (୨୧)

ହିତୈଷିଣୀ ପୃଷ୍ଠାରୁ ବାମଣ୍ଡାର ଉଚ୍ଚବିଦ୍ୟାଳୟ, ମନ୍ଦାକିନୀ ବାଳିକା ବିଦ୍ୟାଳୟ, ବ୍ରାହ୍ମ ବିଦ୍ୟାଳୟ ଓ ଅନାର୍ଯ୍ୟସ୍କୁଲ ସଂପର୍କରେ ସବିଶେଷ ବିବରଣୀ ମିଳିଥାଏ । ୧୯୧୦ରେ ରାଜା ସଚ୍ଚିଦାନନ୍ଦଙ୍କ ଦ୍ୱାରା ବ୍ରାହ୍ମ ବିଦ୍ୟାଳୟ ପ୍ରତିଷ୍ଠା ଲଭେ । ଇଂରେଜ ଶିକ୍ଷାର ପ୍ରତିଦ୍ୱନ୍ଦ୍ୱୀ ଏକ ଦେଶୀୟ ବିଦ୍ୟାଳୟ ରୂପେ ଏହା କ୍ରାନ୍ତିକାରୀ ପଦକ୍ଷେପ । ଏଥିରେ ବିଜ୍ଞାନ, ଗଣିତ, ସଂସ୍କୃତ ଭୂଗୋଳ, ଇତିହାସ ସହିତ ପ୍ରାଚୀନ ଓ ଆଧୁନିକ କାବ୍ୟ ଅଳଙ୍କାରାଦି ପାଠ୍ୟରୂପେ ଗୃହୀତ (୨୨) ଏ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ଲିଙ୍ଗରାଜ ପାଣିଗ୍ରାହୀ, ଦିବ୍ୟରାଜ ସିଂହ, କରୁଣାକର ସାହୁ, ବେଣୁଧର ନନ୍ଦ, ଦମୋଦର ମହାପାତ୍ର ପ୍ରମୁଖ ହିତୈଷିଣୀର ନିୟମିତ ଲେଖକ ଥିଲେ । ବାମଣ୍ଡାରେ ନାରୀଶିକ୍ଷା ପ୍ରତି ଅଧିକ ଗୁରୁତ୍ୱ ଦିଆଯାଉଥିଲା । ବାଳିକା ଛାତ୍ରୀ ମାନଙ୍କ ମଧ୍ୟରୁ ସର୍ବଶ୍ରେଷ୍ଠ ଛାତ୍ରୀଙ୍କୁ ସ୍ୱର୍ଣ୍ଣ ପଦକ ପ୍ରଦାନ କରାଯାଉଥିଲା । ଏ ପ୍ରସଙ୍ଗରେ ହିତୈଷିଣୀ ସଂପାଦକ

ଦୀନବଂଧୁ ଗଡ଼ନାୟକଙ୍କ କନ୍ୟା ସୁଲୋଚନାକୁ ସ୍ମରଣ କରାଯାଇ ପାରେ । ସେ ପ୍ରଥମ ଉତ୍ତୀର୍ଣ୍ଣା ଭର୍ଣ୍ଣାକୁଲାର ରୂପେ ୧୯୦୯ରେ ସ୍ୱର୍ଣ୍ଣପଦକ ପାଇଥିଲେ । *(୨୩)*

ବାମଣ୍ଡା ତଥା ସଂବଲପୁର ଶିକ୍ଷା ବିଭାଗର ସଂସ୍କାର ଦିଗରେ ଉଦ୍ୟମଶୀଳ ହିତୈଷିଣୀ ଓଡ଼ିଶାର ଶିକ୍ଷା ବିଭାଗପ୍ରତି ମଧ୍ୟ ସମୁଚିତ ଧ୍ୟାନ ଦେଇଥିଲା । କଟକର ନର୍ମାଲ ସ୍କୁଲ ସଂପର୍କରେ ଅନେକ ବାର ହିତୈଷିଣୀ ଆଶଙ୍କା ପ୍ରକାଶ କରିଛି । ୧୮୬୩ରେ ପ୍ରତିଷ୍ଠିତ ନର୍ମାଲସ୍କୁଲ ୧୮୬୯ ରେ ପୁନର୍ଗଠିତ ହୋଇଥିଲା । ପଣ୍ଡିତ ଟ୍ରେନିଂ କ୍ଲାସ ଓ ଗୁରୁ ଟ୍ରେନିଂ କ୍ଲାସ ରୂପେ ଦୁଇ ଭାଗରେ ଏହା ବିଭକ୍ତ ଥିଲା । ପଣ୍ଡିତ ବିଭାଗ ପାଇଁ ଦୁଇବର୍ଷର ଓ ଗୁରୁଟ୍ରେନିଂ ବିଭାଗ ପାଇଁ ଏକ ବର୍ଷିଆ ପାଠ୍ୟକ୍ରମ ନିର୍ଦ୍ଧାରିତ ହୋଇଥିଲା *(୨୪)* ବିଶ୍ୱନାଥ କର କଟକ ନର୍ମାଲ ସ୍କୁଲର ସଂସ୍କାର ସଂପର୍କେ ଏହାର ଦୋଷଗୁଣାଦି ଦର୍ଶାଇଥିଲେ । *(୨୫)*

ସେ ସମୟର ଶିକ୍ଷାଦାନ ପଦ୍ଧତି, ପାଠ୍ୟ ପୁସ୍ତକ ନିର୍ବାଚନରେ ଅବହେଳାକୁ ହିତୈଷିଣୀ ସମାଲୋଚନା କରିଥିଲା । ଶିକ୍ଷକଙ୍କୁ ଛାତ୍ର ପଚାରିଲା, ପଣ୍ଡିତ ମହାଶୟ ଏଥିରେ ଲେଖା ଅଛି ପୃଥିବୀ ଶୂନ୍ୟରେ ଅଛି ଓ ସୂର୍ଯ୍ୟ ଚାରିପଟେ ଘୂରୁଅଛି । ମାତ୍ର ପୁରାଣରେ ଅଛି ଏହା ସ୍ଥିର । ବାସୁକୀ ଏହାକୁ ମୁଣ୍ଡାଇ ଅଛି । ପଣ୍ଡିତ ମହାଶୟ ଉତ୍ତର ଦେଲେ-ମୂର୍ଖ, ପୁରାଣ କି ମିଥ୍ୟା, ହୋଇପାରେ ? ଏଥିରେ ଯାହା ଲେଖା ଅଛି ସେ ସମସ୍ତ ପାଶ କରିବା ପାଇଁ କଣ୍ଠସ୍ଥ କରିଯାଅ ।" ଏହା ହିଁ ଥିଲା ସେ ସମୟରେ ଶିକ୍ଷାଦାନ ପଦ୍ଧତି । ଏ ପଦ୍ଧତି ପ୍ରତି କଟୁ ମନ୍ତବ୍ୟ ପ୍ରଦାନ କରିଥିଲା ହିତୈଷିଣୀ । *(୨୬)*

ଇଂରେଜୀରେ ବିଭିନ୍ନ ସ୍କୁଲରେ ଅଙ୍କ ଶିକ୍ଷା ଦିଆଯାଉଥିବାରୁ ହିତୈଷିଣୀ ମାତୃଭାଷାରେ ଶିକ୍ଷାଦାନ ପ୍ରତି ଗୁରୁତ୍ୱ ପ୍ରଦାନ କରିଛି । "ଗଞ୍ଜାମର ଦକ୍ଷିଣାଞ୍ଚଳ କଥାଦୂରେ ଥାଉ ଓଡ଼ିଆ ବହୁଳ ଉତ୍ତରାଞ୍ଚଳସ୍ଥ କି ଏଲିମେଣ୍ଟାରୀ ସ୍କୁଲ, କି ବୋର୍ଡସ୍କୁଲ ସମସ୍ତ ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଶିକ୍ଷକମାନେ ଥାଇ ସୁଦ୍ଧା, ଓଡ଼ିଆ ଭାଷା ଶିକ୍ଷାଦାନ ସଂଗେ ସଂଗେ ଇଂରାଜୀ ଅଙ୍କ ଶିକ୍ଷା ଦେଇଥାନ୍ତି । ଓଡ଼ିଆ ଅଙ୍କଶିକ୍ଷା କୌଣସି ସମୟେ ଦିଅନ୍ତି ନାହିଁ । ହାୟ ଏହା କି ଦୁଃଖର କଥା ? ପୁଣି ନିମ୍ନ ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଅଙ୍କ ବ୍ୟବହାର କରିବାକୁ ବିଭାଗୀୟ ଉଚ୍ଚ କର୍ମଚାରୀଙ୍କ କିଛି ଆପତ୍ତି ଥିଲା ପରି ବୋଧ ହୁଏ ନାହିଁ ।" *(୨୭)*

ହିତୈଷିଣୀ ଆଜୀବନ ଶୁଦ୍ଧ ଶିକ୍ଷା ପ୍ରଣାଳୀର ଆବାହନ କରିଛି । ସାରା ଓଡ଼ିଶାରେ ଏକ ମାନକ ଓଡ଼ିଆ ଭାଷାର ପାଠ୍ୟକ୍ରମ ପ୍ରଚଳନ ଦିଗରେ ଏହା ଗୁରୁତ୍ୱ ଦେଇଛି । ହିତୈଷିଣୀର ସାମଗ୍ରିକ ଅଧ୍ୟୟନରୁ ସ୍ପଷ୍ଟ ହୁଏ ଏହା ଆଦର୍ଶବାଦୀ ଶିକ୍ଷା ନୀତିର ପକ୍ଷପାତି ଥିଲା ।

ହିତୈଷିଣୀ ଶିକ୍ଷା ପ୍ରତି ଜନସଚେତନତା ସୃଷ୍ଟି ପାଇଁ ବିଶ୍ୱର ବିଭିନ୍ନ ସ୍ଥାନରେ ବିଦ୍ୟାଳୟ ଅଧ୍ୟାପକ ଓ ଛାତ୍ର ସଂଖ୍ୟା ପ୍ରଦାନ କରୁଥିଲା । ଏଣ୍ଟ୍ରାନ୍ସ ପରୀକ୍ଷା ଫଳକୁ ଗୌରବର ସହ ପ୍ରକାଶ କରୁଥିଲା । ସମଗ୍ର ଭାରତର ସ୍କୁଲ ସଂଖ୍ୟା, ବିଭିନ୍ନ ସ୍ଥାନରେ ବୈଷୟିକ ବିଦ୍ୟାଳୟ

ପ୍ରତିଷ୍ଠା, ନାରୀଶିକ୍ଷା ଉପରେ ଦେଶର ବିଭିନ୍ନ ସ୍ଥାନରେ ସଂବାଦ ପ୍ରକାଶ ପାଉଥିଲା । କେବଳ ସଂବାଦ ପରିବେଷଣ କରି ହିତୈଷିଣୀ ନିଜର କର୍ତ୍ତବ୍ୟ ସଂପାଦନ କରୁ ନଥିଲା, ବରଂ ପ୍ରତି ସଂବାଦ ସହିତ ନିଜର ଗଠନ ମୂଳକ ମନ୍ତବ୍ୟ ପ୍ରଦାନ କରୁଥିଲା । ନୈଶ୍ୟ ବିଦ୍ୟାଳୟ, ବାଳିକା ବିଦ୍ୟାଳୟ ପ୍ରତିଷ୍ଠାକୁ ଗୌରବର ବିଷୟ ବୋଲି ବିଚାର କରାଯାଇଛି । ନାରୀ ମାନଙ୍କୁ ରାଷ୍ଟ୍ର ନିର୍ମାଣର ଅଙ୍ଗୀଭୂତ କରିବା ପାଇଁ କୁସଂସ୍କାର ଦୂରୀକରଣ ଓ ସତ୍ ଶିକ୍ଷାର ବ୍ୟାପକ ପ୍ରଚାର ଓ ପ୍ରସାର ଉପରେ ହିତୈଷିଣୀ ଗୁରୁତ୍ୱ ଦେଇଛି । ନାରୀଶିକ୍ଷା ଉପରେ ରାଶି ରାଶି ପ୍ରବନ୍ଧ ଏଥିରେ ପ୍ରକାଶିତ । ଓଡ଼ିଶାରେ ନାରୀଶିକ୍ଷାର ଅଧୋଗତି ପାଇଁ ହିତୈଷିଣୀ ଦୁଃଖ ପ୍ରକାଶ କରିଛି ଏବଂ ନାରୀ ପ୍ରଗତି ପାଇଁ ବିଭିନ୍ନ ଦୃଷ୍ଟାନ୍ତ ସହିତ ଉଦ୍ୟମ କରିଛି । ଶିକ୍ଷାକୁ ସଭ୍ୟତାର ଚାବିକାଠି ସ୍ୱୀକାର କରୁଥିବା ହିତୈଷିଣୀର ଶିକ୍ଷା କ୍ଷେତ୍ରକୁ ଅବଦାନ ଅନୁପମ ଓ ଅତୁଳନୀୟ ।

## ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ :

ଭାଷା ଭାବର ଉତ୍ସ । ସଂସ୍କୃତିର ବାହକ । ଜାତୀୟ ଜୀବନକୁ ଏକତାସୂତ୍ରରେ ବାଂଧିବାକୁ ଭାଷା ସାହାଯ୍ୟକରେ । ସଂସ୍କୃତିର ବାହକ ରୂପେ ଭାଷା ସାହିତ୍ୟର ରୂପନିଏ । ସାହିତ୍ୟ ସମାଜକୁ ଉଚିତ ଦିଗ୍‌ଦର୍ଶନ ଦିଏ । ସାହିତ୍ୟର ଉନ୍ନତି ସହିତ ଜାତିର ଉନ୍ନତି ନିହିତ ।

ଇଂରେଜ ଶାସନ ବିରୁଦ୍ଧରେ ପ୍ରଥମ ପ୍ରତିବାଦର ସ୍ୱର ୧୮୧୭ ପାଇକ ବିଦ୍ରୋହ ମାଧମରେ ସଂଘଟିତ ହେଲା । ଏ ବିଦ୍ରୋହକୁ ଅକ୍ତିଆରକୁ ଆଣିବା ପରେ ଇଂରେଜ ସରକାର ସ୍ୱାଧୀନଚେତା, ଦେଶଭକ୍ତ, ରାଜଭକ୍ତ ଓଡ଼ିଆ ମାନଙ୍କୁ ଭୟ ଘୃଣା, ଓ ଅବିଶ୍ୱାସ କରିବାକୁ ଲାଗିଲେ । ଅନ୍ୟ ପକ୍ଷରେ ଅଣଓଡ଼ିଆ କର୍ମଚାରୀମାନେ ସରକାରଙ୍କ ବିଶ୍ୱାସଭାଜନ ହେଲେ । ଏହି ଅବିଶ୍ୱାସର ପରିଣତି ସ୍ୱରୂପ 'ନୂତନ ରୀତିର ଭୂରାଜସ୍ୱ ନିର୍ଦ୍ଧାରଣ ଓ କୁଖ୍ୟାତ ସୂର୍ଯ୍ୟାସ୍ତ ନିୟମ ଓଡ଼ିଶାର ସମଗ୍ର ଉପକୂଳାଞ୍ଚଳର ସୁପ୍ରାଚୀନ ଖଣ୍ଡାୟତ ଗୋଷ୍ଠୀଙ୍କୁ ରାତି ପାହିଲା ବେଳକୁ ଉତ୍ପାଟିତ କରିଦେଲା କେବଳ ନୁହେଁ ଓଡ଼ିଶାର ସେଦିନ ପର୍ଯ୍ୟନ୍ତ ସମୃଦ୍ଧ କୃଷକ ଜାତିକୁ ପରିଣତ କରିଦେଲା ଏକ କୁଲି ଗୋଷ୍ଠୀରେ ।' *(୨୮)*

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଐତିହ୍ୟସଂପନ୍ନ ଓଡ଼ିଆ ଜାତି କିପରି ସ୍ଥାଣୁ, ହୀନବୀର୍ଯ୍ୟ ଓ ମୁମୂର୍ଷୁ ଅବସ୍ଥାରେ ଆତ୍ମ ପରିଚୟ ହରାଇ ବସିଲା ତାହା ହିଁ ଏକ ନିଷ୍ଠୁର ଇତିହାସ । ଇଂରେଜମାନେ ଓଡ଼ିଶା ଅଧିକାର କଲା ପରେ ଶାସନର ସୁବିଧା ପାଇଁ ଓଡ଼ିଶାର ଦକ୍ଷିଣାଂଶ ମାନ୍ଦ୍ରାଜ ପ୍ରେସିଡେନ୍‌ସୀ ସହିତ, ଉପକୂଳ ଅଞ୍ଚଳ ବଙ୍ଗଳା ସହିତ ଓ ପଶ୍ଚିମ ଭାଗ ମଧ୍ୟପ୍ରଦେଶ ସହିତ ସଂଯୁକ୍ତ କରିଥିଲେ । *(୨୯)* ଓଡ଼ିଶା ବିଖଣ୍ଡିତ ହୋଇ ବିଭିନ୍ନ ପ୍ରାନ୍ତୀୟ ଭାଷାର ଚକ୍ରାନ୍ତରେ ନିଜର ସ୍ଥିତି ହରାଇ ବସିଲା । ଏହାକୁ ଦୃଢ଼ କଣ୍ଠରେ ପ୍ରତିବାଦ ଜଣାଇ ଦୀପିକା ଘୋଷଣା

କଲେ "ବର୍ତ୍ତମାନ ଉତ୍କଳଭାଷା ତିନିଥେଣିଆ କାକୁଡି ବାଡି ପ୍ରାୟ ତୁଛାକୁ କ୍ଷତିଗ୍ରସ୍ତ ହେଉଅଛି । ଏହାର ରକ୍ଷକ ତିନି ଗଭର୍ଣ୍ଣମେଣ୍ଟ ହୋଇଅଛନ୍ତି, ଏକ ଭାଗ ବଙ୍ଗଳା ଗବର୍ଣ୍ଣମେଣ୍ଟ ହସ୍ତେ, ଏକ ଭାଗ ମଧ୍ୟପ୍ରଦେଶ ଗବର୍ଣ୍ଣମେଣ୍ଟ ହସ୍ତେ ଏବଂ ଅନ୍ୟ ଏକ ଭାଗ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ହସ୍ତେ ପଡିବାରୁ ଏହାର ସର୍ବାଙ୍ଗ ସମାନ ରୂପେ ଗଠନ ହୋଇ ପାରୁନାହିଁ । ଏକ ଏକ ସ୍ଥାନରେ ଏକ ଏକ ପ୍ରଥା ପ୍ରଚଳିତ ଏବଂ ଏକ ଏକ ପ୍ରକାର ପୁସ୍ତକ ପଠିତ ହୁଅଇ । କେଉଁ ନିୟମ ଭଲ ଅବା ମନ୍ଦ ଜାଣିବାର ଉପାୟ ନାହିଁ । ସୁତରାଂ ଉତ୍କଳ ଭାଷା ଦୁଇ ଘର କୁଣିଆ ହୋଇ ଉପବାସ ଶୋଉଅଛି । କେହି ଏହାର ଚର୍ଚ୍ଚା କରିବାକୁ ନାହିଁ । ଏ ରୂପ ଅବସ୍ଥା ଅତି ଶୋଚନୀୟ ଓ ଆମ୍ଭମାନଙ୍କ ମତରେ ଶୀଘ୍ର ଏହାର ପ୍ରତିକାର କରିବା ଉଚିତ ।" *(୩୦)*

ସମଗ୍ର ଦେଶରେ ଇଂରେଜୀ ଶିକ୍ଷାର ପ୍ରଚଳନ ସହିତ ଦେଶୀୟ ବିଦ୍ୟାଳୟ ମାନ ସ୍ଥାପିତ ହେଲା । ଓଡ଼ିଶାର ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗଳା ଭାଷା, ବଙ୍ଗଳା ପୁସ୍ତକ ଓ ବଙ୍ଗାଳୀ ଶିକ୍ଷକଙ୍କର ପ୍ରଭାବ ଅଧିକ ଥିଲା । ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର ଅଭାବ ଦର୍ଶାଇ ଓଡ଼ିଶାରେ ବଙ୍ଗଳା ଭାଷାର ଶିକ୍ଷାକୁ ସମର୍ଥନ ଦିଆ ଯାଇଥିଲା । କିନ୍ତୁ ଓଡ଼ିଆରେ ପାଠ୍ୟପୁସ୍ତକର ରଚନା ପ୍ରତି ଗୁରୁତ୍ୱ ଦିଆଯାଇନଥିଲା ବା ଦୃଢ଼ ପଦକ୍ଷେପ ମଧ୍ୟ ଗ୍ରହଣ କରାଯାଇନଥିଲା । *(୩୧)*

ପ୍ରତ୍ନତାତ୍ତ୍ୱିକ ରାଜେନ୍ଦ୍ର ଲାଲ ମିତ୍ର କଟକ ଡିବେଟିଂ କ୍ଲବରେ ୧୮୬୮ ଡିସେମ୍ବର ମାସରେ ଏକ ବକ୍ତୃତା ଦେଇ ଓଡ଼ିଶାରେ ବଙ୍ଗ ଭାଷା ପ୍ରଚଳନ ପ୍ରତି ଗୁରୁତ୍ୱ ପ୍ରଦାନ କରିଥିଲେ । ରାଜେନ୍ଦ୍ରଲାଲ ମିତ୍ରଙ୍କ ମତରେ "ଉତ୍କଳର ଯଥାର୍ଥ ହୀତାକାଂକ୍ଷୀ ଯେ ହେବ ସେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ବଙ୍ଗ ଭାଷା ପ୍ରଚଳନ କରିବାର ଚେଷ୍ଟା କରିବ କାରଣ ତାହାଙ୍କ ମତରେ ଯେତେକାଳ ଉତ୍କଳ ଭାଷା ଉଠି ପାରିନାହିଁ ସେତେକାଳ ଏ ଦେଶରେ ଉନ୍ନତି ହେବା ଅସମ୍ଭବ ।" *(୩୨)* ରାଜେନ୍ଦ୍ର ଲାଲଙ୍କ ଏ ମତକୁ ଦୀପିକା ପୃଷ୍ଠାରେ ଗୌରୀଶଙ୍କର ନିଷ୍ଠୁର ଭାବେ ଖଣ୍ଡନ କରିଛନ୍ତି । ଉଲ୍ଲିଖିତ "ତିନିଥେଣିଆ କାକୁଡି ବାଡି ପ୍ରାୟ ତୁଛାକୁ କ୍ଷତିଗ୍ରସ୍ତ" ହୋଇଥିବାର ଦର୍ଶାଇ ପ୍ରତିକାର ପନ୍ଥା ମଧ୍ୟ ନିର୍ଦ୍ଦେଶ କରିଛନ୍ତି । *(୩୩)* ଦୀପିକାର ଉକ୍ତ ସଂଖ୍ୟାରେ ରାଜେନ୍ଦ୍ର ବାବୁଙ୍କ ଅନେକ ଅନୁଗାମୀଙ୍କୁ ମଧ୍ୟ ଇଙ୍ଗିତ କରାଯାଇଛି । 'ରାଜେନ୍ଦ୍ର ବାବୁଙ୍କ ପ୍ରେରଣା ଓ ପ୍ରୋତ୍ସାହନରେ ଓଡ଼ିଆ ଭାଷାକୁ ପ୍ରକାଶ୍ୟ ବିରୋଧ କରି ଓଡ଼ିଶାର ବିଦ୍ୟାଳୟରେ ବଙ୍ଗଳା ଭାଷା ପ୍ରଚଳନ ସମର୍ଥନ ପାଇଁ କଟକର କାଳିପଦ ବନ୍ଦୋପାଧ୍ୟାୟଙ୍କ ସଂପାଦନାରେ ୧୮୬୯ ଫେବୃୟାରୀ ୧୬ରେ ଓଡ଼ିଆ ଭାଷାରେ "ଉତ୍କଳ ହିତୈଷିଣୀ" ଏବଂ ଫେବୃୟାରୀ ୨୨ ତାରିଖରେ ଇଂରାଜୀ ଭାଷାରେ "କଟକ ଷ୍ଟାର" ନାମକ ପତ୍ରିକା ଦ୍ୱୟ କଟକ ସୋସାଇଟି ପକ୍ଷରୁ ଆତ୍ମପ୍ରକାଶ କଲା । 'କଟକ ଷ୍ଟାର' ପ୍ରକାଶନର ଉଦ୍ଦେଶ୍ୟ ବିଦେଶୀୟ ଶାସନକର୍ତ୍ତା ଓ ପ୍ରଶାସକମାନଙ୍କ ଦୃଷ୍ଟି ଆକର୍ଷଣ କରି ଓଡ଼ିଆ ଭାଷାର 'ଦୀପିକା' ଓ 'ବାଲେଶ୍ୱର

ସଂବାଦ ବାହିକା'ର ପ୍ରଭାବକୁ କ୍ଷୁର୍ଣ୍ଣ କରିବା । ପୁଣି ରାଜେନ୍ଦ୍ରଲାଲଙ୍କ ମତାନୁସରଣରେ ଓଡ଼ିଶାରୁ ଓଡ଼ିଆ ଭାଷା ଉଠାଇ ଓଡ଼ିଶାର ତଥାକଥିତ "ହିତ" କରିବା ଲକ୍ଷ୍ୟରେ ହିଁ ବୋଧହୁଏ ଅନ୍ୟ ପତ୍ରିକାର ନାମ "ଉତ୍କଳ ହିତୈଷିଣୀ" ଦିଆଯାଇଥିଲା । *(୩୪)* ରାଜେନ୍ଦ୍ର ବାବୁଙ୍କ ଦ୍ୱାରା ଉତ୍‌ଥାପିତ ପ୍ରସଙ୍ଗକୁ ସମର୍ଥନ କରି 'କଟକଷ୍ଟାର'ରେ ଉମାଚରଣ ହାଲଦାର ବଙ୍ଗ ଅକ୍ଷରରେ ଉତ୍କଳ ଭାଷା ଲେଖିବା ପାଇଁ ପରାମର୍ଶ ଦେଇଥିଲେ । *(୩୫)* ତାଙ୍କର ପରାମର୍ଶ ଦୀପିକାର ଗାତ୍ରଦାହ କରିଥିଲା । ହାଲଦାରଙ୍କୁ ନିଜର ଶାଣିତ ବକ୍ତବ୍ୟ ଦ୍ୱାରା ସମାଲୋଚନା କରିବାକୁ ଦୀପିକା ଆଗେଇ ଆସିଥିଲା । ବଙ୍ଗ ଅକ୍ଷର ବଡ଼ ଶୋଭାବନ ଯୁକ୍ତିକୁ ଦୀପିକା ଵ୍ୟଙ୍ଗାତ୍ମକ ଭାବେ ବ୍ୟଙ୍ଗ କରିଛି । ଓଡ଼ିଆ ଅକ୍ଷର ଗୋଲାକାର, ବଙ୍ଗଳା ତ୍ରିକୋଣ ବା ଅର୍ଦ୍ଧଗୋଲ ଏହା ତାହାଙ୍କୁ ଗଜମୁକ୍ତା ହାରରେ ହୀରକ ଖଚିତ ପଦକ ପ୍ରାୟ ବଡ ଜାଜ୍ୱଲ୍ୟମାନ ଦିଶିଲା । ଅଥବା ବାବୁଙ୍କର ବୈଷ୍ଣବୀ ଭାବ ହୋଇଥିବ ଯେ ତ୍ରିଭଙ୍ଗୀ ରୂପ ଦେଖି, ଗୋପ କହ୍ନାଇର କଥା ଅକସ୍ମାତ୍ ମନରେ ଚେତିଲାରୁ ପ୍ରେମରେ ପୂର୍ଣ୍ଣ ହେଲେ । ଯେବେ ଏ ରୂପ କିଛି ନ ହୋଇଥିବ, ତେବେ ବାବୁ କାହିଁକି ଏ ଦୁଇ ଅକ୍ଷରକୁ ଦେଖି ଦେଖି ବଙ୍ଗଳାକୁ ସୁନ୍ଦର ମନରେ କରି ହଠାତ୍ ଚମକି ପଡି କହିଲେ କି ଯେବେ ବଙ୍ଗଳା ଅକ୍ଷର ଏତେ ସୁନ୍ଦର, ତେବେ ଓଡ଼ିଆ ଭାଷା ଏଥିରେ କାହିଁକି ଲେଖା ନ ହେବ ? ବାବୁ ଯେ ଚମକିଥିବେ ଏଥିରେ ସନ୍ଦେହ ନାହିଁ । କାରଣ ଆମ୍ଭେମାନେ ଶୁଣିଲାକ୍ଷଣି ଚମତ୍କାର ହେଲୁ । *(୩୬)* ବାଲେଶ୍ୱର ସରକାରୀ ସ୍କୁଲର ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ "ଉଡିୟା ସ୍ୱତନ୍ତ୍ର ଭାଷା ନହେ" ଓଡ଼ିଆ ଭାଷାପ୍ରତି ପ୍ରଚଣ୍ଡ ଆକ୍ରମଣ । ସରକାରୀ ସିଦ୍ଧାନ୍ତ ବଙ୍ଗ ଭାଷା ସପକ୍ଷବାଦୀଙ୍କୁ ଆଦୌ ସନ୍ତୁଷ୍ଟ କରିପାରିନଥିଲା । ସରକାର ଓଡ଼ିଶାରେ ଓଡ଼ିଆ ଭାଷାର ପ୍ରଚଳନର ନୀତିଗତ ସ୍ୱୀକୃତି ଦେବାରୁ ବଙ୍ଗଳା ଚକ୍ରାନ୍ତକାରୀଙ୍କ ଉଦ୍ୟମ ପଣ୍ଡହେଲା । *(୩୭)* ୧୮୫୭ ଖ୍ରୀ:ରେ ଇନ୍‌ସପେକ୍ଟର ଇ:ରୋର ବଙ୍ଗଳା ପାଠ୍ୟପୁସ୍ତକ ପରିବର୍ତ୍ତେ ଓଡ଼ିଆ ପାଠ୍ୟ ପୁସ୍ତକ ପ୍ରକାଶନକୁ ଗୁରୁତ୍ୱ ଦେଇଥିଲେ ଓ ଟି. ରେଭେନ୍‌ସା ଓଡ଼ିଆ ଭାଷା ସପକ୍ଷରେ ଦୃଢ଼ମତ ଦେଇଥିଲେ । *(୩୮)* ତତ୍‌କାଳୀନ କମିଶନର ଏଫ: ଗୋଲସ୍‌ବରୀ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗଳା ଭାଷା ପ୍ରଚଳନକୁ ସ୍ୱୀକୃତି ଦେଇ ନ ଥିଲେ । *(୩୯)* ଫଳରେ ୧୮୭୦ ଜାନୁୟାରୀ ମାସରେ ସରକାରୀ ସିଦ୍ଧାନ୍ତର ପ୍ରତିବାଦ ସ୍ୱରୂପ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟେ'(୧୮୭୦) ପୁସ୍ତକ ପ୍ରକାଶ ପାଇଲା । ପୁସ୍ତକର ଆଭିମୁଖ୍ୟ ସଂପର୍କରେ କାନ୍ତିଚନ୍ଦ୍ର ଲେଖିଥିଲେ,-"ଓଡ଼ିଶାରେ ବର୍ତ୍ତମାନ ଆଉ ବଙ୍ଗଳା ଭାଷା ଚାଲୁ କରାଯାଉ ନାହିଁ । ବିଦ୍ୟାଳୟ କିମ୍ବା ଅଦାଲତ ସବୁଆଡ଼େ ଓଡ଼ିଆରେ ଲେଖାଯାଉଛି ଓ କୁହାଯାଉଛି । ଦ୍ୱିତୀୟତଃ ଗଭର୍ଣ୍ଣମେଣ୍ଟ ବିଦ୍ୟାଳୟ ସବୁ ସ୍ଥାପିତ ହେବାଠାରୁ ଏହି ସବୁ ଅନୁଷ୍ଠାନରେ ବଙ୍ଗଳା ଭାଷା ପ୍ରଚଳନ ଥିଲା, ଏବେ ମାନ୍ୟବର କମିସନ ସାହେବଙ୍କ ବିଜ୍ଞାପନୀ ଅନୁସାରେ ବଙ୍ଗଳା ଉଠିଯାଇ ଓଡିଆ ଭାଷା ପ୍ରଚଳିତ ହୋଇଛି । ଶ୍ରୀଯୁକ୍ତ କମିସନ୍‌ର ଓ କେତେକ ମିଶନାରୀଙ୍କ ମନରେ ଓଡ଼ିଆ ଏକ ସ୍ୱତନ୍ତ୍ର

ଭାଷା ଏପରି ପ୍ରତୀତି ଜନ୍ମିଛି । ଯେତେବେଳେ ସେମାନେ ''ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା, ଏପରି ସ୍ଥିର କରିଛନ୍ତି, ଏବଂ ଯେତେବେଳେ ବଙ୍ଗଳା ବହିଗୁଡିକ ଓଡ଼ିଶାର ପାଠଶାଳା ମାନଙ୍କରୁ ନିର୍ବାସିତ ହୋଇଛି, ସେତେବେଳେ ଅନେକଙ୍କର ସନ୍ଦେହ ଜାତ କରେ ଯେ ବୋଧହୁଏ ଓଡ଼ିଆ ଓଡ଼ିଶାରେ ପ୍ରଚଳିତ ହେଲା । କିନ୍ତୁ ମୋର କ୍ଷୁଦ୍ର ବୁଦ୍ଧିରେ ଓଡ଼ିଆ ସ୍ୱତନ୍ତ୍ର ଭାଷା ବୋଲି ପ୍ରତୀତ ହୁଏନାହିଁ । ଓଡ଼ିଆ ସ୍ୱତନ୍ତ୍ର ଭାଷାନୁହେଁ, ଏହା ବଙ୍ଗଳା ।'' *(୪୦)*

ଏ ପୁସ୍ତକଟି କାନ୍ତିଚନ୍ଦ୍ର ରାଜେନ୍ଦ୍ରଲାଲ ମିତ୍ରଙ୍କୁ ଉତ୍ସର୍ଗ କରିଛନ୍ତି । ବିଜ୍ଞାପନରେ କୁହାଯାଇଛି ପୁସ୍ତକଟିର କେତେକ ସ୍ଥାନରେ ରାଜେନ୍ଦ୍ରଲାଲ ପରିବର୍ତ୍ତନ କରିଛନ୍ତି ଏବଂ ପୁସ୍ତକଟି ପ୍ରକାଶଯୋଗ୍ୟ ବୋଲି ମତ ଦେବାପରେ ପ୍ରକାଶିତ ହୋଇଛି ।*(୪୧)* ପୁସ୍ତକର ପ୍ରାପ୍ତିସ୍ୱୀକାର କରି ଉତ୍କଳଦୀପିକା କାନ୍ତିଚନ୍ଦ୍ରଙ୍କ ଉଦ୍ୟମକୁ ସମାଲୋଚନା କରିଛନ୍ତି । ତାଙ୍କର ଅମୂଳକ ଯୁକ୍ତିକୁ ଖଣ୍ଡନ କରି ଦୀପିକା ଓଡ଼ିଆ ଭାଷାର ଐତିହ୍ୟ ପ୍ରତିପାଦନରେ ସଫଳ ହୋଇଛି । *(୪୨)*

ଓଡ଼ିଆ ଭାଷା ପ୍ରତି ଦେଖାଦେଇଥିବା ଏ ସଂକଟ ବିରୁଦ୍ଧରେ ସାମଗ୍ରିକ ଓଡ଼ିଆ ଚେତନା ସଂଗ୍ରାମ କରିଥିଲା । ଏହି ଭାଷା ଆନ୍ଦୋଳନ ଉତ୍କଳ ଦୀପିକା ପୃଷ୍ଠାରେ ବହୁ ପ୍ରସାରୀ ହୋଇଥିଲା । ଏଥିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ଗୌରୀଶଙ୍କର ରାୟ, ରାଜା ବୈକୁଣ୍ଠନାଥ ଦେ, ରାଧାନାଥ ରାୟ, ରାମଶଙ୍କର ରାୟ, ପ୍ୟାରୀମୋହନ ଆଚାର୍ଯ୍ୟ, ଫକୀର ମୋହନ ସେନାପତି, ସାର୍ ବାସୁଦେବ ସୁଢଳଦେବ, ନୀଳମଣି ବିଦ୍ୟାରତ୍ନ ପ୍ରମୁଖ ଯୁଗସ୍ରଷ୍ଟାଗଣ । ଉତ୍କଳ ଦୀପିକା ସହିତ 'ସମ୍ବାଦ ବାହିକା' ଓ ସଂବଲପୁର ହିତୈଷିଣୀ' ପତ୍ରିକା ଜନ ଜାଗରଣ ସୃଷ୍ଟିରେ ଅକ୍ଳାନ୍ତ ଉଦ୍ୟମ କରିଥିଲା । ସୁସମାଲୋଚକ ନଟବର ସାମନ୍ତରାୟଙ୍କ ମତରେ ଏ ଭାଷା ଆନ୍ଦୋଳନ ତିରିଶ ବର୍ଷ ଇତିହାସର ଚରମ ପରିଣତି ଓ ପର ତିରିଶ ବର୍ଷର ଓଡ଼ିଆ ସାହିତ୍ୟ ହେଉଛି ଏ ଆନ୍ଦୋଳନର ଏକ ଅବିସ୍ମରଣୀୟ ଅବଦାନ *(୪୩)* ଏ ଆନ୍ଦୋଳନ ଫଳରେ ସୁପ୍ତ ଓଡ଼ିଆ ପ୍ରାଣରେ 'ଓଡ଼ିଶା କେବଳ ଓଡ଼ିଆଙ୍କ ପାଇଁ, ଚେତନା ଜାଗରୂକ ହୋଇଥିଲା *(୪୪)* ୧୮୬୯ ଖ୍ରୀ:ରେ ଓଡ଼ିଶାର ସ୍କୁଲମାନଙ୍କରେ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷା ଦିଆଯିବ ବୋଲି ବଙ୍ଗ ସରକାର ଘୋଷଣା କରିଥିଲେ । *(୪୫)*

ଏଥି ସହିତ ଭାଷା ସଂକଟ ଦୂରେଇ ଯାଇନି ବରଂ ଏହା ବିଭିନ୍ନ ଉପାନ୍ତ ଅଞ୍ଚଳରେ ଘନୀଭୂତ ହୋଇଛି । ଗଞ୍ଜାମ ଅଞ୍ଚଳରେ ତେଲେଙ୍ଗା କର୍ମଚାରୀ ମାନେ ତେଲୁଗୁ ଭାଷା ପ୍ରଚଳନ ପାଇଁ ଚକ୍ରାନ୍ତ କରିଥିଲେ । ସେମାନଙ୍କୁ ସମର୍ଥନ କରି ମାନ୍ଦ୍ରାଜ ସରକାର ତା-୨୪-୧-୧୮୭୪ ମ.ରେ ଗଞ୍ଜାମ ଗେଜେଟରେ ପ୍ରକାଶ କଲେ ''ଓଡ଼ିଆ ମାନେ ଓଡ଼ିଆ ଲିପିରେ କାଗଜ ପତ୍ର ଦାଖଲ କରିବାରେ ଆପତ୍ତି ନାହିଁ । ମାତ୍ର ସେଥିରେ ଜବାବ ମିଳିବା ବିଳମ୍ବ ହେବ । ଓଡ଼ିଆ ଭାଷା ତେଲେଙ୍ଗା ଲିପିରେ ବା ଇଂରେଜୀ ଲିପିରେ ଲେଖିଲେ ବେଗରେ ଜବାବ ମିଳିବ'' *(୪୬)* ଗଞ୍ଜାମର ବୁଦ୍ଧିଜୀବୀ'ମାନଙ୍କର ପ୍ରତିବାଦ ଫଳରେ ୧୮୭୩ ଖ୍ରୀ:ରେ ଓଡ଼ିଆ ଭାଷା

ଶିକ୍ଷାକୁ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଅନୁମୋଦନ କଲା ଓ ୧୮୯୦ ଖ୍ରୀରେ ଓଡ଼ିଆ କଚେରୀ ଭାଷାରୂପେ ସ୍ୱୀକୃତି ଲଭିଲା । *(୪୭)*

## ସଂବଲପୁରରେ ଭାଷା-ଆନ୍ଦୋଳନ :

୧୮୫୪ ଖ୍ରୀ:ରେ ସମ୍ବଲପୁର ଛୋଟନାଗପୁର କମିଶନରଙ୍କ ଶାସନାଧୀନ ଥିଲା । ସେହି ସମୟରେ କୋର୍ଟ କଚେରୀରେ ହିନ୍ଦୀଭାଷା ପ୍ରଚଳିତ ଥିଲା । କିନ୍ତୁ ୧୮୬୦ ଖ୍ରୀ: ରେ ସଂବଲପୁର ଓଡ଼ିଶା ଅନ୍ତର୍ଗତ ହେବାରୁ କଚେରୀ ଏବଂ ସରକାରୀ କାର୍ଯ୍ୟ ଓଡ଼ିଆ ଭାଷାରେ ହେଲା । ମାତ୍ର ୧୮୬୨ ଖ୍ରୀ:ରେ ସଂବଲପୁର ଜିଲ୍ଲା ପୁଣି ମଧ ପ୍ରଦେଶର ଶାସନାଧୀନ ହେଲା; ୧୮୯୫ ମସିହା ପର୍ଯ୍ୟନ୍ତ ତଥାପି ସରକାରୀ ଭାଷା ରୂପେ ଓଡ଼ିଆ ପ୍ରଚଳିତ ଥିଲା ।*(୪୮)* ମଧ ପ୍ରଦେଶ ଅନ୍ତର୍ଭୁକ୍ତ ହେବାଦ୍ୱାରା ସରକାରୀ କାର୍ଯ୍ୟରେ ହିନ୍ଦୀ ଭାଷୀଙ୍କ ପ୍ରଭାବ ଅନୁଭୂତ ହେଲା । ବଦଳି କ୍ଷେତ୍ରରେ ଅସୁବିଧା ସୃଷ୍ଟି ହେଲା । ହିନ୍ଦୀ ଭାଷୀ ମାନେ ଓଡ଼ିଆ ଅଞ୍ଚଳକୁ ଓଡ଼ିଆମାନେ ହିନ୍ଦୀ ଅଞ୍ଚଳକୁ ବଦଳି ହୋଇଯିବାକୁ କୁଣ୍ଠାବୋଧ କଲେ, ଏ ସମସ୍ୟାର ସମାଧାନ ପାଇଁ ତା ୧୯-୧-୧୮୯୫ ମଧପ୍ରଦେଶ ଗେଜେଟରେ ଚିଫ୍‌କମିଶନର ଜାନୁୟାର ୧ ତାରିଖ ୧୮୯୬ ଖ୍ରୀ:ରୁ ସଂବଲପୁରରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ସରକାରୀ ଭାଷାରୂପେ ପ୍ରଚଳନ ହେବ ବୋଲି ବିଜ୍ଞାପନ ପ୍ରକାଶ କଲେ । *(୪୯)* ଏ ବିଜ୍ଞାପନ ପ୍ରକାଶ ପାଇବା ପୂର୍ବରୁ ''ସଂବଲପୁର ହିତୈଷିଣୀ'' ଆଶଙ୍କା ପ୍ରକାଶ କରି ସମସ୍ତଙ୍କୁ ସତର୍କ କରି ଦେଇଥିଲା । 'ସମ୍ବଲପୁର ମାତୃଭାଷାର ଉଚ୍ଛେଦ ସାଧନ କରି ହିନ୍ଦୀ ଭାଷା ଚଳାଇବା ସଙ୍କାଶେ କର୍ତ୍ତୃପକ୍ଷ ମାନେ ଆଗ୍ରହାନ୍ୱିତ । ଯେହେତୁ ଏଥିରେ ଏକମାତ୍ର ଓଡ଼ିଆ ମାନଙ୍କର କ୍ଷତି ଓ ଅସୁବିଧା ଛଡା ଅନ୍ୟମାନଙ୍କର କ୍ଷତି ବା ଅସୁବିଧା ନାହିଁ ।'' *(୫୦)* ସଂବଲପୁର ହିତୈଷିଣୀ କେବଳ ସଂବାଦ ପରିବେଷଣ କରି ସନ୍ତୁଷ୍ଟ ରହିନାହିଁ ବରଂ ସଂବଲପୁରରେ ହିନ୍ଦୀ ପ୍ରଚଳନ ହେବାର ବହୁ ପୂର୍ବରୁ ସେ ଏହା ବିରୁଦ୍ଧରେ ଉଦ୍‌ବେଗ ପ୍ରକାଶ କରିଛି ।*(୫୧)* 'ଓଡ଼ିଆ' ଭାଷାର ବିଲୋପ ଚେଷ୍ଟା ଶୀର୍ଷକରେ ହିତୈଷିଣୀ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଛି । ସଂବଲପୁରରେ ହିନ୍ଦୀ ଚଳାଇବା କେବେହେଁ ଉଚିତ ନୁହେଁ । ଏହାଦ୍ୱାରା ସରକାରୀ କାର୍ଯ୍ୟରେ ବାଧା ଉପୁଜିବ । ଯେବେ ଓଡ଼ିଆ ପ୍ରଚଳନରେ ଅସୁବିଧା ଅନୁଭୂତ ହୁଏ ତେବେ ଏ ଜିଲ୍ଲାକୁ ମଧପ୍ରଦେଶରେ ନ ରଖି ଓଡ଼ିଶାରେ ସାମିଲ କରାଯାଉ । *(୫୨)* ଏ ଯୁଗାନ୍ତକାରୀ ଦାବୀ ହିଁ ପରବର୍ତ୍ତୀ ପର୍ଯ୍ୟାୟରେ ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣର ବିରାଟ ଆନ୍ଦୋଳନ ସୃଷ୍ଟି କରିଛି । ହିତୈଷିଣୀ ୧୮୯୪ ଓ ତତ୍‌ପରବର୍ତ୍ତୀ ବିଭିନ୍ନ ସଂଖ୍ୟାରେ ଭାଷା ଆନ୍ଦୋଳନ ତୀବ୍ର ରୂପ ଧାରଣ କରିଛି । ହିନ୍ଦୀ ଭାଷାର ପ୍ରଶୟ ଲାଭ *(୫୩)* ଭାଷା ପରିବର୍ତ୍ତନ ସମ୍ବନ୍ଧେ ଡେପୁଟୀ କମିଶନର ସାହେବଙ୍କ ମତ *(୫୪)* ମାତୃଭାଷାର ବିଲୋପ *(୫୫)* ସଂବଲପୁର ଭାଷା ସଂକଟ *(୫୬)* ଓଡ଼ିଆ ଭାଷାର ଅନାଦର *(୫୭)*

ଶୀର୍ଷକରେ ହିତୈଷିଣୀ ଦୃଢ଼ମତ ପ୍ରକାଶ କରି ଜନସଚେତନତା ସୃଷ୍ଟି କରିବାରେ ସଫଳ ହୋଇଛି । ହିତୈଷିଣୀ ଓଡ଼ିଆ ଭାଷା ପ୍ରଚଳନ ସପକ୍ଷରେ ନିଜସ୍ୱ ମତ କେବଳ ପ୍ରଦାନ କରିନାହିଁ ବରଂ ଏ ସଂପର୍କରେ ବୁଦ୍ଧିଜୀବୀ ଗୋଷ୍ଠୀଙ୍କ ପ୍ରତିକ୍ରିୟା ମଧ୍ୟ ପ୍ରକାଶ କରିଛି । ଏ ପ୍ରସଙ୍ଗରେ ଗଙ୍ଗାଧର ମେହେରଙ୍କ 'ଭାରତୀରୋଦନ' *(୫୮)* ଓ 'ଉତ୍କଳ ଭାରତୀଙ୍କ ନିବେଦନ' *(୫୯)* ଜଳନ୍ଧର ଦେବଙ୍କ 'ଉତ୍କଳ ଭାରତୀଙ୍କ କ୍ଷୋଭ' *(୬୦)* ଏବଂ 'ନିବେଦନ' *(୬୧)* ଭାଗିରଥି ରଥଙ୍କ 'ଭାଷାବିଭ୍ରାଟ' *(୬୨)* କବିତା ସହିତ ଅନେକ କବି ଓ ଲେଖକଙ୍କ ଛଦ୍ମ ନାମରେ ପ୍ରକାଶିତ ପତ୍ର, କବିତା ଆଲୋଚନା ପ୍ରଭୃତି ଏ ଆନ୍ଦୋଳନକୁ ଗତିମୁଖର କରିଥିଲା । ସେ ସମୟରେ ଅନ୍ୟାନ୍ୟ ସଂବାଦପତ୍ର ଅପେକ୍ଷା 'ହିତୈଷିଣୀ'ରେ ଏ ବିଷୟରେ ବହୁ ଆନ୍ଦୋଳନ ହୋଇଥିଲା । *(୬୩)*

ସମ୍ବଲପୁରରେ ଓଡ଼ିଆ ମାନେ ୧୮୯୫ ଖ୍ରୀ: ରୁ ୧୯୦୫ ପର୍ଯ୍ୟନ୍ତ ଭାଷା ଆନ୍ଦୋଳନକୁ ଜାଗ୍ରତ ରଖିଥିଲେ । ସଭାସମିତିରେ ପ୍ରସ୍ତାବ ପାସ କରି, ସ୍ମାରକ ପତ୍ର ପ୍ରସ୍ତୁତ କରି ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସ୍ୱାକ୍ଷର ସହିତ ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖକୁ ପଠାଯାଉଥିଲା । ୧୮୯୫ ଖ୍ରୀରେ ପ୍ରଦତ୍ତ ସ୍ମାରକ ପତ୍ରରେ ନେତୃତ୍ୱ ନେଇଥିଲେ ଧରଣୀଧର ମିଶ୍ର । ସଂବଲପୁର ବାସୀଙ୍କର ଆବେଦନ ପତ୍ରକୁ ସମର୍ଥନ ଜଣାଇ ଓଡ଼ିଶା ଏସୋସିଏସନ ୨୦.୬.୧୮୯୫ ଖ୍ରୀ:ରେ ଏକ ଆବେଦନ ପତ୍ର ତଦାନୀନ୍ତନ ବଡଲାଟ ଲର୍ଡ ଏଲଗିନଙ୍କ ପାଖକୁ ପଠାଇଥିଲେ । *(୬୪)* ୧୯୦୧ ମସିହାରେ ଜନଗଣନାକୁ ହିନ୍ଦୀ କର୍ମଚାରୀମାନେ ବିଭ୍ରାଟ ପୂର୍ଣ୍ଣ କରିଥିଲେ କିନ୍ତୁ ତାକୁ ସାବଲୀଳ ଭାବେ ସମାପ୍ତ କରିଥିଲେ ଓଡ଼ିଆ ଯୁବକ ବୈକୁଣ୍ଠନାଥ ପୂଜାରୀ । ପୂଜାରୀଙ୍କ କର୍ମନିଷ୍ଠା ପ୍ରମାଣ କରିଦେଇଥିଲା ଓଡ଼ିଆ ଭାଷାମାଧ୍ୟମରେ ଜନ ଗଣନା ସଫଳ ହୋଇପାରିଛି । *(୬୫)* ଜନଗଣନାରୁ ସଂବଲପୁର ଜିଲ୍ଲାର ୭ଲକ୍ଷ ୯୬ ହଜାର ୪୧୩ ଜଣଙ୍କ ମଧ୍ୟରୁ ଓଡ଼ିଆ ଭାଷୀଙ୍କ ସଂଖ୍ୟା ୫ଲକ୍ଷ୯୫ହଜାର ୬୦୧ ଜଣ ଥିବାର ଜଣା ପଡିଲା । ବାମଣ୍ଡା, ରେଢ଼ାଖୋଲ, ସୋନପୁର, ପାଟଣା, କଳାହାଣ୍ଡି ଦେଶୀୟ ରାଜ୍ୟ ମାନଙ୍କ ଲୋକସଂଖ୍ୟା ୯,୭୮,୪୩୯ ମଧ୍ୟରୁ ଓଡ଼ିଆଙ୍କ ସଂଖ୍ୟା ୮,୬୧, ୧୧୮ ଜଣ । *(୬୬)*

୧୯୦୧ ଖ୍ରୀ: ଜୁଲାଇ ମାସରେ ଶ୍ରୀ ବ୍ରଜମୋହନ ପଟ୍ଟନାୟକ, ମହନ୍ତ ମହରାଜ ବିହାରୀ ଦାସ, ବଳଭଦ୍ର ସୁଆର ଓ ମଦନ ମୋହନ ମିଶ୍ର ନାଗପୁର ଯାଇ ଚିଫ୍ କମିଶନର ଏଣ୍ଡୁ ଫ୍ରେଜରକୁ ସାକ୍ଷାତ କରିଥିଲେ । ଏଣ୍ଡୁଫ୍ରେଜର ଏ ସମସ୍ୟାର ସମାଧାନ ପାଇଁ ଗଭର୍ଣ୍ଣର ଜେନେରାଲଙ୍କୁ ଜଣାଇବା ପାଇଁ ପ୍ରତିଶ୍ରୁତି ଦେଲେ । ସେହି ବର୍ଷ ସେପ୍ଟେମ୍ବର ମାସରେ ଭାଷା ଆନ୍ଦୋଳନର ଉଲ୍ଲିଖିତ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହିତ ଶ୍ରୀପତି ମିଶ୍ର ଶିମଳା ଯାତ୍ରା କରିଥିଲେ । ଏ ଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟଥିଲା ଲର୍ଡ କର୍ଜନଙ୍କୁ ଭାଷା ସଂକଟ ସଂପର୍କରେ ନିବେଦନ ପତ୍ର ଦେବା । *(୬୭)* ମଧୁବାବୁଙ୍କ ନିକଟକୁ ପଠାଯାଇଥିବା ଚିଠି ବିଜୟରେ ତାଙ୍କର ହସ୍ତଗତ

ହୋଇଥିଲା । ତେଣୁ ସେ ଶିମିଳା ଯାତ୍ରା କରି ପାରିଲେ ନାହିଁ । ସେ ଏକ ତାର ବାର୍ତ୍ତା ସହ ଆବେଦନ ପତ୍ର ଶିମିଳା ଭାଇସରାୟଙ୍କଠାକୁ ପଠାଇ ଥିଲେ । ଏ ତାରବାର୍ତ୍ତା ଉତ୍କଳଦୀପିକାରେ ପ୍ରକାଶ ପାଇଥିଲା । *(୬୮)* ଶିମିଳା ଯାତ୍ରୀଗଣ ଲର୍ଡ କର୍ଜନଙ୍କୁ ସାକ୍ଷାତ କରିବାରେ ଅକୃତକାର୍ଯ୍ୟ ହୋଇ ଫେରିଥିଲେ ।

ଏଣ୍ଡ୍ରୁଫ୍ରେଜର ୧୯୦୧ ରେ ଭାଷା ସମସ୍ୟା ଉପରେ ଅନବହିତ ଭାବରେ ମନ୍ତବ୍ୟ ଦେଲେ ଯେ ଯଦି ସଂବଲପୁରର ଆଇନ ଅଦାଲତରେ ଓଡ଼ିଆ ଭାଷାର ପ୍ରଚଳନ ହୁଏ ତେବେ ସେହି ଜିଲ୍ଲାକୁ ଓଡ଼ିଶା ସହିତ ମିଶାଇ ଦେବା ଶ୍ରେୟସ୍କର ହେବ । ସେ ମତଦେଲେ ଯେ ସମ୍ବଲପୁରକୁ ବଙ୍ଗ ସରକାରଙ୍କ ଶାସନାଧୀନରେ ରଖିବା ସମଗ୍ର ଓଡ଼ିଶାକୁ ବଙ୍ଗ ପ୍ରଦେଶରୁ କାଢ଼ି ଆଣି ମଧ୍ୟ ପ୍ରଦେଶରେ ମିଶାଇ ଦେଇ ଏହା କରାଯାଇ ପାରେ । ତାଙ୍କର ଏହି ସାମାନ୍ୟ ପରାମର୍ଶରୁ ଏକ ବିରାଟ ବିତର୍କର ଉତ୍ପତ୍ତି । ଏବଂ ବଙ୍ଗଭଙ୍ଗ ଆନ୍ଦୋଳନ ସମ୍ବଲପୁର ଭାଷା ସମସ୍ୟା ଉପରେ ହିଁ ପ୍ରତିଷ୍ଠିତ । *(୬୯)*

ସଂବଲପୁର ହିତୈଷିଣୀ, ଉତ୍କଳଦୀପିକା ପ୍ରଭୃତି ସଂବାଦପତ୍ର ଅନ୍ତରାଳରେ ଏବଂ ଧରଣୀଧରମିଶ୍ର ପ୍ରମୁଖ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଆନ୍ତରିକ ଉଦ୍ୟମ ଫଳରେ ୧୯୦୩ ଜାନୁୟାରୀ ୧ ତାରିଖରେ ସଂବଲପୁର ଜିଲ୍ଲାର ଅଦାଲତ ସମୂହରେ ଓଡ଼ିଆ ଭାଷା ପୁନଃ ପ୍ରଚଳନ ହେବାର ଆଦେଶ ପ୍ରଦତ୍ତ ହେଲା । ଏ ସଂବାଦକୁ ଅତ୍ୟନ୍ତ ଆନନ୍ଦର ସହିତ ସଂବଲପୁର ହିତୈଷିଣୀ 'ସମ୍ବଲପୁରରେ ଓଡ଼ିଆ ଭାଷା' ଶୀର୍ଷକରେ ଘୋଷଣା କରିଥିଲା । ଏଥିପାଇଁ ସମଗ୍ର ଓଡ଼ିଶା ଚିଫ୍ କମିଶନର ଫ୍ରେଜାର ଓ ମହିମାବର ବଡ଼ଲାଟଙ୍କ ଠାରେ ଚିରଦିନ କୃତଜ୍ଞ ରହିବ ବୋଲି ହିତୈଷିଣୀ ଆଶା ପୋଷଣ କରିଥିଲା । *(୭୦)*

ଭାଷା ସଂକଟ ଏବଂ ଭାଷା ଆନ୍ଦୋଳନ ମାଧ୍ୟମରେ ଓଡ଼ିଆ ପ୍ରାଣରେ ଜାତୀୟ ଚେତନାର ଜାଗରଣ ସୃଷ୍ଟି ହୋଇଥିଲା ।

## ଓଡ଼ିଆ ଭାଷା-ଭାଷୀ ଅଞ୍ଚଳର ଏକତ୍ରୀକରଣ :

ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ପରୋକ୍ଷରେ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ପାଇଁ ଜନ ସଚେତନତା ସୃଷ୍ଟି କଲା । ଓଡ଼ିଶା ତାର ପ୍ରାଚୀନ ଗୌରବ ହରାଇ ନାମକୁ ମାତ୍ର ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା ମଧ୍ୟରେ ସୀମିତ ଥିଲା । ଏହାର ଦକ୍ଷିଣାଂଶ ମାନ୍ଦ୍ରାଜ ଶାସନରେ, ପଶ୍ଚିମାଂଶ ମଧ୍ୟ ପ୍ରଦେଶ ଅଧୀନରେ ଏବଂ ତଥାକଥିତ ଓଡ଼ିଶା ବଙ୍ଗ ଶାସନ ଅଧୀନରେ ଶାସିତ ହେଉଥିଲା । ଏ ଅଞ୍ଚଳ ଗୁଡ଼ିକ ସଂପୃକ୍ତ ପ୍ରଦେଶର ସଂଖ୍ୟାଲଘୁ ଭାଷୀ ଅଞ୍ଚଳ ରୂପେ ରାଜନୈତିକ ବ୍ୟାପାରରେ ଅସୁବିଧା ସୃଷ୍ଟି କରୁଥିଲା । ରିସ୍‌ଲେ ୧୯୨୩ରେ ବଙ୍ଗ ସରକାରଙ୍କୁ ଏକ ପତ୍ରରେ ଏ ଭାଷା

ଜନିତ ଅସୁବିଧା ଯୋଗୁଁ ଉଭୟ ପ୍ରଶାସନ ଓ ପ୍ରଜାମଣ୍ଡଳ କ୍ଷତିଗ୍ରସ୍ତ ହେଉଥିବା ଦର୍ଶାଇଛନ୍ତି । *(୭୧)* ରିସ୍‌ଲେଙ୍କ ପତ୍ର ଭାଷା ଭିତ୍ତିକ ପ୍ରଦେଶ ଗଠନ ପ୍ରତି ଇଙ୍ଗିତ କରେ ।

ସଂବଲପୁର ଅଞ୍ଚଳ ପରି ଗଞ୍ଜାମ ଅଞ୍ଚଳ ମଧ ଭାଷା ସଂକଟର ସମ୍ମୁଖୀନ ହୋଇ ଓଡ଼ିଶା ସହିତ ମିଶିବା ପାଇଁ ବ୍ୟଗ୍ର ହୋଇ ଉଠିଥିଲେ । ଓଡ଼ିଶାର ଶାସନ ପରିବର୍ତ୍ତନ ଶୀର୍ଷକରେ ଉତ୍କଳ ଦୀପିକା ଘୋଷଣା କଲେ-''ସମସ୍ତ ଓଡ଼ିଆ ଭାଷା ପ୍ରଚଳିତ ଖଣ୍ଡ ନ ହେଉ ପଛକେ ତହିଁର ଅଧିକାଂଶ ଏକଜଣ ଶାସନ କର୍ତ୍ତା ଅଧୀନରେ ଆସିବା ଓଡ଼ିଶାର ଉନ୍ନତିର ବିଷୟ ଅଟଇ । ଓଡ଼ିଶା ଏକ ଜଣ ଶାସନକର୍ତ୍ତାର ଅଧୀନ ନ ହେବାରୁ ଏହାର ଉନ୍ନତି ହୋଇ ପାରୁନାହିଁ ଓ ଗଞ୍ଜାମ ଠାରୁ ସମ୍ବଲପୁର ପର୍ଯ୍ୟନ୍ତ ଭୂମି ଖଣ୍ଡ କି ଯହିଁରେ ଓଡ଼ିଆ ଭାଷା ପ୍ରଚଳିତ ଅଛି ତାହା ସମସ୍ତ ଏକାନିୟମ ଏକ ଶାସନ କର୍ତ୍ତାର ଅଧୀନରେ ଆସିଲେ ଓଡ଼ିଆଙ୍କ ପ୍ରକୃତ ମଙ୍ଗଳ ହେବ ।'' *(୭୨)* ସଂବଲପୁର ଅଞ୍ଚଳରେ ହିନ୍ଦୀ ସରକାରୀ ଭାଷା ହେବାର ଆଶଙ୍କା ପ୍ରକାଶ ପରେ ତାହାକୁ ପ୍ରତିବାଦ ଜଣାଇ ହିତୈଷିଣୀ ଲେଖିଥିଲେ ''ଯଦି ଭାଷା ପରିବର୍ତ୍ତନ ନ କଲେ ମଧ୍ୟପ୍ରଦେଶ ଅଧୀନରେ ଏ ଜିଲ୍ଲାର ଶାସନ ବିଚାର କାର୍ଯ୍ୟ ଚଳି ନ ପାରେ । ତେବେ ଏ ଜିଲ୍ଲାକୁ ମଧ୍ୟପ୍ରଦେଶରୁ ବାହାର କରି ଓଡ଼ିଶା ସହିତ ମିଶାଇ ଦେଲେ ଭାଷା ପରିବର୍ତ୍ତନ ନ କଲେ ମଧ କାର୍ଯ୍ୟ ଚଳିପାରେ ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥିତ ବିଷୟ ହେବା ଉଚିତ ।'' *(୭୩)* ''ସଂବଲପୁର ଭାଷା ସଂକଟ'' ଶୀର୍ଷକରେ ହିତୈଷିଣୀ ସଂବଲପୁର ବାସୀଙ୍କୁ ନିଶ୍ଚିନ୍ତ ହୋଇ ନ ବସିବା ନିଜର ଭାଷା ରକ୍ଷା ପାଇଁ ସରକାରଙ୍କୁ ନିବେଦନ କରିବା ପାଇଁ ଆଗ୍ନେୟ ଆହ୍ୱାନ ଦେଇଛି । ସରକାରଙ୍କ ଭ୍ରମକୁ ପ୍ରଦର୍ଶାଇ ଓଡ଼ିଆ ଭାଷା ପ୍ରଚଳନରେ ଯେ ଏ ଅଞ୍ଚଳର ଉନ୍ନତି ଏହାହିଁ ଯୁକ୍ତି ବଳରେ ସିଦ୍ଧ ହୋଇଛି । ଏବଂ ପୁଣିଥରେ ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଦାବୀ ଉପସ୍ଥାପିତ କରିଛି ''ଆମ୍ଭମାନଙ୍କର ଏପରି ବିଶ୍ୱାସ ଥିବାରୁ କହୁଅଛୁଁ ଯେ ସମ୍ବଲପୁର, ଗଞ୍ଜାମ ଏବଂ ଏକତ୍ରରେ ଏକଚିଫ୍ କମିଶନରଙ୍କ ଅଧୀନରେ ରଖିବା ବିଷୟକ ପୂର୍ବ ପ୍ରସ୍ତାବର ସଫଳତା ଚେଷ୍ଟାକଲେ ସେହି ସାଧୁ ସଂକଳ୍ପ ସିଦ୍ଧ ହୋଇପାରେ ।'' *(୭୪)*

ଏ ସମସ୍ତ କ୍ଷୀଣ ଦାବୀ ପରବର୍ତ୍ତୀ ପର୍ଯ୍ୟାୟରେ ''ଉତ୍କଳ ସମ୍ମିଳନୀ'' (୧୯୦୩) ଗଠନ ସହିତ ସଫଳୀକୃତ ହୋଇଥିଲା । ନୀଳମଣି ବିଦ୍ୟାରତ୍ନ ହିତୈଷିଣୀ ମାଧ୍ୟମରେ ଯେଉଁ ଏକତ୍ରୀକରଣର ସ୍ୱପ୍ନ ଦେଖିଥିଲେ ତାକୁ 'ପ୍ରଜାବଂଧୁ' ପତ୍ରିକା ମାଧମରେ ଜୀବନ୍ତ କରିଥିଲେ । ପ୍ରଜାବଂଧୁର ପ୍ରଚାର ଖଲିକୋଟ୍ ରାଜା ହରିହର ମର୍ଦ୍ଦରାଜଙ୍କ ସହାୟତା ଏବଂ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ୧୯୦୩ ଏପ୍ରିଲ ମାସରେ ଗଞ୍ଜାମ ସମ୍ମିଳନୀ ଅନୁଷ୍ଠିତ ହେଲା । *(୭୫)* ଏହାରି ଅତରାଳରେ ବିଦ୍ୟାରତ୍ନଙ୍କ ଉଦ୍ୟମ ସର୍ବସ୍ୱୀକୃତ । *(୭୬)* ଏହି ସମ୍ମିଳନୀକୁ ଯୋଗଦେବାକୁ ଆସି ମଧୁବାବୁ ଏହା ସମଗ୍ର ଓଡ଼ିଶାର ସମସ୍ୟା ତେଣୁ ଏହାକୁ 'ଉତ୍କଳ ସମ୍ମିଳନୀ' ରୂପେ ଗଢ଼ି ତୋଳିବାକୁ ପ୍ରସ୍ତାବ ଦେଲେ । ତାଙ୍କରି ପ୍ରସ୍ତାବକୁ ସମସ୍ତ ଓଡ଼ିଆ ସ୍ୱାଗତ କରିଥିଲେ । ଏଇଠି ସୃଷ୍ଟି ହେଲା 'ଉତ୍କଳ ସମ୍ମିଳନୀ' ଜାତୀୟ ଅନୁଷ୍ଠାନ । *(୭୭)*

ଉତ୍କଳ ସମ୍ମିଳନୀର ଯୁଗାନ୍ତକାରୀ ଅଧିବେଶନ ଡିସେମ୍ବର ୩୦ ଓ ୩୧ ତାରିଖ ୧୯୦୩ ଖ୍ରୀ:ରେ କଟକର ଇଦ୍‌ଗା ମଇଦାନ ଠାରେ ଅନୁଷ୍ଠିତ ହୋଇଥିଲା । ସମ୍ମିଳନୀର କାର୍ଯ୍ୟକ୍ରମର ସଫଳତା ପାଇଁ ବିଭିନ୍ନ ଅଧିବେଶନ ମାଧମରେ ଯୋଜନା ପ୍ରସ୍ତୁତ ହୋଇଥିଲା । ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳରୁ ସଭ୍ୟଗଣ ସମ୍ମିଳନୀରେ ଯୋଗଦେଇଥିଲେ । ୧୫.୧୧.୧୯୦୩ ର କାର୍ଯ୍ୟନିର୍ବାହକ ସମିତିର ପ୍ରଥମ ଅଧିବେଶନରେ ବାମଣ୍ଡାଧିପତି ସାର୍ ବାସୁଦେବ ସୁଚଳଦେବଙ୍କୁ ସଭାପତିତ୍ୱ କରିବା ପାଇଁ ସର୍ବ ସମ୍ମତି କ୍ରମେ ସ୍ଥିର କରାଯାଇ ଅନୁରୋଧ ପତ୍ର ପ୍ରେରଣ ହେଲା ।(୭୮) ସୁଚଳଦେବଙ୍କ ପରଲୋକ ପ୍ରାପ୍ତିଯୋଗୁଁ ୨୨-୧୧-୧୯୦୩ର ଦ୍ୱିତୀୟ ଅଧିବେଶନରେ ମୟୂରଭଞ୍ଜ ଅଧିପତି ରାମଚନ୍ଦ୍ର ଭଞ୍ଜଙ୍କୁ ସଭାପତିତ୍ୱ କରିବାପାଇଁ ନିମନ୍ତ୍ରଣ ପତ୍ର ପ୍ରେରଣ କରାଗଲା । (୭୯) ସମ୍ମିଳନୀରେ ଯୋଗଦେବାପାଇଁ ଗୋଲାପି ରଙ୍ଗର ପଗଡ଼ି ନିର୍ବାଚିତ ହେଲା । ସମ୍ମିଳନୀରେ ଯୋଗଦେବାକୁ ମେଦିନୀପୁରରୁ ୧୦ଜଣ, ସମ୍ବଲପୁରରୁ ୨୫ଜଣ ଗଞ୍ଜାମରୁ ୩୦୦ଜଣ ବ୍ୟକ୍ତି ଆସିଥିଲେ ।

ଉତ୍କଳ ସମ୍ମିଳନୀର ଏକାନ୍ତ ପ୍ରଚେଷ୍ଟା ଓଡ଼ିଆ ନେତୃମଣ୍ଡଳୀର ପ୍ରାଣାନ୍ତକ ଉଦ୍ୟମ ଓ ସର୍ବୋପରି ମଧୁବାବୁଙ୍କ ଆତ୍ମତ୍ୟାଗର ଫଳ ସ୍ୱରୂପ ୧୯୩୬ ଜାନୁୟାରୀ ପହିଲାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମ୍ଭବ ହେଲା । ଓଡ଼ିଆ ଭାଷୀଙ୍କ ତରଫରୁ କୃଷ୍ଣଚନ୍ଦ୍ର ଗଜପତି ୧୯୩୦ ଗୋଲ୍‌ଟେବୁଲ୍ ବୈଠକରେ ଓଡ଼ିଆ ମାନଙ୍କର ଦାବୀ ଉପସ୍ଥାପିତ କଲେ । (୮୦) ଓଡ଼ିଆ ମାନଙ୍କର ବାରମ୍ବାର ଆପତ୍ତି ଅଭିଯୋଗ ଆବେଦନ ନିବେଦନ ଓ ଜନ ଜାଗରଣ ଫଳସ୍ୱରୂପ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲା ।

ଓଡ଼ିଆ ଆନ୍ଦୋଳନ ଅନ୍ତରାଳରେ ଓଡ଼ିଆ ସାହିତ୍ୟର ଜାତୀୟବାଦୀ ଚେତନା ପ୍ରତିଷ୍ଠିତ ହୋଇଥିଲା ।

## ଜାତୀୟ ଓ ଆନ୍ତର୍ଜାତୀୟ ସମ୍ବାଦ :

ହିତୈଷିଣୀ ସାମିତତାର ସମସ୍ତ ଅର୍ଗଳୀକୁ ତେଇଁ ଯାଇଥିଲା । ସାମ୍ବାଦିକତା କ୍ଷେତ୍ରରେ ଏହା କୁଶଳ ଭାବେ ନିରପେକ୍ଷ ଜାତୀୟ ଜୀବନ ଗଠନ ମୂଳକ ସମ୍ବାଦ ପରିବେଷଣ କରୁଥିଲା । ସମ୍ବାଦ ପରିବେଷଣ ସମୟେ ସ୍ଥାନ କାଳ ପାତ୍ରର ଊର୍ଦ୍ଧ୍ୱରେ ଅବସ୍ଥିତ ଥିଲା ହିତୈଷିଣୀ । ବାମଣ୍ଡା, ସମ୍ବଲପୁର ଗଡଜାତ ସମୂହ ତଥା ଓଡ଼ିଶାର ସମ୍ବାଦ ବ୍ୟତୀତ ଜାତୀୟ ଆର୍ନ୍ତଜାତୀୟ ସମ୍ବାଦ ପରିବେଷଣରେ ଏହା ତତ୍ପର ଥିଲା । ଆର୍ନ୍ତଜାତୀୟ ସମ୍ବାଦ ପରିବେଷଣ ଲାଗି ଏହା ମୁଖ୍ୟତଃ ଦେଶ ବିଦେଶର ସମ୍ବାଦ ପତ୍ର ଉପରେ ନିର୍ଭର କରୁଥିଲା । ଓଡ଼ିଶା ଭିତରେ ଓ ବାହାରେ ହିତୈଷିଣୀର ସମ୍ବାଦଦାତା ଥିଲେ । ଦେଶ ବାହାରର ସମ୍ବାଦ ଗୁଡିକ ବିଭିନ୍ନ ସୂତ୍ରରୁ ସଂଗୃହିତ ହେଉଥିଲା । ସମ୍ପାଦକ ପାଇଁ ଏହା ଆୟାସସାଧ୍ୟ ବ୍ୟାପାର ।

ସମ୍ବାଦ ଶୀର୍ଷକରେ ପ୍ରାୟ ପ୍ରତିଟି ସଂଖ୍ୟାରେ ଦେଶ ବିଦେଶର ସମ୍ବାଦ ପରିବେଷିତ ହେଉଥିଲା । ହିତୈଷିଣୀ ଥିଲା ଏକ ବିଧିବଦ୍ଧ ପୂର୍ଣାଙ୍ଗ ସମ୍ବାଦ ପତ୍ର । ସମସାମୟିକ ଶାସନ ଓ ସମାଜ ବ୍ୟବସ୍ଥାର ସମାଲୋଚନାରେ ଏହା ମୁଖର ଥିଲା । ବାଦାନୁବାଦ ମଧ୍ୟରେ ଏକ ଉର୍ଜସ୍ୱଳ ସମାଜ ଗଠନ ଥିଲା ଏହାର ଆଭିମୁଖ୍ୟ । ଟୀକା ଟିପ୍ପଣୀ ମାଧ୍ୟମରେ ଏହା ସାଧାରଣ ପାଠକଙ୍କୁ ଉଚିତ୍ ପଥ ପ୍ରଦର୍ଶନ କରୁଥିଲା । ସାମ୍ପ୍ରତିକ ଯୁଗରେ ସମ୍ବାଦପତ୍ର ପରିଚାଳନ ଏକ ଉଦ୍ଦେଶ୍ୟ ପ୍ରଣୋଦିତ ବ୍ୟାପାର । ରାଜନୈତିକ ଇଚ୍ଛା ଓ କୁତ୍ସିତ ସ୍ୱାର୍ଥ ସାଧନର ବିକଳ୍ପ ପ୍ରତିଫଳନ ସମ୍ବାଦପତ୍ର । କିନ୍ତୁ ଓଡ଼ିଆ ଭାଷାର ଅତନ୍ଦ୍ର ପ୍ରହରୀ ବିଦ୍ୟାରତ୍ନଙ୍କ ହିତୈଷିଣୀ ଜନମତର ପ୍ରକୃତ ପ୍ରତିଫଳନ ବହନ କରୁଥିଲା । ସରକାରଙ୍କୁ ସମାଲୋଚନା କରିବାରେ କୁଣ୍ଠିତ ନଥିଲା ହିତୈଷିଣୀ । ନିର୍ଭୀକ ନିରପେକ୍ଷ ସମ୍ବାଦର ନୈସ୍ୱର୍ଗୀକ ଗନ୍ତାଘର ଥିଲା ଏ ପତ୍ରିକା ।

ହିତୈଷିଣୀର ଆର୍ନ୍ତଜାତିକ ସମ୍ବାଦ ପରିବେଷଣର ଅଭିରୁଚି ଯେ କୌଣସି ସଂଖ୍ୟାରେ ସୁସ୍ପଷ୍ଟ । ପାଠକଙ୍କ ଅବଗତି ନିମନ୍ତେ ହିତୈଷିଣୀ (୯/୧) ତାରିଖ ୧୪.୮.୧୮୮୯ ସଂଖ୍ୟାଟିରେ ପ୍ରକାଶିତ ବିଶ୍ୱ ସଂବାଦ ସମୂହକୁ ଆଲୋଚନା କରାଯାଇ ପାରେ ।

୧:''ବିଲାତରେ ମହାରାଣୀଙ୍କର ନାଚର ବୈଠକ ବସିଥିଲା । ସେଠାରେ ତାଙ୍କର ଜ୍ୟେଷ୍ଠପୁତ୍ର ତାହାଙ୍କର ମଧ୍ୟମା ବଧୂଙ୍କର ହସ୍ତ ଧାରଣ କରି ନୃତ୍ୟ କରିଥିଲେ । ଏହାର ନାମ ବିଲାତି ସଭ୍ୟତା ।

ମହାରାଣୀଙ୍କ ପୁତ୍ର ଡିଉକ ଅବକନଟ ଭାରତର ପ୍ରଧାନ ସୈନ୍ୟାଧ୍ୟକ୍ଷ ପଦରେ ନିଯୁକ୍ତ ହେବେ ।''

୨: ''ଆମ୍ଭ ମାନଙ୍କର ଯୁବରାଜଙ୍କ ମୁକୁଟରେ ଯେଉଁ ସ୍ୱର୍ଣ୍ଣ ଖଚିତ ପାଲକ ଅଛି, ତହିଁର ମୂଲ୍ୟ ପ୍ରାୟ ଏକଲକ୍ଷ ଟଙ୍କା । ଏପରି ପାଲକ ପୃଥିବୀରେ ଆଉ କାହାଠାରେ ନାହିଁ । ତାହା ସଂଗ୍ରହ କରିବା ପାଇଁ ୨୦ବର୍ଷ ଲାଗିଥିଲା ଏବଂ ବାରଜଣ ଶୀକାରୀର ଜୀବନ ନଷ୍ଟ ହୋଇଥିଲା ।''

୩: ''ଆମେରିକାର ଗୋଟିଏ ବନ୍ଧ ଭାଙ୍ଗି ଏକ ସହର ଭାସିଗଲା । ତତ୍ରତ୍ୟ ଲୋକ ମାନଙ୍କ ସାହାଯ୍ୟାର୍ଥେ ଦିଏନରେ ୬୦ଲକ୍ଷ ଟଙ୍କା ଚାନ୍ଦା ଉଠିଅଛି ।''

୪.''ପାୟୋନିୟର ବିଲାତରୁ ତାର ସମ୍ବାଦ ପାଇ ଅଛନ୍ତି ଯେ ୮୦ହଜାର ଋଷ ସୈନ୍ୟ ତୁରଷ୍କ ପ୍ରାନ୍ତରେ ସମବେତ ହୋଇଛନ୍ତି ।''

୫.''ବ୍ରହ୍ମଦେଶର ଡକାଇତ ସର୍ଦ୍ଦାର ଧରାପଡି ଅଛି ଏଣୁ ଏଣିକି ସେ ଦେଶରେ ଶାନ୍ତି ସ୍ଥାପିତ ହେବା ସମ୍ଭବ ।''

୬.''ଜାପାନର ଏକ ଦ୍ୱୀପରେ ଭୟାନକ ଭୂମିକଂପ ହୋଇ ଛଅଶତ ଲୋକ ମରା ପଡିଅଛନ୍ତି ।''

୭.''ଡବ୍ଲିନ ପୁଲିସ ଅଦାଲତରେ ଜଣେ ସ୍ତ୍ରୀଲୋକ ଭୀକ୍ଷା କରିବା ଅପରାଧରେ ଅଭିଯୁକ୍ତ ହୋଇଥିଲା । ତାହାର ପୋଷାକ ଅନୁସନ୍ଧାନ କରିବାରେ ତହିଁରୁ ପ୍ରାୟ ସୁନା ରୂପା ଉଭୟ

ମୁଦ୍ରାରେ ଟ ୮୦୦ ବାହାରିଲା । ସେ ଏହି ମୁଦ୍ରାକୁ ସଦା ସର୍ବଦା ତାହାର ପୋଷାକ ଦେହରେ ବୋହିଥିଲା ।''

ଏପରି ଅଜସ୍ର ସଂବାଦ ହିତୈଷିଣୀ ପ୍ରକାଶ କରିଛି । ସଂବାଦ ମାଧମରେ ସଂସ୍କୃତି, ସମାଜ, ଧର୍ମ, ମାନବବାଦର ବାର୍ତ୍ତା ପ୍ରଚାରିତ ହୋଇଛି, ହିତୈଷିଣୀର ପ୍ରତିଟି ପୃଷ୍ଠାରେ ଆନ୍ତର୍ଜାତିକ ସଂବାଦ ପ୍ରକାଶ ଲାଗି ପାଠକଙ୍କ ମାନସିକତାକୁ ପ୍ରସାରିତ କରିଥିଲା । ଯେ କୌଣସି ଅଞ୍ଚଳରେ ଆଦର୍ଶମୟ ବାର୍ତ୍ତାକୁ ପରିବେଷଣ କରିବାରେ ହିତୈଷିଣୀ କୁଣ୍ଠିତ ହୋଇନାହିଁ । ମାନବବାଦର ଅବକ୍ଷୟକୁ ଦୃଢ଼ଭାବରେ ସମାଲୋଚନା କରିଛି । ଇଂରେଜ ଶାସନାଧୀନ ଦେଶରେ ଥାଇ ମଧ ସେ ବିଲାତୀ ସଂସ୍କୃତିକୁ ସମାଲୋଚନା କରିବାକୁ ପାଶ୍ଚାତ୍ ପଦ ହୋଇନାହିଁ । ଦେଶ ବିଦେଶର ସଂବାଦକୁ ସମୀକ୍ଷା କରି ପାଠକକୁ ଭେଟି ଦେଇଛି ।



## ତୃତୀୟ ଅଧ୍ୟାୟର ପାଦସୂଚୀ


୧. *ମିଶ୍ର, ଗୋପାଳଚନ୍ଦ୍ର : ଓଡ଼ିଶାର ବିକାଶରେ ପତ୍ର ପତ୍ରିକାର ପ୍ରଭାବ : ପୃ-୩୭ ।*

୨. *ସହି- ୪/୧୫-ତା -୧୪.୯.୧୮୯୨ ।*

୩. *O' Malley, L.S.S. Bengal District Gazetter, Puri. P-258.*

୪: *Proceedings of the Lieutenant Governor of Bengal General Dept (Education) June-1868, No-60, Commissioner of Orissa to Govt. of Bengal No-523, 20-sept-1867.*

୫. *Patra, K.M. Advanced History of Orissa-1983-P-157.*

୬. *Jena, K.C. The Ascendancy of the British Raj in Orissa (1982) P-07 .*

୭. *ସାମନ୍ତରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ ପୃ-୨୭ ।*

୮ *Sahu, N.K. History of Orissa P-416.*

୯. *ସାନ୍ତରାୟ, ନଟବର: ଓଡ଼ିଆ ସାହିତ୍ୟର ଇତିହାସ-ପୃ-୯୨ ।*

୧୦. *ମିଶ୍ର, ଗୋପାଳ ଚନ୍ଦ୍ର : ଓଡିଶାର ବିକାଶରେ ପତ୍ର ପତ୍ରିକାର ପ୍ରଭାବ-ପୃ- ୧୪୩ ।*

୧୧. *ସହି-୩/୪୨ ତା ୩୦.୩.୧୮୯୨ ।*

୧୨. *ସହି ୪/୧୬ ତା- ୨୧.୯.୧୮୯୨ ।*

୧୩. *ସହି ତା ୧୨.୧୦.୧୮୯୨ ।*

୧୪. ସହି ୫/୩ ତା ୨୧.୬.୧୮୯୩ ।
୧୫. ସହି ୪/୩୨ ତା ୧୧.୧୨.୧୮୯୨ ।
୧୬. ସହି ୪/୩୮ ତା-୨୨.୨.୧୮୯୩ ।
୧୭. ସହି ୬/୩୦ ତା ୨୬.୧୨.୧୮୯୪ ।
୧୮. ରାଜା ବାସୁଦେବ ଉଚ୍ଚବିଦ୍ୟାଳୟ ସ୍ମରଣିକା, ଦେବଗଡ-(୧୯୮୩) ପୃ-୨ ।
୧୯. ସହି ୪/୧୯ ତା ୧୨.୧୦.୧୮୯୨ ।
୨୦. ସହି ୪/୨୦ ତା ୧୯.୧୦.୧୮୯୨ ।
୨୧. ସହି ୩/୪୫ ତା ୨୦.୪.୧୮୯୨ ।
୨୨. ସହି ତା ୧.୨.୧୯୧୩ ।
୨୩. ସହି ୨୪/୩୩ ତା ୧୪.୬.୧୯୧୩
୨୪. ସାମନ୍ତରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ ପୃ-୮୬ ।
୨୫. ସହି-୪/୧୭-ତା ୨୮.୯.୧୮୯୨ ।
୨୬. ତତ୍ରୈବ ।
୨୭. ସହି-୧୫.୮.୧୯୧୪ ।
୨୮. ମାନସିଂ, ମାୟାଧର: ଓଡ଼ିଆ ସାହିତ୍ୟର ଇତିହାସ (୧୯୮୧) ପୃ-୨୦୫ ।
୨୯. Sahu, N.K.History of Orissa-P-430.
୩୦. ଉଦୀ ୪/୧୧-ତା ୧୩.୩.୧୮୬୯ ।
୩୧. ସାମନ୍ତରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ-ପୃ-୭୨୨ ।
୩୨. ଉଦୀ -୪/୧୧-ତା-୧୩.୩.୧୮୬୯ ।
୩୩. ତତ୍ରୈବ ।
୩୪. ଦାଶ, ଗଗନେନ୍ଦ୍ର ନାଥ : ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ (୧୯୯୩), କଟକ ଷ୍ଟୁଡେଣ୍ଟ ଷ୍ଟୋରସ୍ : ପୃ-୯ ।
୩୫. ଉଦୀ-୪/୨୮ ତା ୧୦.୭.୧୮୬୯ ।
୩୬. ତତ୍ରୈବ ।
୩୭. ଦାଶ, ଗଗନେନ୍ଦ୍ର ନାଥ, ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ ପୃ-୧୬ ।
୩୮. Administrative Report Bengal Presidency 1848-69-P-240 .
୩୯. Report of Council of Education (1848-.49) P-336-337 .
୪୦. ଭଟ୍ଟାଚାର୍ଯ୍ୟ, କାନ୍ତିଚନ୍ଦ୍ର : ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ (୧୮୭୦) ବିଜ୍ଞାପନ : ଓଡ଼ିଆ ଅନୁବାଦ-ବଂଶୀଧର ମହାନ୍ତି, ଓଡ଼ିଆ ଭାଷା ଆନ୍ଦୋଳନ-ପରିଶିଷ୍ଟ (୧) -ପୃ-୧୫୧ ।
୪୧. ତତ୍ରୈବ ।

୪୨. ଉଦା-୫/୯ ତା ୧୬.୨.୧୮୭୦ ।

୪୩. ସାମନ୍ତ ରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ. ପୃ-୨୫୨ ।

୪୪. Das, B.S. Glimpses of Orissa -P-223.

୪୫. Pradhan,A.C. A study of History of Orissa P-305.

୪୬. ମହାପାତ୍ର, ପଣ୍ଡିତ ବାଇକୋଳି : ଓଡ଼ିଆ ଆନ୍ଦୋଳନର ଇତିହାସ (୧୯୭୬), ଗୋପବନ୍ଧୁ ସାହିତ୍ୟ ମନ୍ଦିର-ପୃ-୧୯-୨୦

୪୭. Proceedings, Home Judicial, August -1898 No-198-204.

୪୮. ମିଶ୍ର, ଗୋପାଳଚନ୍ଦ୍ର : ଓଡିଶାର ବିକାଶରେ ପତ୍ର ପତ୍ରିକାର ପ୍ରଭାବ -ପୃ-୩୧ ।

୪୯. ମାତୃଭାଷାର ବିଲୋପ : ସହି ୬/୩୫ - ତା- ୩୦.୧.୧୮୯୫ ।

୫୦. ହିନ୍ଦି ଭାଷାର ଆଦର : ସହି ୬/୩୪ ତା ୨୩.୧.୧୮୯୫ ।

୫୧. ହାକିମ ଓ ହିନ୍ଦି ଭାଷା : ସହି ୬/୧୧ ତା ୧୫.୮.୧୮୯୪ ।

୫୨. ଓଡ଼ିଆ ଭାଷାର ବିଲୋପ ଚେଷ୍ଟା : ସହି-୬/୧୨ ତା .୨୨.୮.୧୮୯୪ ।

୫୩. ସହି- ୬/୨୧-୨୪.୧୦.୧୮୯୪ ।

୫୪. ସହି ୬/୧୨-୨୯.୮.୧୮୯୪ ।

୫୫. ସହି-୬/୩୫ ତା -୩୦.୧.୧୮୯୫ ।

୫୬. ତତ୍ରୈବ ।

୫୭. ସହି ୬/୩୭- ତା ୧୩.୨.୧୮୯୫ ।

୫୮. ସହି ତା ୬.୧୦ ୧୮୯୪ ।

୫୯. ସହି ତା ୬.୩.୧୮୯୫ ।

୬୦. " ଉତ୍ତର ଦକ୍ଷିଣେ ଗଙ୍ଗା, ଗୋଦାବରୀ ବେନି ସହୋଦରା ମୋର
ଲାଗି ରହିଥିଲା ଅଙ୍ଗେ ଅଙ୍ଗେ ମିଶି କାଳକୁ ହେଲେ ଅନ୍ତର
ତାଙ୍କର ବିଚ୍ଛେଦ ପାଦଛିଡ଼ଚ୍ଛେଦ ଗଣ୍ଡିଖଣ୍ଡ ଅଛି ରହି
ତେଣୀ କାଟୁଅଛି ହିନ୍ଦି ସପତ୍ନୀ ରଖି ପାରିବ କି କେହି
କିଛି ଦିନ ପୂର୍ବେ ବଙ୍ଗ ବିହାରିଣୀ ଗ୍ରାସୁଥିଲା କଳେବର
ଆଁ ଆଁ କରିଥିଲା ଉଦ୍ଧାରି ରଖିଲେ ଥିଲେ ମୋ ଯୋଗ୍ୟ କୁମର ।"
-ଦେବ, ଜଳଧର : ସହି ତା-୬.୨.୧୮୯୫ ।

୬୧. ସହି ୬/୩୭ ତା ୧୩.୨.୧୮୯୫ ।

୬୨. ତତ୍ରୈବ ।

୬୩. ସାମନ୍ତରାୟ, ନଟବର : ଊନବିଂଶ ଶତାବ୍ଦୀ ଓ ସମ୍ବଲପୁର ହିତୈଷିଣୀ : ଝଙ୍କାର ୧୧/୧ ଏପ୍ରିଲ-୧୯୫୯ -ପୃ-୬ ।

୬୪. ପାଢ଼ୀ, ଶଙ୍କର ପ୍ରସାଦ, ସୂପକାର ଶ୍ରଦ୍ଧାକର : ସଂବଲପୁର ଭାଷା ଆନ୍ଦୋଳନ, ପୂର୍ଣ୍ଣିମା ପ୍ରିଣ୍ଟର୍ସ, ସଂବଲପୁର-୧୯୭୪ -ପୃ-୨୭ ।
୬୫. ପଣ୍ଡା, ରାଧାଚରଣ: ଆଦର୍ଶ କର୍ମବୀର ବୈକୁଣ୍ଠନାଥ ପୂଜାରୀ- ଉତ୍କଳ ସାହିତ୍ୟ (୩୯/୪) ଶ୍ରାବଣ-୧୩୪୨-ପୃ-୧୯୨ ।
୬୬. ସଂବଲପୁର ଭାଷା ଆନ୍ଦୋଳନ-ପୃ-୨୭ ।
୬୭. ମିଶ୍ର, ଶ୍ରୀପତି : ଶିମିଳା ଯାତ୍ରା ।
୬୮. ଉଦୀ ତା ୧୯.୮.୧୯୦୧ ।
୬୯. ସଂବଲପୁର ଭାଷା ଆନ୍ଦୋଳନ-ପୃ-୪୭-୪୮ ।
୭୦. ସହି-୧୪/୫ ତା ୩୦.୬.୧୯୦୨ ।
୭୧. Letter of H.H. Risley ESQ,C.I.E. Secretary. to Govt. of India addressed to Govt. of Bengal No3678-3.12.1903 quated. The Oriya movement by Two Bachelors of Arts (2nd Ed-1996) P-80
୭୨. ଉଦୀ ୧୧/୨୪ ତା ୧୦.୬.୧୮୭୬.
୭୩. ସହି ୬/୩୪ ତା ୨୩.୧.୧୮୯୫
୭୪. ସହି ୬/୩୮ ତା ୨୦.୨.୧୯୯୫ ।
୭୫. ଓଡ଼ିଆ ଆନ୍ଦୋଳନର ଇତିହାସ, ପୃ -୪୮ ।
୭୬. ''ଭାଷା ଯୋଗେ ଛିନ୍ନ ଭିନ୍ନ ଥିଲା ଏ ଉତ୍କଳ
ବାନ୍ଧିଲ ଏକତା ସୂତ୍ରେ ତୁମେ ହିଁ କେବଳ

x x x x

କଚ୍ଛଲତା ସମ୍ମିଳନୀ ଉତ୍କଳ ଦେଶରେ
ପ୍ରଥମରେ ଉପୁଜିଲା ତୁମ୍ଭ ହୃଦୟରେ
ତୁମ୍ଭର ପତ୍ରିକା ଲଭିଅଛି ଉଚ୍ଚସ୍ଥାନ ।
ତୁମ୍ଭେ ଏକା କରି ଜାଣ କବିଙ୍କୁ ସମ୍ମାନ''
''ସେନାପତି, ଫକୀର ମୋହନ : ଅବସର ବାସରେ (ନୀଳମଣି ବିଦ୍ୟାରତ୍ନ) ୧୯୧୪ : ପୃ ୩୩୩ ।
୭୭. ରାଜଗୁରୁ ସତ୍ୟନାରାୟଣ, ଓଡ଼ିଆ ପ୍ରଦେଶ ଗଠନ ଓ ଗଞ୍ଜାମର ଅବଦାନ, କୋଣାର୍କ ୫୯ ସଂଖ୍ୟା, ଏପ୍ରିଲ୧୯୮୬ ପୃ-୩୯ ।
୭୮. ଉତ୍କଳ ସଭାର ବିବରଣୀ (୧୯୦୩) ପୃ-୧୪ ।
୭୯ ତତ୍ରୈବ
୮୦. Sahu,N.K History of Orissa-P-456.



# ଚତୁର୍ଥ ଅଧ୍ୟାୟ

## ହିତୈଷିଣୀର ସାରସ୍ୱତ ଅବଦାନ :

ସଂବଲପୁର ହିତୈଷିଣୀ ମୁଖ୍ୟତଃ ଏକ ସଂବାଦ ପତ୍ର । କିନ୍ତୁ ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ପ୍ରେକ୍ଷାପଟରେ ଏହାର ଅବଦାନ ଅତୁଳନୀୟ । ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ ସହିତ ସୃଷ୍ଟ ଆଧୁନିକ ସାହିତ୍ୟକୁ ହିତୈଷିଣୀ ପରିପୁଷ୍ଟ କରିଥିଲା । ଗତାନୁଗତିକ ଧାରାରେ ପ୍ରବାହିତ ସାରସ୍ୱତ ସ୍ରୋତକୁ ଏହା ନୂଆ ଦିଗନ୍ତର ସଂଧାନ ଦେଲା । ଦୀର୍ଘ ପଇଁ ତିରିଶ ବର୍ଷକାଳର ପ୍ରକାଶନ ଅନ୍ତରାଳେ ଲୋକରୁଚି ଓ ସାହିତ୍ୟାଦର୍ଶକୁ ଉଚିତ ଦିଗ୍‌ଦର୍ଶନ ଦେଇଥିଲା । ହିତୈଷିଣୀ ବ୍ୟତିରେକେ ଅନ୍ୟ କୌଣସି ସଂବାଦ ପତ୍ରର ଏତେ ଦୀର୍ଘ ସମୟ ଧରି ସାହିତ୍ୟିକ ଅବଦାନ ସଂଭବପର ହୋଇ ନାହିଁ ।

ଏହାର ପ୍ରାୟ ଚାରି ପୃଷ୍ଠା ବ୍ୟାପୀ (ମୋଟ ଆଠ ପୃଷ୍ଠାରୁ ) ସାହିତ୍ୟିକ ସଂପଦରେ ପରିପୂର୍ଣ୍ଣ ଥିଲା । ଅନେକ ନୂତନ ସାଧକ ହିତୈଷିଣୀ ଅନ୍ତରାଳରେ ନିଜକୁ ପ୍ରତିଷ୍ଠିତ କରିଥିଲେ । ବିଜୁଳୀ-ଇନ୍ଦ୍ରଧନୁ ମସୀଯୁଦ୍ଧର ଅନ୍ୟତମ ଅଭିନୟସ୍ଥଳୀ ଥିଲା ହିତୈଷିଣୀ । ରାଧାନାଥ ସାହିତ୍ୟକୁ ଆତ୍ମିକ ସମର୍ଥନ ଜଣାଇ ଏହା ଆଧୁନିକ ସାହିତ୍ୟର ପ୍ରାଣପ୍ରତିଷ୍ଠା କରିଥିଲା । ପ୍ରାଚୀନ ସମାଲୋଚନାର ନିର୍ମୋକ୍ତ ଉନ୍ମୋଚନ କରି ଏକ ସୁରୁଚି ସଂପର୍ଣ୍ଣ ଆଲୋଚନାର ଧାରା ଫିଟାଇଥିଲା । ପ୍ରବୀଣ ସାହିତ୍ୟିକଙ୍କୁ ଯେତିକି ସମ୍ମାନ ଜଣାଇଥିଲା ନବୀନ ସାହିତ୍ୟିକଙ୍କୁ ସେତିକି ଶ୍ରଦ୍ଧା କରିଥିଲା । ସାହିତ୍ୟରୁ ଅଶ୍ଳୀଳତା ଓ କୁସଂସ୍କାର ଦୂରେଇ ନୂତନ ଦୀପ୍ତିରେ ସମୁଜ୍ଜଳ କରିଥିଲା । ବିଜୁଳି-ଇନ୍ଦ୍ରଧନୁ ମସୀଯୁଦ୍ଧରେଅନେକ ପତ୍ର ପତ୍ରିକା ନିଜର ସୀମିତ ଦୃଷ୍ଟି କୋଣର ପରିଚୟ ପ୍ରଦାନ କରିଥିଲେ । କିନ୍ତୁ ହିତୈଷିଣୀ ନିଜର ଦୂରଦୃଷ୍ଟିର ପରିଚୟ ଦେଇଛି । ଡ: ନଟବର ସାମନ୍ତରାୟ ଙ୍କ ମତରେ ''x x x x ସମସାମୟିକ ବହୁପତ୍ରିକା ଏ ମସୀସମରରେ ନିଜ ଶକ୍ତିର ଅପଚୟ କରିଥିଲେ ହେଁ ସଂବଲପୁର ହିତୈଷିଣୀ ଏହାର ବ୍ୟତିକ୍ରମ ରୂପେ ଦେଖାଦେଇଛି ।''*(୧)* ନୀଳମଣି ବିଦ୍ୟାରତ୍ନଙ୍କ ଉନ୍ନତ ସଂପାଦନା ଓ ସମର୍ଥ ବିଚାରବୁଦ୍ଧି

ପରିଚାଳିତ ପତ୍ରିକା ଯଥାର୍ଥରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗର ଆଧୁନିକ ସାହିତ୍ୟ ନିର୍ମାଣରେ ନିଜକୁ ନିୟୋଜିତ କରିଥିଲା । ହିତୈଷିଣୀର ସାହିତ୍ୟିକ ଅବଦାନକୁ ନିମ୍ନ ପର୍ଯ୍ୟାୟ କ୍ରମେ ପର୍ଯ୍ୟାଲୋଚନା କରାଯାଇପାରେ ।

(କ) ଇନ୍ଦ୍ରଧନୁ-ବିଜୁଳି ସାରସ୍ୱତ କଳହ

(ଖ) ନବୀନ ସାହିତ୍ୟିକଙ୍କ ଭୂସ୍ୱର୍ଗ

(ଗ) ପ୍ରବୀଣ ସାହିତ୍ୟିକଙ୍କ ଆକର୍ଷଣ ଭୂମି

(ଘ) ହିତୈଷିଣୀ ପୃଷ୍ଠାର ସ୍ରଷ୍ଟାଙ୍କ ସୃଷ୍ଟି ଆବେଦନ

(ଙ) ପୁସ୍ତକ ଆଲୋଚନା

(ଚ) ହିତୈଷିଣୀ ପୃଷ୍ଠ ପୀଠିକାରେ ପ୍ରକାଶିତ ପତ୍ରିକା ସମୂହର ସ୍ୱରୂପ ବିଶ୍ଳେଷଣ ।

(ଛ) ଆଧୁନିକ ସାହିତ୍ୟର ପ୍ରାଣପ୍ରତିଷ୍ଠା ।

## (କ) ଇନ୍ଦ୍ରଧନୁ-ବିଜୁଳି ସାରସ୍ୱତ କଳହ :

ଆଧୁନିକ ଓଡ଼ିଆ ସାହିତ୍ୟରେ ସମାଲୋଚନାର ବ୍ୟାପ୍ତି ହିତୈଷିଣୀ ମାଧ୍ୟମରେ ସଂଘଠିତ ହୁଏ । ନବରୁଚି ଓ ନବ ସଭ୍ୟତାର ଅଭ୍ୟୁଦୟ ସହିତ ଆଧୁନିକ ସମାଲୋଚକଗଣ ପ୍ରାଚୀନ ସାହିତ୍ୟ ସହିତ ନବ୍ୟ ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ ଆରମ୍ଭ କଲେ । କେତେକ ଆଧୁନିକ ସାହିତ୍ୟକୁ ଉତ୍କୃଷ୍ଟ ବିବେଚନା କଲାବେଳେ କେତେକ ପ୍ରାଚୀନ ସାହିତ୍ୟର ଧ୍ୱଜା ଟେକିଲେ । ଏମିତି ଏକ ପୃଷ୍ଠଭୂମିରେ 'ଉତ୍କଳପତ୍ର' (୧୮୯୧) ର ସୃଷ୍ଟି ଅଭିନନ୍ଦନୀୟ ସମାଜର ନୈତିକ ଉନ୍ନତି ଉତ୍କଳ ପ୍ରଭାର ଲକ୍ଷ୍ୟ ଥିଲା । ଏଣୁ ପ୍ରଥମ ସଂଖ୍ୟାର ସଂପାଦକୀୟ ଘୋଷଣା କରେ ''ଯେଉଁ ଗ୍ରନ୍ଥ ପାଠକଲେ ସମାଜସ୍ଥ ସାଧାରଣ ଲୋକର ସ୍ୱସ୍ୱ କର୍ତ୍ତବ୍ୟବୋଧ ଜନ୍ମେ ଏବଂ ଯାହା ସମସ୍ତଙ୍କୁ ନୀତିଶିକ୍ଷା, ଚରିତ୍ରଗଠନ ଓ ସାମାଜିକତା ଶିକ୍ଷା ନିମନ୍ତେ ସାହାଯ୍ୟ କରିପାରେ ତାହା ପ୍ରକୃତ ସାହିତ୍ୟ ଅଟେ । ଏଭଳି ସାହିତ୍ୟ ଓଡ଼ିଆଙ୍କର ନାହିଁ । ସୁତରାଂ ଉତ୍କଳ ସମାଜର ଉନ୍ନତିର ଉପାୟ ନାହିଁ । ଏହି ଅଭାବ ପୂରଣ କରିବା ଉଦ୍ଦେଶ୍ୟରେ ଉତ୍କଳ ପ୍ରଭାର ଉତ୍କଳ କ୍ଷେତ୍ରରେ ଆବିର୍ଭାବ ।'' *(୨)* ଆଦିରସ ମୂଳକ ସାହିତ୍ୟ ପ୍ରତି ପ୍ରଥମରୁ ପ୍ରଭା ନିଜର କଟାକ୍ଷ ପ୍ରକାଶ କରିଛି । ''ଭଞ୍ଜକବି ସ୍ୱୀୟ ଗ୍ରନ୍ଥ ମାନଙ୍କରେ ଆଦିରସ ରୂପ ହଳାହଳ ସମୁଦ୍ର ମନ୍ଥନ କରିଅଛନ୍ତି । ଏ ଭଳି ଗ୍ରନ୍ଥ ସମାଜର ବୈଗୁଣ୍ୟ ଜନ୍ମାଇବାକୁ ହିଁ ସକ୍ଷମ ?'' *(୩)* ଏହି ଆଭିମୁଖ୍ୟକୁ ସମର୍ଥନ ଜଣାଇ ଲାଲା ରାମ ନାରାୟଣ ରାୟଙ୍କ ଯୁଗାନ୍ତକାରୀ ଆଲୋଚନା ''କବି ଉପେନ୍ଦ୍ରଭଞ୍ଜ'ର ସୃଷ୍ଟି *(୪)* । ଏ ପ୍ରବନ୍ଧର ଆବିର୍ଭାବ ସହିତ ପ୍ରାଚୀନ ଆଧୁନିକ ବିତର୍କର ଝଡ଼ ସୃଷ୍ଟି ହୁଏ ।

ଏ ସମାଲୋଚନାରେ ଭଞ୍ଜଙ୍କର 'ବୈଦେହୀଶ ବିଳାସ' କାବ୍ୟର ଆଦିରସର ବାହୁଲ୍ୟକୁ ଦର୍ଶାଯାଇଛି । ରାମନାରାୟଣ କାବ୍ୟର ଯତିପାତ, ଉପଧାସ୍ୱର, ଛନ୍ଦ, ଅଳଙ୍କାର ରସ, ରୁଚି, କାବ୍ୟ ଶିଳ୍ପ, କଳ୍ପନା ଦିଗନେ ପୁଂଖାନୁପୁଂଖ ଆଲୋଚନା କରି ଭଞ୍ଜ କାବ୍ୟର ଆଦର୍ଶ ଅପେକ୍ଷା ଦୁର୍ବଳତା ପ୍ରକାଶରେ ଅଧିକ ପ୍ରୟାସ କରିଛନ୍ତି । ରାମ ନାରାୟଣଙ୍କ ମତରେ "ସେ ଯାହା ହେଉ ପୁସ୍ତକ ଖଣ୍ଡିକ ଆମୂଳଚୂଳ ପାଠକରି ଏକମାତ୍ର ଆଦିରସର ବାହୁଲ୍ୟ ଦର୍ଶନ କଲୁଁ । ଅନ୍ୟାନ ରସ ଯାହା ଅଳ୍ପ ପରିମାଣରେ ଲକ୍ଷିତ ହେଲା, ଶବ୍ଦ କାଠିନ୍ୟ ଓ ଅର୍ଥ କୃଚ୍ଛ୍ରତା ପ୍ରଭୃତି ଦୋଷରେ ସେମାନଙ୍କର ଭାବସଞ୍ଚାରିଣୀ ଶକ୍ତି ଏକାବେଳକେ ବିଲୁପ୍ତ ହୋଇଥିବାର ଅନୁମିତ ହେଲା । ପୁଣି କବି ଆଦିରସକୁ କୁତ୍ସିତ ଭାବରେ ଅବତାରଣା କରିଥିବାର ଦେଖି ଆନ୍ତରିକ ଦୁଃଖିତ ହେଲୁଁ । କାରଣ ରାମାୟଣ ଆର୍ଯ୍ୟମାନଙ୍କର ଧର୍ମଗ୍ରନ୍ଥ । କବି ସ୍ୱରଚିତ ଅନ୍ୟାନ୍ୟ କାବ୍ୟମାନଙ୍କରେ ସେଥିର (ଆଦିରସର) କୁତ୍ସିତ ଅବତାରଣା କରିଥିଲେହେଁ ଏଥିରେ (ବୈଦେହୀଶ ବିଳାସରେ) ତାହା କରିବାର ଉଚିତ ନ ଥିଲା ।" (୫) ଯେଉଁ ରାମଚନ୍ଦ୍ରଙ୍କୁ ଭାରତୀୟ ସଂସ୍କୃତି ଚିରଦିନ ମର୍ଯ୍ୟାଦା ପୁରୁଷୋତ୍ତମ ସମ୍ମାନ ଦେଇଛି ଏବଂ ନମସ୍ୟ ଦେବତା ରୂପେ କଳ୍ପନା କରିଛି ତାଙ୍କୁ ଲଂପଟ ଓ କାମୁକ ଚରିତ୍ର ରୂପେ ପ୍ରଦର୍ଶାଇବା ଭଞ୍ଜଙ୍କର ପୀଡ଼ିତ ଦୃଷ୍ଟିଭଙ୍ଗୀର ପରିଚାୟକ ବୋଲି ସେ ଦୁଃଖ ପ୍ରକାଶ କରିଛନ୍ତି । ସୀତାଙ୍କ ଅଯଥା ରୂପ ବର୍ଣ୍ଣନା, ଦୁର୍ବୋଧତା, ଶ୍ରୁତିକଟୁତା, ବ୍ୟାକରଣ ଦୁଷ୍ଟତା ଦୋଷରେ ଭଞ୍ଜକାବ୍ୟ ଭାରାକ୍ରାନ୍ତ ବୋଲି ସେ ପ୍ରମାଣିତ କରିଛନ୍ତି । ଭଞ୍ଜକାବ୍ୟକୁ ଜାତୀୟ ସାହିତ୍ୟର କଳଙ୍କ ସ୍ୱରୂପ ଅଭିହିତ କରିଛନ୍ତି ।

ରାମ ନାରାୟଣଙ୍କ ପ୍ରଭାରେ ପ୍ରକାଶିତ ଆଲୋଚନାକୁ ଦୀପିକା ତା-୨୭-୫-୧୮୯୩ ସଂଖ୍ୟାରେ ଗୋଲକ ଧନ୍ଦା ସମାଲୋଚନା କରି ଭଞ୍ଜ କବିଙ୍କର ଉତ୍କର୍ଷତା ପ୍ରତିପାଦନର ଚେଷ୍ଟା କରିଛନ୍ତି । ଦୀର୍ଘପତ୍ର ପ୍ରକାଶରେ ପରାଙ୍‌ମୁଖ ଦୀପିକା ସଂପାଦକ ଗୋଲକଧନ୍ଦାଙ୍କ ଦୀର୍ଘ ପତ୍ରକୁ ସ୍ଥାନିତ କରିବାର ଯଥାର୍ଥ୍ୟ ନିବେଦନ ଛଳରେ ଲାଲାଙ୍କ ସମାଲୋଚନା ଜାତୀୟ ସାହିତ୍ୟର ପରିପନ୍ଥୀ ବୋଲି ମତବ୍ୟକ୍ତ କରିଛନ୍ତି ।"ଲାଲା ରାମନାରାୟଣ ରାୟ ଯେ ଶ୍ରମ ସ୍ୱୀକାର ପୂର୍ବକ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥମାନ ପଢ଼ିଅଛନ୍ତି ଏଥି ପାଇଁ ସେ ଧନ୍ୟବାଦର ପାତ୍ର ଅଟନ୍ତି । ମାତ୍ର ଦୁଃଖର ବିଷୟ ଯେ ସେ ଆଧୁନିକ ଉଗ୍ର ସଂସ୍କାରକଙ୍କର ଆଖିବାଟେ ବିଚାର ଦେଖି କରିବାକୁ ପ୍ରବୃତ୍ତ ହେବାରୁ ତାଙ୍କର ସମାଲୋଚନା ଚକୁଳି ଖାଇବା ଛାଡ଼ି ବିନ୍ଧ ଗଣିବା ନ୍ୟାୟକୁ ଅନୁସରି ଅଛି ଏବଂ ଏଥିପାଇଁ ଏତେ ଅନର୍ଥ ଉପସ୍ଥିତ ହୋଇଅଛି ।" *(୬)*

ଦୀପିକାରେ ପ୍ରକାଶିତ ଗୋଲକଧନ୍ଦାଙ୍କ ସମାଲୋଚନାର ଉତ୍ତର ହିତୈଷିଣୀ ତା୧୪-୬-୧୮୯୩ ରେ ପ୍ରେରିତ ପତ୍ର ସ୍ତଂଭରେ ଲାଲା ଦେଇଛନ୍ତି । ଏ ଲେଖା ଉପରେ ଦୀପିକାରେ ପୁଣି ଗୋଲକ ଧନ୍ଦାଙ୍କ ସମାଲୋଚନା ତା-୧.୭.୧୮୯୩ ରେ ପ୍ରକାଶ ପାଇଛି । ହିତୈଷିଣୀ ତା ୧୯.୭.୯୩ ପୃଷ୍ଠାରେ ଦାଶରଥି ରାଉତ ଭଞ୍ଜ ସାହିତ୍ୟର କଡା ସମାଲୋଚନା

କରି ଲୀଳାଙ୍କୁ ସମର୍ଥନ କରିଛନ୍ତି । ସେହି ସଂଖ୍ୟାରେ ଜଣେ ନିରପେକ୍ଷବାଦୀ କବି ଉପେନ୍ଦ୍ର ଭଞ୍ଜ ଶୀର୍ଷକରେ ତାଙ୍କୁ ଅଦ୍ୱିତୀୟ କବି ରୂପେ ଚିତ୍ରଣ କରିଛନ୍ତି । *(୭)*

ହିତୈଷିଣୀ୨୮.୬.୧୮୯୩ ସଂଖ୍ୟାରେ କବିଭୂଷଣ କଟକ ମହାଶୟ ରାମନାରାୟଣଙ୍କୁ ସଂବୋଧନ କରି ଯାହା ଲେଖିଥିଲେ*(୮)* ତାକୁ ଅତି ନିଷ୍ଠୁର ଭାବେ ଗୋଲକଧନ୍ଦା ଓ ଯୁବରାଜ ଦୀପିକା ୧୫.୭.୧୮୯୩ ପୃଷ୍ଠାରେ ସମାଲୋଚନା କରିଥିଲେ ।

''କି କଲି କି କଲି କି ବୁଦ୍ଧି ହୁଡ଼ିଲି
ବେନିନେତ୍ର ଥାଉଁ କଣା ମୁଁ ହୋଇଲି !!

x x x x

କି କଲି କି କଲି କି ବୁଦ୍ଧି ହୁଡ଼ିଲି
ମୃତ ଉପଇନ୍ଦ୍ର କାହିଁକି ରସିଲି ?
ଚାଲୁଣି ପରାୟ କାହିଁକି ନୋହିଲି
ଦୋଷ ଛାଡ଼ି ଗୁଣ କାହିଁକି ଖୋଜିଲି ?
'ନିତମ୍ବ ସୁକେଶୀ ଦେଖି ନ ପାରିଲି ?
'ଇଷି ଇଷି ଭାଷ' ଶୁଣି ନ ପାରିଲି
'ପର୍ଯ୍ୟଙ୍କ ପାଖକୁ' ଯାଇ ନ ପାରିଲି
କେଳିପୁର ରସ ପିଇ ନ ପାରିଲି । x x x x '' *(୯)*

ଏ କବିତା ଅପେକ୍ଷା 'ଯୁବରାଜ'ଙ୍କ 'ସମାଲୋଚକ କବିଭୂଷଣ' କବିତା ଆହୁରି କୁତ୍ସିତ ଇଙ୍ଗିତରେ ପରିପୂର୍ଣ୍ଣ ।

''ଶତବାର ଚୁମ୍ବେ ତବ ମୁଖ ଆନନ୍ଦରେ
ହେ କବି ଭୂଷଣ ! ଆଧୁନିକ ଉତ୍କଳର
କବିଙ୍କ ମୁକୁଟ....କରେ କର ମର୍ଦ୍ଦେ
ପୁନଶ୍ଚ ଆଦରେ, ଦେଖିତବ ଲେଖାଛଟା
ଏ ମହାଶ୍ମଶାନେ ଉତ୍କଳ ସାହିତ୍ୟର ।
x x x x x x x x
ତୋଷି 'ନବ୍ୟସଭ୍ୟ ଯୁବାଦଳ'କୁ ଆକଣ୍ଠେ
ଲାବଣ୍ୟବତୀର ମଧୁଶଯ୍ୟା ପର୍ଯ୍ୟଙ୍କରୁ
ସେ 'ରସେ' ସେ ରସହୀନ ହୁଅଇ ତୁଳନେ
ଆଦ୍ୟପ୍ରାନ୍ତ ରସ ଚଖା ତବ ମୁଖଦ୍ୱାରା
ବାମଣ୍ଡା ପୂର୍ବ ପୁରୁଷ ବଂଶ ଅବତଂଶ

ଗଙ୍ଗେଶ୍ୱର, କୌଶଲ୍ୟା କି ଜନକ କନ୍ୟାର
'ହୁଁ କୃତି' 'ଇଣିରାକ୍ଷଣ' 'ପର୍ଯ୍ୟଙ୍କ ରଞ୍ଜନ'-
ଶବଦ ବିହୀନ ଧୀର ପ୍ରଣୟ ନିଃଶୃତ
ଗୁପ୍ତଲୀଳା-ରସସୁଧା-ଭକ୍ଷଣ ସଙ୍ଗତେ ।'' (୧୦)

ଯୁବରାଜଙ୍କ କବିତାରେ ରାଧାନାଥଙ୍କ କବିତାରେ ପ୍ରଦର୍ଶିତ ଆଦିରସ ପ୍ରତି କୁଟୀଳ କଟାକ୍ଷ ରହିଛି । ଏ କବିତାକୁ ହିତୈଷିଣୀ ପୃଷ୍ଠାରେ ତୀବ୍ର ସମାଲୋଚନା କରାଯାଇଛି ।

''ସମାଲୋଚକ କବିଭୂଷଣ
ସାବଧାନ ! ସାବଧାନ ! ହେ କବିଭୂଷଣ
ଦିଅନାହିଁ ପଛ ଘୁଞ୍ଚା, ଲାଙ୍ଗୁଳ ଲୁଚାଇ
ପଳାଏ ପ୍ରାଣବିକଳେ ଯେହ୍ନେ ଶ୍ୱାନଶିଶୁ
ମହାବଳୀ ମହାବଳେ ଦେଖି ସମ୍ମୁଖରେ ।
x x x x      x x x x
ନ ହୁଅ ନ ହୁଅ ଦୁଃଖୀ ହେ କବି ଭୂଷଣ
ଶୁଣି ଓଡ଼ିଶା ଗୋଲକ ଯୁବରାଜ କଥା
x x x x      x x x x
ହେ ଗୋଲକ !
ଅଭାବ କାହିଁର ! ଦେଇଛନ୍ତି ସବୁଦ୍ରବ୍ୟ
କେଳିଗୁରୁ କବିଚନ୍ଦ୍ର ଉପଇନ୍ଦ୍ର ବୀର
x x x x      x x x x
ହେ ପ୍ରାତିଆ ଦଳପତି କହ ସତ୍ୟକରି
x x x x      x x x x
କହ କହ ଯୁବରାଜ ନ କରି କପଟ
କାହା ଯୁବରାଜ ତୁମ୍ଭେ କାହିଁ ତବ ଧାମ ?
କହନ୍ତୁ ବା ଦୀପିକାର, ସେ ତ ଅପ୍ରତିକ !!
ତେବେ କିହେ ତୁମ୍ଭେ ଓଡ଼ିଶ୍ୟାର ଯୁବରାଜ ?
ଯୁବକ ଦଳ ଅଗ୍ରଣି ! କହ ସତ ସତ
ଯଦି ବା ଓଡ଼ିଶ୍ୟା ବାସୀଙ୍କର ଯୁବରାଜ
ଦୀପିକା କୋଳରେ କିଂପା ଏତେ ଲୀଳାଖେଳା ?
ଧନ୍ୟା ସେ ଦୀପିକା ଯେହୁ ଏହୁ ଯୁବରାଜେ

ବସାଇ ଅଛନ୍ତି ନେଇ ଅପଣା କ୍ରୋଡ଼ରେ
ଦୁହେଁ ଦୁହିଁଙ୍କ ଯୋଗରେ ଆହା ! କି ସୁନ୍ଦର !!
ବର୍ଣ୍ଣିବାକୁ କେ ସକ୍ଷମ ସେ ମିଳନ ଶୋଭା
ପ୍ରାବୃଟେ ପୁରିଷ ଗର୍ଭେ କୃମୀ କୀଟ ପରି
ଲୀଳା ଖେଳା ତୁଳାଯାଇପାରେ କିହେ କହ ?" *(୧୧)*

ଏ ବାଦ ବିବାଦ ମଧ୍ୟରେ ଅଜସ୍ର ପ୍ରବଂଧ କବିତାଦି ଦୀପିକା ଓ ହିତୈଷିଣୀକୁ ଆସିଲା । ଫଳରେ ବାଧ ହୋଇ ଦୀପିକା ଇନ୍ଦ୍ରଧନୁକୁ ସୃଷ୍ଟିକଲା ଓ ହିତୈଷିଣୀର ଉପପତ୍ର ରୂପେ ବିଜୁଳିର ଆବିର୍ଭାବ ହେଲା । ଏ ଦୁଇ ପତ୍ରର ସ୍ୱରୂପ ବିଶ୍ଳେଷଣ କରି ହିତୈଷିଣୀ ଘୋଷଣା କରିଛି, "ଆଜିକାଲି ଉତ୍କଳରେ ଇନ୍ଦ୍ରଧନୁ ଓ ବିଜୁଳି ନାମକ ଦୁଇଖଣ୍ଡି ଅସାମୟିକ ପତ୍ର ଆଡମ୍ବରର ସହିତ ପ୍ରକାଶିତ ହେବାକୁ ଆରମ୍ଭ ହୋଇଅଛି । ଏକା ଉପେନ୍ଦ୍ର ଭଞ୍ଜ ବିଷୟନେଇ ପତ୍ରିକା ଦ୍ୱୟ ପ୍ରକାଶିତ ହେଉଥିଲେ ହେଁ ଉଭୟ ପତ୍ରର ଉଦ୍ଦେଶ୍ୟଗତ ପାର୍ଥକ୍ୟ ରହିଅଛି । ଏକ ପକ୍ଷ ଉପେନ୍ଦ୍ର ଭଞ୍ଜଙ୍କ ଦୋଷ ଗୁଡ଼ିକ ଦେଖାଇ ଦେବାକୁ ଉଦିତ, ଅପର ପକ୍ଷ ତାଙ୍କର ଦୋଷକୁ ଗୁଣରୂପେ ବ୍ୟକ୍ତ କରିବାକୁ ବଦ୍ଧ ପରିକର । ଏହି ସୂତ୍ରରେ ଉତ୍କଳର ଶିକ୍ଷିତ ବ୍ୟକ୍ତିମାନେ ପ୍ରଧାନତଃ ତିନିଶ୍ରେଣୀରେ ବିଭକ୍ତ ହୋଇଅଛନ୍ତି । ଏକ ଦଳ ଲୋକ ଉଭୟ ପକ୍ଷର କାର୍ଯ୍ୟକୁ ଅନୁମୋଦନ କରନ୍ତି ନାହିଁ, ଅପର ଦୁଇ ଦଳରୁ ଏକ ଦଳ ସପକ୍ଷରେ ଏବଂ ଏକଦଳ ବିପକ୍ଷରେ । ଏପରି ଦଳାଦଳି ବେଳେ ଆମ୍ଭ ମାନଙ୍କର ମୀମାଂସା ସର୍ବ ସମ୍ମତ ହେବାର ଆଶା ନାହିଁ ପୁଣି ଭଞ୍ଜ କବିତାର ଆଧ୍ୟାତ୍ମିକ ବୈଜ୍ଞାନିକ ବ୍ୟାଖ୍ୟା କରିବାକୁ ଆମ୍ଭମାନଙ୍କର ବଳ ନାହିଁ । ସୁତରାଂ ଏ ସ୍ଥଳେ ମୌନ ଭାବରେ ରହିବା ଶ୍ରେୟସ୍କର ।

ନିଜ ପକ୍ଷ ସମର୍ଥନ ସକାଶେ ଯେ ଯାହା କହନ୍ତୁ ନା କାହିଁକି ବର୍ତ୍ତମାନ ଭଞ୍ଜ କାବ୍ୟକୁ ଆଦର୍ଶ କାବ୍ୟରୂପେ ସ୍ଥାପନ କରିବା କଦାପି କର୍ତ୍ତବ୍ୟ ନୁହେଁ । ଏହା ଆମ୍ଭମାନଙ୍କର ଧ୍ରୁବ ଧାରଣା । x x x x " *(୧୨)*

ହିତୈଷିଣୀ ୫/୧୫ ସଂଖ୍ୟାରେ ବିଶ୍ୱନାଥ କରଙ୍କ "କବି ଉପେନ୍ଦ୍ର ଭଞ୍ଜ" ପ୍ରବନ୍ଧ ଓ ଦାମୋଦର ପଟ୍ଟନାୟକ ଙ୍କ 'ଉପେନ୍ଦ୍ର କାବ୍ୟ' ଶୀର୍ଷକ ପ୍ରବନ୍ଧ ପ୍ରକାଶ ପାଏ । ଭଞ୍ଜ ବିଷୟରେ ରାଶି ରାଶି ପ୍ରବନ୍ଧ ହିତୈଷିଣୀର ହସ୍ତଗତ ହେଉଥିଲା । ଏ ସବୁ ଉପେକ୍ଷା ନକରି ସୁବିଧା କ୍ରମେ ଏ ପତ୍ରିକା ପରିବେଷଣ କରୁଥିଲା । ଭଞ୍ଜ ପ୍ରବନ୍ଧ ଗୁଡ଼ିକ ବିଶେଷ ସ୍ଥାନ ଓ ସମୟ ନେଉଥିବାରୁ ଅନ୍ୟାନ୍ୟ ବିଷୟ ପ୍ରତି ସଂପାଦକୀୟ ଗୁରୁତ୍ୱ ଦେବା ଓ ସ୍ଥାନ ଦେବା ସଂଭବ ହେଉ ନଥିଲା । ଏଥିପ୍ରତି ପାଠକ ଓ ଲେଖକମାନେ ବିରକ୍ତ ନ ହେବାକୁ ହିତୈଷିଣୀ 'ନିବେଦନ' କରିଥିଲା । *(୧୩)*

ଯଦିଓ ହିତୈଷିଣୀ ଓ ଦୀପିକା ନିଜ ନିଜ ପକ୍ଷ ସମର୍ଥନ କରୁଥିଲେ ତଥାପି ହିତୈଷିଣୀ ଭଞ୍ଜ ସପକ୍ଷବାଦୀ ରଚନାକୁ ସ୍ଥାନ ଦେଉଥିଲା । ଏ ପ୍ରସଙ୍ଗରେ ଜନୈକ ନିରପେକ୍ଷବାଦୀ, ଉଚିତବକ୍ତା, କାଳୀ ଚରଣ ଦ୍ୱିବେଦୀ ପ୍ରମୁଖଙ୍କ ପ୍ରବନ୍ଧକୁ ସ୍ମରଣ କରାଯାଇପାରେ । ହିତୈଷିଣୀ ଉଭୟ ଦଳଙ୍କୁ ଉତ୍ସାହିତ କରିବାରେ କାର୍ପଣ୍ୟ କରିନାହିଁ । ''ବିଜୁଳୀ ଓ ଇନ୍ଦ୍ରଧନୁ'' ଶୀର୍ଷକ ସଂବାଦରେ ଏହା ଘୋଷଣା କରିଛି, ''ତୃତୀୟ ସଂଖ୍ୟା ଇନ୍ଦ୍ରଧନୁ ଓ ଦ୍ୱିତୀୟ ସଂଖ୍ୟା ବିଜୁଳୀ ଏଥର ବର୍ଦ୍ଧିତ କଳେବରରେ ବଡ ଦର୍ପରେ ବାହାରି ଅଛନ୍ତି । ବିଜୁଳୀର ବଜ୍ର ନିର୍ଘୋଷ ପ୍ରବନ୍ଧଟି ସାରଗର୍ଭ ଓ ଯୁକ୍ତିପୂର୍ଣ୍ଣ । ଉଭୟ ପତ୍ରିକା ଦୃଷ୍ଟେ ଉଭୟ ଦଳ ନବୋତ୍ସାହରେ ମାତିଥିବା ଦେଖାଯାଏ । ଓଡ଼ିଶାର ସାହିତ୍ୟ ସଂସାରରେ ଯେ ଟିକିଏ ଜୀବନୀ ଶକ୍ତିର ସଞ୍ଚାର ହୋଇଅଛି, ଉଭୟ ପତ୍ରିକା ଦୃଷ୍ଟେ ଏହାର ପରିଚୟ ମିଳୁଅଛି । ଯେଉଁ ରାମ ନାରାୟଣ ବାବୁଙ୍କ ଯୋଗୁଁ ଏ ନବଯୁଗର ଆବିର୍ଭାବ ହୋଇଅଛି ସେ ଅଶେଷ ଧନ୍ୟବାଦର ପାତ୍ର । ଈଶ୍ୱର ତାଙ୍କର ମଙ୍ଗଳ କରନ୍ତୁ ।'' *(୧୪)*

ସେହି ସଂଖ୍ୟା ହିତୈଷିଣୀରେ ''ବର୍ତ୍ତମାନ ଆନ୍ଦୋଳନ ସମ୍ବନ୍ଧେ ଦୁଇ ଚାରିକଥା'' ଶୀର୍ଷକରେ ବାମଣ୍ଡାର ବିଶ୍ୱନାଥ ପାଣିଗ୍ରାହୀ ନିରପେକ୍ଷ ମତ ପ୍ରଦାନ କରିଛନ୍ତି । ଏବଂ ଦାଶରଥି ରାଉତ ହିତୈଷିଣୀରେ ନୁହେଁ ବିଜୁଳୀରେ ଆରୋହଣ କରି ଗୋଲକଧନ୍ଦାଙ୍କ ସହିତ ଯୁଦ୍ଧ କରିବାର ଘୋଷଣା କରନ୍ତି ।''......ହେ ଗୋଲକ ଧନ୍ଦେ ! ଯେତେବେଳେ ତୁମ୍ଭେ ସତ୍ୟ ଭଗ୍ନ କରିଅଛ ଆମ୍ଭେ ଜାଣିଲୁଣି ତୁମ୍ଭେ ସାମାନ୍ୟ ପିତୁଳୀ ନୁହ । ତୁମ୍ଭେ ଯେପରି ଉନ୍ମତ୍ତ ହୋଇଅଛ ଏବଂ ବର୍ତ୍ତମାନ ଯେପରି ତୁମ୍ଭର ଦଶା ହୋଇଅଛି ସେଥିପ୍ରତି ତୁମ୍ଭଙ୍କୁ ତୀବ୍ରତର ଔଷଧ ପ୍ରୟୋଗ ନ କଲେ ତୁମ୍ଭେ ପ୍ରକୃତିସ୍ଥ ହେବ ନାହିଁ ତେଣୁ ତୁମ୍ଭର ରୋଗର ଉପଯୁକ୍ତ ବ୍ୟବସ୍ଥା ହେଉଅଛି । ତୁମ୍ଭର ପ୍ରକୃତ ଶତ୍ରୁ ଗୋପରେ ସଜ୍ଜିଭୂତ ହେଉଅଛି । ତୁମ୍ଭେ ଯେଣୁ ସତ୍ୟ ଭାଙ୍ଗିଅଛ ସେଥିକି ଆଉ ଆମ୍ଭେ ଏହି ହିତୈଷିଣୀ କ୍ଷେତ୍ରରେ ରହି ତୁମ୍ଭ ସଙ୍ଗରେ ବଚସା କରିବାକୁ ଇଚ୍ଛା କରୁନାହୁଁ ସ୍ୱର୍ଗରୁ ପୁଷ୍ପକ ବିମାନ ଅଣାଇବାକୁ ପଡିଲାଣି ।'' *(୧୫)*

ହିତୈଷିଣୀ ୫/୧୯ ସଂଖ୍ୟାରେ ଏ ବିବାଦ ଅବସାନ କଳ୍ପେ ଶ୍ରୀ ଜ -ଦାସ, ବାମଣ୍ଡାଙ୍କ କବିତା ଓ ୫/୨୧ ସଂଖ୍ୟାରେ ଜନୈକ ଦେଶ ସେବକଙ୍କ 'ବୃଥା ବିବାଦ' ପ୍ରକାଶ ପାଇଛି । ଶ୍ରୀ ଜ -ଦାସ ଙ୍କ 'କଳିଭଙ୍ଗା ଡବଲ ଚୌତିଶା' ବେଶ୍ ହାସ୍ୟାତ୍ମକ ହୋଇ ପାରିଥିଲା ।

କେ ଦେବ ଭଞ୍ଜ କଳି ଭଙ୍ଗାଇ
କେହିକି ବିବେକ ମହୀରେ ନାହିଁ (ଘୋଷା)
x x x x x x x x
ଛଙ୍କା ଇନ୍ଦ୍ରଧନୁ ଭଞ୍ଜନାମରେ
ଛକି ବୁଲୁ ଅଛି ମର୍ତ୍ତ୍ୟଧାମରେ ହେ

x x x x x x x x

ନୃପକୁଳ ଚନ୍ଦ୍ର ବାମଣ୍ଡା ଈଶ

ନିରପେକ୍ଷବାଦୀ ବିଜ୍ଞ ନରେଶ ହେ ।'' (୧୬)

ଓଡ଼ିଶା ଶିକ୍ଷା କ୍ଷେତ୍ରରେ ରାଧାନାଥ ଥିଲେ ସର୍ବମୟ କର୍ତ୍ତା, ଇନ୍ଦ୍ରଧନୁର ଲେଖକ ସମୂହ ବିଭିନ୍ନ ସମୟରେ ରାଧାନାଥଙ୍କ ବିରୁଦ୍ଧରେ ପାଠ୍ୟପୁସ୍ତକ ନିର୍ବାଚନ ପ୍ରସଙ୍ଗରେ ଲେଖନୀ ଚଳାଇ ଆସିଥିଲେ । ରାଧାନାଥଙ୍କ ବିରୁଦ୍ଧରେ ଏମାନଙ୍କର ଦୀର୍ଘ ଦିନର ଅଶାନ୍ତି କ୍ରୋଧାଗ୍ନି ରୂପେ ଜଳି ଉଠିବା ପାଇଁ ଏକ ଶୁଭ ମୁହୂର୍ତ୍ତର ଅପେକ୍ଷାରେ ଥିଲା । ''ରାମନାରାୟଣଙ୍କ ପ୍ରବନ୍ଧ କେବଳ ଏର ଅଗ୍ନିରେ ଇନ୍ଧନ ଯୋଗାଇଥିଲା ।'' (୧୭) ରାଧାନାଥଙ୍କ ବିରୁଦ୍ଧରେ ମୁଖ୍ୟତଃ ଇନ୍ଦ୍ରଧନୁ ଗୋଷ୍ଠୀ ନିଜର ଅଶାନ୍ତି ପ୍ରକଟ କରୁଥିଲେ । ଏମାନଙ୍କୁ ପରଶ୍ରୀକାତର ନିନ୍ଦୁକ ରୂପେ ହିତୈଷିଣୀରେ ଅକ୍ଷେପ କରାଯାଉଥିଲା ।

''ହେ ନିନ୍ଦୁକେ ! ଜାଣେଁ ମୁଁ ତୁମ୍ଭ ସମସ୍ତଙ୍କୁ

ପରଶ୍ରୀକାତର ଯାର ଅଟେ ନାମାନ୍ତର

କରି ସେହି ପଦ ସଦା ମରୁଅଛ ଜଳି

ସେହି ତୁମ୍ଭେ ଏତେକାଳ ଲୁଚି ଅନ୍ତରାଳେ

ଛିଦ୍ର ଅନ୍ୱେଷଣ କରି ବୁଲୁଥିଲ ତାର,

ଏବେ ବାହାରିଲ ମେଳ ବାନ୍ଧିଣ ପଦାକୁ ।

ଭଲାହେ କପଟୀକୁଳ ସତ କହିବଟି

ନେଇଛି କି ଛଡାଇ ସେ ତୁମ୍ଭ ଗଣ୍ଠି ଧନ,

ଧନ,ମାନ ଯଶ ଆଦି ଅବା ଆଉ କିଛି ?

କିମ୍ବା ହନ୍ତାରକ ହେଲା ଅର୍ଜନେ ସେ ମାନ ?

ଅଥବା କରୁଛ ଶଙ୍କା କାଳେ ରାଧାନାଥ

ବସିଯିବ ତବ ଇଷ୍ଟ ଗୁରୁଙ୍କ ଆସନେ । x x x x '' (୧୮)

ରାଧାନାଥ ଆକ୍ଷେପର ଶୀର୍ଷାରୋହଣ କରିଥିଲା 'ବକ ଚରିତ' କାବ୍ୟ । ଏହା ଇନ୍ଦ୍ରଧନୁର ପ୍ରଥମ ଭାଗ ତ୍ରୟୋଦଶ ଓ ପଞ୍ଚଦଶ ସଂଖ୍ୟାରେ ପ୍ରକାଶ ପାଇଥିବାର ଜଣାଯାଏ । ଆର୍ତ୍ତତ୍ରାଣ ଶତପଥୀଙ୍କ 'ନବ୍ୟଉତ୍କଳ ମହାକାବ୍ୟର ଟୀକା'ରୁ ଅନୁସଂଧାନ କଲେ ଜଣାପଡେ ରାଧାନାଥଙ୍କୁ ବକ ରୂପେ ଚିତ୍ରଣ କରାଯାଇଛି । ଏହାର ତୀବ୍ର ବିଷୋଦ୍‌ଗାରକୁ ଅନୁମାନ କରାଯାଇପାରେ -

''ଉତ୍ସର୍ଗ ପତ୍ରେ ତିନି ଚାରି ଭୂପ

ବାନ୍ଧି ସ୍ୱାର୍ଥ ସିଦ୍ଧି କଲା ଅମାପ

ନୀଚ ବୃତ୍ତି ଭଜି
ବ୍ୟାଜସ୍ତବେ ବୁଦ୍ଧିଯିବାରୁ ହଜି ।
x x x x
ଦସ୍ୟୁତା ଚାତୁରୀ କରି ଆଶ୍ରୟ
ବିଲାତକୁ ଯାଇ ନ କରି ଭୟ
ଆଣି ଗୁପତରେ ରତ୍ନ ଉଠାଇ
ତାଳ ବାହୁଙ୍କାରେ ଦେଲା ଲମ୍ଭାଇ
x x x x
ଉପେନ୍ଦ୍ରକୁ ରଖି ଶୃଙ୍ଗାର ରସେ
ତାହାକୁ ଜିଣିବା ଗୁଣି ମାନସେ
ଚାରି ପାଞ୍ଚଖଣ୍ଡ ଦେଢ଼ ପତ୍ରିଆ
ରଚି ବୋଲାଇଲା ମହାରଥିଆ
ଧୀରେ ଦେଲା ଚାଳି
ପଡ଼ିଲା ଦେଶରେ ଯଶ ଉଛୁଳି
x x x x
ଦେଖାଯିବ ଥିଲେ ପିଣ୍ଡେ ପରାଣ
ଲୋଡା ହେବ ନାହିଁ ସାର ପ୍ରମାଣ
ଧରମଛତାର ହୀନ କରମ
ସ୍ୱଭାବେ ତାହାର ନଷ୍ଟ ମରମ
ବକଧର୍ମ ନୀତି
ଦେଖିବା କିପରି ଯିବ ବରତି ।
ଧାନୁଷ ମଣ୍ଡଳୀ ଅଛନ୍ତି ବେଢ଼ି
ବେନି ପାଦେ ଦେବେ ଲଗାଇ ବେଡ଼ି
ଦେଖୁନାହିଁ କିଛି ବକ ବାଳୀଶ
ପୋଡ଼ିଯାଉ ତାର କୋଆଳି ନିଶ
ଆଉ କେତେଦିନ
କାଳିମାରେ ମୁଖ ହେବ ମଳିନ ।'' (୧୯)

ଏ ବକ ଚରିତ ତତ୍‌କାଳୀନ ଉତ୍କଳୀୟ ବାଙ୍ମୟରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ରାଧାନାଥ ପକ୍ଷୀୟ ଲେଖକମାନେ ବିବ୍ରତ ଓ ସନ୍ତ୍ରସ୍ତ ହୋଇ ଏହାର ପରବର୍ତ୍ତୀ ଅଂଶ ପ୍ରକାଶ

ନ ପାଇବାକୁ ଘୋର ତତ୍‌ପରତା ପ୍ରକାଶ କରିଥିଲେ । ରାଧାନାଥଙ୍କ ଘନିଷ୍ଠ ବନ୍ଧୁ ଆର୍ତ୍ତତ୍ରାଣ ଶତପଥୀ ତତ୍‌କାଳୀନ ବୁଦ୍ଧିଜୀବୀ ମାନଙ୍କୁ ଏହାର ତୀବ୍ର ପ୍ରତିବାଦ କରିବାକୁ ଆହ୍ୱାନ ଦେଇଥିଲେ । *(୨୦)* ବଙ୍କ ଚରିତ ବିରୁଦ୍ଧରେ ଅନେକ ନିରପେକ୍ଷ ଲେଖକ ସକ୍ରୀୟ ହୋଇ ଉଠିଥିଲେ । ହିତୈଷିଣୀ ୧୬.୫.୧୮୯୪ ସଂଖ୍ୟାରେ ପଣ୍ଡିତ ଭାଗୀରଥି ରଥ ବଙ୍କ ଚରିତର ସମାଲୋଚନା କରି ଏହାର ଅସାରତା ଦର୍ଶାଇଥିଲେ । ହିତୈଷିଣୀ ୬.୬.୧୮୯୪ ସଂଖ୍ୟାରେ ବାମଣ୍ଡାର ରାଜକୁମାର କବି ସଚ୍ଚିଦାନନ୍ଦ ମଧ୍ୟ ଇଂରାଜୀରେ To the crane ରଚନା କରିଥିଲେ । ତାଙ୍କର ଏ କ୍ଷୁଦ୍ର ରଚନାରେ ରାଧାନାଥଙ୍କ ପରି ପ୍ରାଜ୍ଞ ବିରୁଦ୍ଧରେ ବିରୁଦ୍ଧମତବାଦୀଙ୍କ ଷଡଯନ୍ତ୍ରକୁ ସଚ୍ଚିଦାନନ୍ଦ ରାଧାନାଥଙ୍କ ମହାନତାର ପ୍ରତୀକ ବୋଲି ସୂଚାଇଛନ୍ତି । "x x x When true genius appeareth in the world you may know him by this infallible sign that the dunes are all in confederacy against him. The world invariably hates a man of genious when he is alive. He distrubs the nations of the multitude. He throws stones into still puddle of their existence and creates ripples which they donot like; but when he is dead they cry" (୨୧)

ବଙ୍କ ଚରିତ ପ୍ରକାରାନ୍ତରେ ରାଧାନାଥଙ୍କୁ 'ଓଡ଼ିଆ ଓ ନବସଂବାଦ'ରେ ଏକ ଦୀର୍ଘ ପତ୍ର ପ୍ରକାଶ କରିବାକୁ ବାଧ କରିଥିଲା । ରାଧାନାଥଙ୍କ ଏଗାର ଅନୁଚ୍ଛେଦ ବିଶିଷ୍ଟ ଏ ପତ୍ର ୫.୨.୧୮୯୪ ତାରିଖରେ ଲେଖାହୋଇ ଓଡିଆ ଓ ନବସଂବାଦ ତା ୧୪.୩.୧୮୯୪ ସଂଖ୍ୟାରେ ପ୍ରକାଶ ପାଇଥିଲା । ଏ ପତ୍ର ତାରିଖ ସଂପର୍କେ ମତଦ୍ୱେଧ ରହିଛି । ସେ ଯା ହେଉ ଏ ପତ୍ରରେ ରାଧାନାଥ ନିଜକୁ ''ଭଞ୍ଜଙ୍କର ଅଧିକ ଅନୁକାରୀ'' କହିବା ବା ''ରାମ ନାରାୟଣ ବାବୁ ଏକ ଏକ ସ୍ଥଳେ ଭଞ୍ଜଙ୍କ ରଚନା ପ୍ରତି ଅଯଥା ଅକ୍ଷେପ କରିଅଛନ୍ତି'' ସ୍ୱୀକାରୋକ୍ତି ବାଢ଼ିବାଦ୍ୱାରା ବିଜୁଳି ଦଳ କ୍ଷୁବ୍ଧ ହୋଇଥିଲେ । 'ବାଚସ୍ପତି' ଛଦ୍ମନାମ ଧାରୀ ଜନୈକ ଲେଖକ ''ଭଞ୍ଜୀୟ ଆନ୍ଦୋଳନ ଓ ରାଧାନାଥ ବାବୁ'' ଶୀର୍ଷକ ଲେଖାରେ ରାଧାନାଥଙ୍କ ପତ୍ର ପ୍ରତି ନିଜର ବିରକ୍ତି ପ୍ରକାଶ କରିଛନ୍ତି-''ଭଞ୍ଜୀୟ ଆନ୍ଦୋଳନର ଆରମ୍ଭରୁ ରାଧାନାଥ ବାବୁଙ୍କୁ ନେଇ ଟଣା ଓଟରା ଲାଗିଅଛି । ଅଶ୍ଳୀଳତା ସମର୍ଥନକାରୀ ଦଳ ରାଧାନାଥ ବାବୁଙ୍କ ପ୍ରତି ଯେପରି କୁବ୍ୟବହାର କରି ଆସୁଅଛନ୍ତି ଏବଂ ଦିନକୁ ଦିନ ସେମାନଙ୍କର କୁ ପ୍ରବୃତ୍ତି ଯେପରି ବଢୁଅଛି, ତାହା ଭାବିଲେ ଲଜ୍ଜା, ଘୃଣା ଓ କ୍ଷୋଭରେ ହୃଦୟ ଅସ୍ଥିର ହୁଏ । ଏପରି ସାହିତ୍ୟ-ଚର୍ଚ୍ଚାକୁ ଶତଧିକାର ଦେଇ ଦୂରେ ପଳାୟନ କରିବାକୁ ଇଚ୍ଛାହୁଏ । ରାଧାନାଥ ବାବୁ ଏତେକାଳ ନୀରବ ରହି କାହିଁକି ଯେ ହଠାତ୍ ଆସି ରଙ୍ଗଭୂମିରେ ଦେଖାଦେଲେ ଆମ୍ଭେମାନେ ବୁଝି ପାରୁ ନାହୁଁ । x x x x ରାଧାନାଥ ବାବୁ ବିରୋଧୀ ଦଳର ମନ ଫେରାଇବା ପାଇଁ କହି ଅଛନ୍ତି ''ମୋହୋଠାରୁ ଭଞ୍ଜଙ୍କର ଅଧିକ ଅନୁକାରୀ ପଦ୍ୟଲେଖକ ଓଡ଼ିଶାରେ ବୋଧହୁଏ ଅଛି

ବାହାରିବେ ।'' ଆମ୍ଭେମାନେ କହୁଁ ଏଣିକି ଉକ୍ରଟ ଆଦି ରସାଶ୍ରିତ କରି ଖଣ୍ଡେ ଅଧେ କାବ୍ୟ ଲେଖି ପାରିଲେ ବିପକ୍ଷମାନେ ତାଙ୍କୁ ମୁଣ୍ଡରେ ବସାଇ ନୃତ୍ୟ କରିବେ । x x x x

ଇନ୍ଦ୍ରଧନୁର 'ବିଜ୍ଞ ମହାତ୍ମା' ମାନଙ୍କ ମତାନୁସରଣ କରି ରାଧାନାଥ ବାବୁ ମଧ ଉକ୍ରଟ ଆଦିରସାଶ୍ରିତ ପଂକ୍ତି ମାନଙ୍କୁ ଆର୍ଷ ପ୍ରୟୋଗ ରୂପେ ଗ୍ରହଣ କରିବାକୁ ପରାମର୍ଶ ଦେଇ ଅଛନ୍ତି । ଉକ୍ତ ''ବିଜ୍ଞ ମହାତ୍ମା''ମାନେ ଏ ପର୍ଯ୍ୟନ୍ତ ଯେପରି ସାହିତ୍ୟଜ୍ଞତା ଓ କାବ୍ୟ ରସିକତା ପ୍ରଦର୍ଶନ କରି ଆସିଛନ୍ତି ସେଥିରେ ସେମାନଙ୍କ ପକ୍ଷରେ ବିଚିତ୍ର ବା ଅସଙ୍ଗତି ବୋଲି କିଛି ନାହିଁ। ରାଧାନାଥ ବାବୁ ଯେ ଏପରି ହାସ୍ୟାସ୍ପଦ କଥା କହିପାରିବେ, ଏପରି ଧାରଣା ଆମ୍ଭମାନଙ୍କର ନ ଥିଲା । ଆମ୍ଭେମାନେ ଦେଖି ଶୁଣି ଅବାକ୍ ହୋଇଅଛୁଁ । ଏ ସଂସାରରେ ମନୁଷ୍ୟ ପକ୍ଷରେ କିଛି ଅସମ୍ଭବ ନୁହେଁ ।'' *(୨୨)*

ରାଧାନାଥ ସାହିତ୍ୟର ପ୍ରତିଷ୍ଠା କଳ୍ପେ ସଂଗ୍ରାମରତ ସମାଲୋଚକଗଣ ଏ ପତ୍ର ପରେ ନିରୁତ୍ସାହିତ ହୋଇଥିଲେ । ଏ ପତ୍ର ବିବାଦ ଭଞ୍ଜନର ପ୍ରଧାନ ଓ ଏକମାତ୍ର ହେତୁ ରୂପେ ଅନେକ ସମାଲୋଚକ ସ୍ୱୀକାର କରିଥିଲେ ହେଁ ପ୍ରକୃତରେ ସେୟା ନୁହେଁ । ବରଂ ଏହାକୁ ଅନ୍ୟତମ କାରଣ ରୂପେ ଗ୍ରହଣ କରାଯାଇପାରେ ଏବଂ ଏହାଯୋଗୁଁ ଆନ୍ଦୋଳନରେ ଶିଥିଳତା ଆସିଥିଲା । ଏ ପତ୍ର ପ୍ରକାଶ ପରେ ମଧ ଅଧିକ ଛଅମାସ କାଳ ବିଜୁଳି ପ୍ରକାଶ ଲଭିଥିଲା । ବିଜୁଳି ସଂପାଦକ ଦାଶରଥି ରାଉତ ୨୧.୯.୧୮୯୪ ରେ ଦେବଗଡରୁ ବିଦାୟ ନେଇ ବୌଦକୁ ପ୍ରସ୍ଥାନ କରନ୍ତି । *(୨୩)* ବିଜୁଳି ଚତୁର୍ଦ୍ଦଶ ସଂଖ୍ୟା ଅକ୍ଟୋବର ୧୮୯୪ ରେ ପ୍ରକାଶ ପାଇ ଏହାକୁ ଶେଷ ସଂଖ୍ୟା ରୂପେ ଘୋଷଣା କରେ । ହିତୈଷିଣୀ ଏହାକୁ ସୁବିବେଚନାର କାର୍ଯ୍ୟ ବୋଲି ସ୍ୱାଗତ କରିଛି । ''ବିଜୁଳି ବନ୍ଦ'' ଶୀର୍ଷକ ସଂବାଦରେ କୁହାଯାଇଛି ତିନିଶତ ବର୍ଷରେ ମଧ ଏ ବିବାଦ ତୁଟି ନଥାନ୍ତା । ଏଣୁ ବିଜୁଳି ବନ୍ଦ କରିଥିବାରୁ କର୍ତ୍ତୃପକ୍ଷ ମାନଙ୍କୁ ଧନ୍ୟବାଦ ପ୍ରଦାନ କରାଯାଇଛି । ବାମଣ୍ଡା ସଂବାଦ ଶୀର୍ଷକରେ କୁହାଯାଇଛି ''........ଯେଉଁ ବିବାଦରେ ସୁଫଳ ଅପେକ୍ଷା କୁଫଳର ଆଧିପତ୍ୟ ଅଧିକ ତାହା ସମୂଳେ ଲୋପ ପାଇବା ବାଞ୍ଛନୀୟ । ବିଜୁଳି ଅନ୍ତର୍ହିତ ହୋଇ ସୁବିବେଚନାର କାର୍ଯ୍ୟ କରିଅଛି ।'' *(୨୪)*

ଇନ୍ଦ୍ରଧନୁ-ବିଜୁଳି ସାରସ୍ୱତ କଳହର ଅନ୍ତରାଳେ ଆଧୁନିକ ସାହିତ୍ୟ ପ୍ରତିଷ୍ଠିତ ହେଲା । ସମାଲୋଚନାର ତୀବ୍ରତା ମଧରେ ସତ୍ ସାହିତ୍ୟର ପ୍ରତିଷ୍ଠା ହେଲା । ଯଦିଓ ରାଧାନାଥ ସାହିତ୍ୟ ସ୍ୱୀକୃତୀ ଲଭିଲା ତଥାପି ରାଧାନାଥୀ ଆହରଣ ପ୍ରକ୍ରିୟା ସମାଲୋଚିତ ହେଲା । ଏହାର ଫଳ ସ୍ୱରୂପ ମୌଳିକ ଓଡ଼ିଆ ସାହିତ୍ୟ ସୃଷ୍ଟିର ବୀଜ ରୋପଣ ହେଲା । ଯଥାର୍ଥରେ ନଟବର ସାମନ୍ତରାୟଙ୍କ ମତାନୁସାରେ ଏ କଳହର ତିନୋଟି ଫଳ ମଧରୁ ପ୍ରଥମତଃ ପ୍ରାଚୀନତାର ପ୍ରଚାର ମଧରେ ପ୍ରମାଣିତ ହେଲା, ଏ ଦେଶର ସାଂପ୍ରତିକ ଲୋକରୁଚି ଆଧୁନିକ ସାହିତ୍ୟର ଅନୁକୂଳ । ଦ୍ୱିତୀୟତଃ ଆଧୁନିକ ସାହିତ୍ୟ ତଥା ରାଧାନାଥ ସାହିତ୍ୟର ପ୍ରତିଷ୍ଠା । ତୃତୀୟତଃ ରାଧାନାଥ

ସାହିତ୍ୟର ନୀରବ ପ୍ରତିବାଦ ରୂପେ ଏକ ସ୍ୱତନ୍ତ୍ର ଧାରାର ଉତ୍‌ଥାନ ଯା'ର ନେତୃତ୍ୱ ନେଲେ ଫକୀର ମୋହନ, ଗଙ୍ଗାଧର, ନନ୍ଦକିଶୋର ପ୍ରମୁଖ ସାହିତ୍ୟରଥି *(୨୫)* ଏ ତିନୋଟି ପ୍ରସଙ୍ଗ ମୁଖ୍ୟତଃ ହିତୈଷିଣୀ କ୍ରୋଡରେ ଲାଳିତ ପାଳିତ ଓ ବିକଶିତ । ଆଧୁନିକ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିବାରେ ହିତୈଷିଣୀର ଅବଦାନ ଅତୁଳନୀୟ ।

## (ଖ) ନବୀନ ସାହିତ୍ୟିକଙ୍କ ଭୂସ୍ୱର୍ଗ :

ନବୀନ ସାହିତ୍ୟିକଙ୍କର ଭୂସ୍ୱର୍ଗ ଥିଲା ହିତୈଷିଣୀ । ହିତୈଷିଣୀ କ୍ରୋଡରେ ଅନେକ ସାଧକ ନିଜର ଉଚିତ ସମ୍ମାନ ଲଭିଥିଲେ । ୧୮୯୭ରେ ଉତ୍କଳ ସାହିତ୍ୟ ପ୍ରକାଶ ପର୍ଯ୍ୟନ୍ତ ସାହିତ୍ୟ ପତ୍ରର ଅଭାବ ଅନୁଭୂତ ହୋଇଥିଲା । ଦୀପିକା, ବାହିକା ସଂବାଦପତ୍ର ଥିଲେ । ସାହିତ୍ୟିକ ରଚନା ଏଥିରେ କ୍ୱଚିତ ବା ବିଶେଷ କାରଣ ବଶତଃ ପ୍ରକାଶ ପାଉଥିଲା । ଉତ୍କଳ ଦର୍ପଣ ମାସିକ ସାହିତ୍ୟ ପତ୍ରରୂପେ ୧୮୭୩ ଜାନୁୟାରୀରେ ପ୍ରକାଶ ଲଭିଥିଲା । ୧୮୭୫ ଜାନୁୟାରୀ ରୁ ଏହା ସଂବାଦ୍ ପତ୍ରରେ ପରିଣତ ହୋଇଥିଲା । ଜଣେ ଲେଖକଙ୍କ ଏ ପତ୍ରିକା ଉପରେ ମତ ପ୍ରଣିଧାନ ଯୋଗ୍ୟ-''ଆଜି କାଲି ସାହିତ୍ୟ ସଂସାରରେ ଉତ୍କଳ ଦର୍ପଣ ଏକମାତ୍ର ପତ୍ରିକା ଥିଲା । ଉତ୍କଳ ଦର୍ପଣ ଦ୍ୱାରା ଓଡ଼ିଶାର ସାହିତ୍ୟ ସଂସାରର ଯେ ସମସ୍ତ ଅଭାବ ଦୂରୀଭୂତ ହୋଇଥିଲା, ଏହା ଆମ୍ଭେମାନେ ବୋଲୁନାହୁଁ; ମାତ୍ର କେତେକ ଅଂଶରେ ଉପକାର ଦର୍ଶୁଥିଲା ଓ ଭବିଷ୍ୟତକୁ ପ୍ରଭୂତ ଉପକାର ଦର୍ଶିବାର ଆଶା ଥିଲା । ଏମନ୍ତ ସ୍ଥଳେ ଯେ ଦର୍ପଣର ଅଧିକାରୀ କିଂପାଇ ଆପଣା ମତ ବଦଳାଇଲେ ତାହା ସହଜରେ ବୁଝାଯାଉ ନାହିଁ ।'' *(୨୬)* ୧୮୭୫ ରୁ ପାକ୍ଷିକ, ୧୮୭୭ରୁ ସାପ୍ତାହିକ ଓ ୧୮୮୫ ଡିସେମ୍ବରରେ ଏହା ବନ୍ଦ ହୋଇଯାଇଥିଲା । ଉତ୍କଳ ମଧୁପ ୧୮୭୮ ଏପ୍ରିଲରେ ଦ୍ୱିତୀୟ ସାହିତ୍ୟ ପତ୍ରିକା ରୂପେ ପ୍ରକାଶ ଲଭିଥିଲା । ଏହାର ଆଭିମୁଖ୍ୟଥିଲା ଭଞ୍ଜ ପ୍ରଭୃତି କବିଙ୍କର ରଚନାର ସମାଲୋଚନା, ନୂତନ କବିମାନଙ୍କ ରଚନାର ସମାଲୋଚନା ଓ ଉପନ୍ୟାସାଦି ପ୍ରକାଶନ । ପ୍ରାଚୀନ ଓ ନବୀନ ସାହିତ୍ୟାଦର୍ଶ ମଧ୍ୟରେ ଦ୍ୱନ୍ଦ୍ୱର ପ୍ରକୃଷ୍ଟ ଦୃଷ୍ଟାନ୍ତ ଏ ପତ୍ରିକାରେ ନିହିତ । ଉତ୍କଳ ମଧୁପର ଆୟୁଃକାଳ ଥିଲା ଦୁଇବର୍ଷ । ଏଥିରେ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ଓ କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟଦ୍ୱୟ ଟୀକାସହ ପ୍ରକାଶିତ ହୋଇଥିଲା । କାବ୍ୟ ଦୁଇଟିର ମୁଦ୍ରଣ ଶେଷ ହେଲେ ବିସ୍ତୃତ ସମାଲୋଚନା କରିବାର ଥିଲା । ମାତ୍ର ମଧୁପର ଅକାଳ ପତନ ଯୋଗୁଁ ଏହା ସଂଭବ ହେଲା ନାହିଁ । ରାମଶଙ୍କରଙ୍କ ଅସଂପୂର୍ଣ୍ଣ ସୌଦାମିନୀ ଉପନ୍ୟାସ ଧାରାବାହିକ ଭାବେ ଓ କାବ୍ୟ ପ୍ରେମତରୀଗାଥା ଏଥିରେ ପ୍ରକାଶ ପାଇଥିଲା । ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଶର୍ମାଙ୍କ ଅନୁବାଦିତ 'ଶୁଦ୍ଧ ଚନ୍ଦ୍ରିକା' ଓ ତ୍ରିବିକ୍ରମ ଭଟ୍ଟାଚାର୍ଯ୍ୟ ମୂଳ ସଂସ୍କୃତରୁ ଅନୁବାଦିତ 'ଶ୍ରୀମଦଭାଗବତ' ଓ ପ୍ୟାରୀମୋହନ ଆଚାର୍ଯ୍ୟ ଙ୍କ 'ଓଡ଼ିଶାର ଇତିହାସ' ଉପରେ ସଂପାଦକୀୟ ଟୀପ୍ପଣୀ ପ୍ରକାଶ ପାଇଥିଲା ।

ମଧୁରାଓ ଙ୍କ ଜୀବନ ଚିନ୍ତା ଦୁଇଟି ସଂଖ୍ୟାରେ ସମାପ୍ତ ହୋଇଥିଲା । ଦ୍ୱିତୀୟ ଶିଖଯୁଦ୍ଧ, ଜୀବନଯାତ୍ରା ଓ ଗୋଟିଏ ଘଟନା ପ୍ରଭୃତି ଉଚ୍ଚକୋଟୀର ପ୍ରବନ୍ଧ ଏଥିରେ ପ୍ରକାଶ ଲଭିଥିଲା । ଦୁଇବର୍ଷ ଅନିୟମିତ ପ୍ରକାଶ ପରେ ଏ ପତ୍ରିକା ବିଲୟ ଲଭିଲା । *(୨୭)*

ପ୍ରଦୀପ କ୍ଷୀଣାୟୁଥିଲା । ନବସମ୍ବାଦ ୧୮୮୭ ରେ ଏକବର୍ଷ ପ୍ରକାଶ ପାଇଥିଲା । ୧୮୮୮ରେ ନବସଂବାଦ ଓଡ଼ିଆ ସହିତ ସଂଯୁକ୍ତ ହୋଇ ଓଡ଼ିଆ ଓ ନବସଂବାଦ'ର ସୃଷ୍ଟି । ସେହିବର୍ଷ ଆଶା ପ୍ରକାଶ ଲଭିଥିଲା । ଏ ପତ୍ରିକା ଦ୍ୱୟ ସାହିତ୍ୟ ଅପେକ୍ଷା ସଂବାଦକୁ ଅଧିକ ଗୁରୁତ୍ୱ ଦେଉଥିଲେ ।

ଏମିତି ଏକ ପ୍ରେକ୍ଷାପଟରେ ୧୮୮୯ରେ ସଂବଲପୁର ହିତୈଷିଣୀର ଆବିର୍ଭାବ ଘଟେ । ୧୮୯୧ରେ ଉତ୍କଳ ପ୍ରଭା ପାଞ୍ଚ ବର୍ଷ ପାଇଁ ଓଡ଼ିଶାର ସାରସ୍ୱତ ଦିଗବଳୟକୁ ଆଲୋକିତ କରେ । ଶେଷରେ ୧୮୯୭ ରେ ଉତ୍କଳ ସାହିତ୍ୟର ପ୍ରକାଶ ସହିତ ପ୍ରକୃଷ୍ଟ ସାରସ୍ୱତ ଆଭିମୁଖ୍ୟ ବିକଶିତ ଓ ପ୍ରସାରିତ ହୁଏ । ଏ ସମସ୍ତ ପତ୍ରିକାର ସାରସ୍ୱତ ଅବଦାନକୁ ବିଶ୍ଳେଷଣ କଲେ ଉତ୍କଳ ସାହିତ୍ୟ ବ୍ୟତୀତ ଅନ୍ୟ କୌଣସି ପତ୍ରିକା ଦୀର୍ଘସ୍ଥାୟୀ ସାହିତ୍ୟ ସେବାରେ ନିମଗ୍ନ ରହି ନାହାନ୍ତି । କେବଳ ହିତୈଷିଣୀ ହିଁ ଦୀର୍ଘ ୩୫ ବର୍ଷ ସାଂବାଦିକତା ଓ ସାରସ୍ୱତ କ୍ଷେତ୍ରକୁ ଋଦ୍ଧିମନ୍ତ କରିଛି । ଏ ପ୍ରସଙ୍ଗରେ ରାଧାନାଥଙ୍କ ସ୍ୱୀକାରୋକ୍ତି ହିତୈଷିଣୀର ଭୂମିକାକୁ ସ୍ପଷ୍ଟ କରେ । ଗଙ୍ଗାଧରଙ୍କୁ ପତ୍ର ଛଳରେ ସେ କୁହନ୍ତି, ''ସମସ୍ତ ସଂପାଦକ ଏବଂ ଲବ୍ଧ ପ୍ରତିଷ୍ଠ ସାହିତ୍ୟବିତ୍ ବ୍ୟକ୍ତିଙ୍କଠାକୁ ଅତିଶୀଘ୍ର ଖଣ୍ଡିଏ ଖଣ୍ଡିଏ ପୁସ୍ତକ ଉପହାର ସ୍ୱରପ ପଠାଇବା ହେବେ । ହିତୈଷିଣୀ ବ୍ୟତୀତ ଅନ୍ୟାନ୍ୟ ସମ୍ବାଦ ପତ୍ରର ସଂପାଦକଙ୍କ ଠାରୁ ସାହିତ୍ୟ ସମ୍ବନ୍ଧରେ କୌଣସି ନିର୍ଭରଯୋଗ୍ୟ ମତ ଅଥବା ଉପଦେଶ ପାଇବା ଆଶା ଦୁରାଶା ମାତ୍ର ।'' *(୨୮)* ଅନ୍ୟାନ୍ୟ ସମ୍ବାଦ ପତ୍ରର ସ୍ୱରୂପ ହୃଦୟଙ୍ଗମ କରି ସେ ଲେଖନ୍ତି,''ଓଡ଼ିଶ୍ୟାରେ ଯେଉଁ ୨/୪ ଖଣ୍ଡ ସମ୍ବାଦ ପତ୍ର ଅଛି, ଏକ ହିତୈଷିଣୀ ବ୍ୟତୀତ ଆଉ ସମସ୍ତେ ସାହିତ୍ୟ ସଂପର୍କ ଶୂନ୍ୟ, ସାହିତ୍ୟରେ ଏମାନଙ୍କର ଆଦୌ ଅଭିନିବେଶ ନାହିଁ । ଅଭିନିବେଶ ହେବାର ମଧ ସମ୍ଭାବନା ନାହିଁ । ସାହିତ୍ୟ-ଚର୍ଚ୍ଚା ଗୋଟିଏ ଜୀବନବ୍ୟାପୀ ବ୍ରତ । ପୁଣି ସାହିତ୍ୟାନୁରାଗ ଗୋଟିଏ ଈଶ୍ୱର ଦତ୍ତ ପଦାର୍ଥ । ଲକ୍ଷ ମଧରେ ଜଣେ ଦୁଇଜଣ ସାହିତ୍ୟାନୁରାଗୀ ହୁଅନ୍ତି ।'' *(୨୯)*

ଉତ୍କଳ ସାହିତ୍ୟ ଓଡ଼ିଶାର ଏକ ପ୍ରଧାନ ସଂଭ୍ରାନ୍ତ ପତ୍ରିକା ଥିଲା । ଏଥିରେ ସାମଗ୍ରିକ ସାହିତ୍ୟର ବିକାଶ ସାଧିତ ହେଲା । କିନ୍ତୁ ଏଥିରେ ଓଡ଼ିଶାର କୃତବିଦ୍ୟ ସାରସ୍ୱତ ସାଧକ ଗଣ ହିଁ ସ୍ଥାନ ଗ୍ରହଣ କରୁଥିଲେ । ନବୀନ ସାହିତ୍ୟିକ ମାନେ ତଥାପି ଦ୍ୱାରସ୍ଥ ହେଉ ଥିଲେ ହିତୈଷିଣୀର । ଉତ୍କଳ ସାହିତ୍ୟ ପ୍ରକାଶ ପର୍ଯ୍ୟନ୍ତ ଦୀର୍ଘ ଆଠ ବର୍ଷ ଓଡ଼ିଆ ସାହିତ୍ୟକୁ ଉଚିତ ଦିଗଦର୍ଶନ ଦେବାରେ ହିତୈଷିଣୀ ତ୍ୟାଗପୁତ ଭାବେ କାର୍ଯ୍ୟ କରିଥିଲା । ଉତ୍କଳ ସାହିତ୍ୟ ପ୍ରକାଶ ପରେ ମଧ ଓଡ଼ିଶାର ସାରସ୍ୱତ ଧାରାର ପୂର୍ଣ୍ଣାଙ୍ଗ ସ୍ରୋତକୁ ଏହା ଗତିଶୀଳ କରି

ପାରିଥିଲା । ତୁଳନାତ୍ମକ ଭାବେ ବିଚାର କଲେ ବୌଦ୍ଧିକତାପୂର୍ଣ୍ଣ ଉଚ୍ଚାଙ୍ଗ ପ୍ରବନ୍ଧ ସମୂହ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଲା ବେଳକୁ ଓଡ଼ିଶାର ଜାତୀୟ ଜୀବନର ନୂତନ ଆଶା ନୂତନ କର୍ମ ପ୍ରବଣତାର ସ୍ମାରକୀରୂପେ ଆଦର୍ଶ ସାରସ୍ୱତ ପ୍ରତିମା ଗଠନରେ ହିତୈଷିଣୀ ସଫଳ ହୋଇଥିଲା । ଉତ୍କଳ ସାହିତ୍ୟ ପ୍ରକାଶ ବେଳକୁ ଏକ ଉଚ୍ଚକୋଟୀର ସାରସ୍ୱତ ଭିତ୍ତିଭୂମି ସୃଷ୍ଟିରେ ହିତୈଷିଣୀର ଉଦ୍ୟମ ଉଲ୍ଲେଖନୀୟ ।

ଏ ପ୍ରସଙ୍ଗରେ ଆଧୁନିକ ସାହିତ୍ୟର ଉନ୍ମେଷ ମୁହୂର୍ତ୍ତକୁ ପର୍ଯ୍ୟାଲୋଚନା କଲେ ଉତ୍କଳଦର୍ପଣ,ଉତ୍କଳ ମଧୁପ ଓ ହିତୈଷିଣୀର ଅବଦାନ ଦୃଷ୍ଟି ପଥାରୂଢ଼ ହୁଏ । ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଦର୍ପଣ ଓ ମଧୁପ ଦେଇ ସଂଘଠିତ ହୋଇ ଥିଲେ ମଧ ଏହା ପ୍ରକୃତ ପ୍ରତିଷ୍ଠା ଲଭିଲା ହିତୈଷିଣୀ ମାଧମରେ । ହିତୈଷିଣୀରେ ପ୍ରକାଶିତ ପ୍ରବନ୍ଧ, କବିତାଦି ପରିମାଣ ଓ ଗୁଣାତ୍ମକ ଦୃଷ୍ଟିରୁ ଉତ୍କଳ ସାହିତ୍ୟର ସମକକ୍ଷ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ହିତୈଷିଣୀ ମାସକୁ ଚାରୋଟି ସଂଖ୍ୟା ପ୍ରକାଶ ଲଭୁଥିଲା । ପ୍ରତି ସଂଖ୍ୟାରେ ଚାରିପୃଷ୍ଠା ସାହିତ୍ୟ ପାଇଁ ବ୍ୟୟିତ ହେଉଥିଲା । ମାସକୁ ଷୋହଳ ପୃଷ୍ଠାର ସାହିତ୍ୟ ପତ୍ର ପ୍ରକାଶ ପାଉଥିଲା । ହିତୈଷିଣୀର ଷୋହଳପୃଷ୍ଠା ଉତ୍କଳସାହିତ୍ୟର ଚଉଷଠି ପୃଷ୍ଠା ସହିତ ସମାନ । ଏ ଦୃଷ୍ଟିରୁ ପରିମାଣାତ୍ମକ ଭାବେ ଏହା ଉତ୍କଳ ସାହିତ୍ୟର ସମକକ୍ଷ ଥିଲା ।

ହିତୈଷିଣୀ ପୃଷ୍ଠାରେ ନବୀନ ଲେଖକ ଗଣ ଉପଯୁକ୍ତ ପ୍ରତିଷ୍ଠା ଲଭିଥିଲେ । ସାହିତ୍ୟିକ ଅଭିମତର ସାର୍ବଜନୀନ ପରିପ୍ରଚାର ସହିତ ଆଦର୍ଶ ସମାଜ ଗଠନ ଥିଲା ହିତୈଷିଣୀର ଲକ୍ଷ୍ୟ । ଏ ଲକ୍ଷ୍ୟ ସାଧନ ପାଇଁ ସମୟେ ସମୟେ ନବୀନ କବି ଲେଖକଙ୍କର ଅପରିଣତ ସୃଷ୍ଟିକୁ ହିତୈଷିଣୀ ଆଗ୍ରହ ସହକାରେ ସ୍ଥାନ ଦେଉଥିଲା । ନବୀନ ଲେଖକମାନଙ୍କୁ ଉତ୍ସାହିତ କରିବା ପାଇଁ ହିତୈଷିଣୀ ନିଜର ମାନ ସହିତ ବୁଝାମଣା (Compromise) କରୁଥିଲା । ପଦ୍ୟ ପ୍ରକାଶ ଶୀର୍ଷକରେ ହିତୈଷିଣୀର ସ୍ୱୀକାରୋକ୍ତି ଏଠାରେ ଉଦ୍ଧୃତ କରାଯାଇ ପାରେ, ''ହିତୈଷିଣୀରେ ସମୟେ ସମୟେ କେତେକ ପଦ୍ୟ ପ୍ରେରିତ ସ୍ତମ୍ଭରେ ସ୍ଥାନ ପାଉଥାଏ ଯାହା ହୁଏତ ପ୍ରକୃତ ବିବେଚନାରେ ପ୍ରକାଶଯୋଗ୍ୟ ହୋଇ ନପାରେ । ସେପରି ପଦ୍ୟ ପ୍ରକାଶ ହେତୁ ସମୟତଃ କେହି କେହି ବିରକ୍ତ ହେଉଥିବେ । ବାସ୍ତବରେ ସେପରି ପଦ୍ୟ ପ୍ରକାଶ କରି ପତ୍ରିକାର ସ୍ଥାନ ନଷ୍ଟ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହଇ । କିନ୍ତୁ ଏ ଅଞ୍ଚଳର ଲୋକମାନେ ଓଡ଼ିଆ ଭାଷା ଭଲ ଜାଣୁ ନଥିବା ଏବଂ ରଚନା ଆଦି କାର୍ଯ୍ୟରେ ସେମାନଙ୍କର କେହି ଉତ୍ସାହଦାତା ନଥିବା ବିବେଚନାରେ ସେମାନଙ୍କ ଲିଖିତ ପ୍ରବନ୍ଧ ସବୁ ସେମାନଙ୍କର ଉତ୍ସାହ ଓ ପ୍ରବୃତ୍ତି ବୃଦ୍ଧି ଉଦ୍ଦେଶ୍ୟରେ ସମୟେ ସମୟେ ମୁଦ୍ରିତ କରିଥାଉଁ ।'' *(୩୦)*

ଅନେକ ଲେଖକଙ୍କୁ ଓଡ଼ିଆ ବାଙ୍ମୟରେ ହିତୈଷିଣୀ ପ୍ରତିଷ୍ଠା ଆଣିଦେଇଛି । ଏ ପ୍ରସଙ୍ଗରେ ସଚ୍ଚିଦାନନ୍ଦ, ଗଙ୍ଗାଧର, ନନ୍ଦକିଶୋର, ଚିନ୍ତାମଣି, ଲକ୍ଷ୍ମୀନାରାୟଣ, ଜଳନ୍ଧର,

ବଳଭଦ୍ର, ପଦ୍ମଚରଣ, ଦାମୋଦର, ବୃନ୍ଦାବନ, ଅନ୍ନପୂର୍ଣ୍ଣା, ରେବାରାୟ, କୃଷ୍ଣ ପ୍ରସାଦ, ପ୍ରମୁଖଙ୍କ ସହିତ ଅନେକ ଅନାମଧେୟ ଲେଖକ ଓ କବି ମଧ୍ୟ ସାରସ୍ୱତ ସ୍ୱୀକୃତି ଲଭିଛନ୍ତି । ଏ ସମସ୍ତଙ୍କର ସମ୍ୟକ ପରିଚୟ ପରବର୍ତ୍ତୀ ପର୍ଯ୍ୟାୟରେ ଆଲୋଚିତ ହୋଇଛି । ନବୀନ ସାହିତ୍ୟିକଙ୍କ ପାଇଁ ଊନବିଂଶ ଶତାବ୍ଦୀର ଶେଷ ଭାଗ ହିତୈଷିଣୀ ହିଁ ଏକମାତ୍ର ଅବଲମ୍ବନ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଅନ୍ୟ ପକ୍ଷରେ ହିତୈଷିଣୀକୁ ନବୀନ ସାହିତ୍ୟିକଙ୍କ ଭୂସ୍ୱର୍ଗ ରୂପେ ଅଭିହିତ କରାଯାଇପାରେ ।

## (ଗ) ପ୍ରବୀଣ ସାହିତ୍ୟିକଙ୍କ ଆକର୍ଷଣ ଭୂମି :

ହିତୈଷିଣୀର ସାର୍ବଜନୀନ ହିତୈଷଣା ଏହାକୁ ଅଧିକ ଲୋକପ୍ରିୟ କରିଥିଲା । ହିତୈଷିଣୀ ଏମିତି ଏକ ମିଳନ ଭୂମି ଯେଉଁଠି ପ୍ରବୀଣ ଓ ନବୀନର ସୁବର୍ଣ୍ଣ ସେତୁ ସଂଯୋଜିତ ହୋଇଥିଲା । ପ୍ରବୀଣ ଲେଖକଙ୍କ ସୃଷ୍ଟିରେ ଏହା ଉର୍ଜସ୍ୱଳ ଥିଲା । ଆଧୁନିକ ସାହିତ୍ୟର ଶୁଚିଶୁଭ୍ର ବିକାଶରେ ଏହା ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଆଧୁନିକ ସହିତ ସଂସ୍କୃତ ପ୍ରତିସ୍ପର୍ଦ୍ଧି ଓଡ଼ିଆ ଭାଷା ଗଠନରେ ମଧ୍ୟ ରୁଚି ପ୍ରଦର୍ଶନ କରିଥିଲା । ବିଭିନ୍ନ ସମୟେ ପ୍ରବୀଣ ମାନଙ୍କ ରଚନା ପାଇଁ ହିତୈଷିଣୀ ନିଜକୁ ଧନ୍ୟ ମନେ କରୁଥିଲା ଏବଂ ନିଜର କୃତଜ୍ଞତା ମଧ୍ୟ ପ୍ରକାଶ କରୁଥିଲା । ଚତୁର୍ଥ ବର୍ଷର ବିଭିନ୍ନ ସଂଖ୍ୟାକୁ ଯେଉଁମାନେ ମଣ୍ଡିତ କରିଥିଲେ ସେମାନଙ୍କୁ ପଞ୍ଚମ ବର୍ଷର ପ୍ରଥମ ସଂଖ୍ୟାରେ କୃତଜ୍ଞତା ଜ୍ଞାପନ କରାଯାଇଛି । ''x x x ଗତବର୍ଷ ଶ୍ରୀଯୁକ୍ତ ପଣ୍ଡିତ ବିଶ୍ୱନାଥ କର ମହୋଦୟ ଏ ପତ୍ରିକାରେ ଅନେକ ଗୁଡ଼ିଏ ସାର ଗର୍ଭ ପ୍ରବନ୍ଧ ଲେଖି ସଂପାଦକ ଓ ପାଠକ ବର୍ଗଙ୍କୁ ବିଶେଷ ଉପକୃତ କରି ରଖି ଅଛନ୍ତି । ତଦ୍‌ଭିନ୍ନ ନିମ୍ନୋକ୍ତ ମହୋଦୟ ମାନଙ୍କ ଲେଖନୀ ନିଃସୃତ ଅନେକ ଗୁଡ଼ିଏ ଉପାଦେୟ ଗଦ୍ୟପଦ୍ୟ ପ୍ରବନ୍ଧ ଆମ୍ଭେମାନେ ଅତୀତ ବର୍ଷରେ ପ୍ରକାଶ କରିବାକୁ ସକ୍ଷମ ହୋଇଥିବାରୁ ଆପଣାକୁ ସୌଭାଗ୍ୟବାନ ମନେ କରୁଅଛୁଁ । ବର୍ତ୍ତମାନ କୃତଜ୍ଞ ଚିତ୍ତରେ ସେମାନଙ୍କର ପରିଚୟ ପ୍ରଦାନ କରୁଅଛୁଁ । ୧-ସୁଦ୍ଧଳଦେବ-୨-ରାଧାନାଥ ରାୟ ୩-ଲାଲ ରାମ ନାରାୟଣ ୪-ରାମକୃଷ୍ଣ ସାହୁ ୫- ବିଜୟ ଚନ୍ଦ୍ର ମଜୁମଦାର ୬-ସାଧୁଚରଣ ରାୟ ୭-ଗୋବର୍ଦ୍ଧନ ଘୋଷାଲ ୮-ଫକୀର ମୋହନ ୯-ଦାମୋଦର ମିଶ୍ର ୧୦ରେବାରାୟ (ଆଶା ସଂପାଦିକା) ୧୧-ବସନ୍ତ କୁମାରୀ ଦେବୀ ପ୍ରଭୃତି'' *(୩୧)* ହିତୈଷିଣୀର ସୁଯୋଗ୍ୟ ସଂପାଦକ ନୀଳମଣି ବିଦ୍ୟାରତ୍ନ ତତ୍‌କାଳୀନ ପ୍ରବୀଣ ଲେଖକ ମାନଙ୍କ ରଚନାକୁ ଅଗ୍ରାଧିକାର ପ୍ରଦାନ କରୁଥିଲେ । ସେ ପତ୍ରଦ୍ୱାରା ସେମାନଙ୍କଠାରୁ ଲେଖା ମାଗୁଥିଲେ । ହିତୈଷିଣୀ ସେ ସମୟରେ ଅନ୍ୟ ସମସ୍ତ ପତ୍ରିକା ଅପେକ୍ଷା ଆକାରରେ ବୃହତ ଓ ସୁଲଭ ଥିଲା । ଏହା ସମଗ୍ର ଗଡ଼ଜାତ, ଓଡ଼ିଶା, ବଙ୍ଗଳା, ମଧ୍ୟ ପ୍ରଦେଶର ଅନେକ ଅଂଶରେ ପ୍ରଚାରିତ ହେଉଥିଲା । ଏଥିରେ ଲେଖାଟିଏ ପ୍ରକାଶିତ ହେଲେ ଅଧିକ ଲୋକଙ୍କ ଦୃଷ୍ଟିଗୋଚର ହେଉଥିଲା । ବିଭିନ୍ନ ପ୍ରସଙ୍ଗ

ଉପରେ ଗଠନ ମୂଳକ ସାହିତ୍ୟିକ ବିବାଦ ଏହାକୁ ଆକର୍ଷଣୀୟ କରି ତୋଳିଥିଲା । ପୁନଶ୍ଚ ବିଦ୍ୟାରତ୍ନଙ୍କ ସଂପାଦନା ଥିଲା ଉଚ୍ଚକୋଟୀର । ହିତୈଷିଣୀ ପଶ୍ଚାତରେ ସାହିତ୍ୟ ପ୍ରାଣ ସୁଢ଼ଳ ଦେବଙ୍କ ଅନୁପ୍ରେରଣା ଓ ବାମଣ୍ଡା ସାହିତ୍ୟ ଗୋଷ୍ଠୀଙ୍କ ଶୁଭେଚ୍ଛା ରହିଥିଲା । ଏ ସମସ୍ତ କାରଣ ଯୋଗୁଁ ହିତୈଷିଣୀ ଥିଲା ଆକର୍ଷଣର କେନ୍ଦ୍ରବିନ୍ଦୁ ।

ପ୍ରବୀଣ ସାହିତ୍ୟିକ ମାନଙ୍କର ପଦ୍ୟ, ପ୍ରବଂଧ ସମୂହର ପ୍ରକାଶ ସହିତ ତାଙ୍କର କୃତିର ସମାଲୋଚନା ହିତୈଷିଣୀକୁ ଅତୁଳନୀୟ କରି ଗଢ଼ି ତୋଳିଥିଲା । ଏ ପ୍ରସଙ୍ଗରେ ହିତୈଷିଣୀ ସହିତ ପ୍ରବୀଣ ସାହିତ୍ୟରଥିଙ୍କ ସଂପର୍କକୁ ପର୍ଯ୍ୟାଲୋଚନା କରାଯାଇପାରେ ।

## ୧: ସାର୍ ବାସୁଦେବ ସୁଢ଼ଳଦେବ (୧୮୫୦-୧୯୦୩):

ସୁଢ଼ଳଦେବଙ୍କ ମାନସ ସନ୍ତାନ ଥିଲା ହିତୈଷିଣୀ । ସୁଢ଼ଳଦେବଙ୍କ ଚିଲ୍ରୋତ୍ପଳା କାବ୍ୟ ହିତୈଷିଣୀ (୪/୧୦) ତା ୧୦.୮.୧୮୯୨ ସଂଖ୍ୟାରେ ପ୍ରକାଶ ଲଭିଥିଲା । ଓଡ଼ିଶା ପ୍ରକୃତିର ଅମ୍ଳାନ ପ୍ରବାହ ଚିଲ୍ରୋତ୍ପଳା କାବ୍ୟରେ ସୁରକ୍ଷିତ । ମହାନଦୀର ଅପୂର୍ବ ଦୃଶ୍ୟ କାବ୍ୟର ପ୍ରତି ଛତ୍ରେ ଛତ୍ରେ ଝଙ୍କୃତ । ସୁନିୟନ୍ତ୍ରିତ ଶବ୍ଦସଜ୍ଜା ଅତି ପରିଚିତ ଚିତ୍ରକଳ୍ପ, ବୌଦ୍ଧିକ ଅବତାରଣା ମାଧ୍ୟମରେ ପ୍ରକୃତି ବର୍ଣ୍ଣନା ରସୋତ୍ତୀର୍ଣ୍ଣ ହୋଇପାରିଛି । ରାଜକବି ସୁଢ଼ଳଦେବଙ୍କ ଚିଲ୍ରୋତ୍ପଳା କାବ୍ୟ ଅଜସ୍ର ସମାଲୋଚକଙ୍କୁ ଆକୃଷ୍ଟ କରିଥିଲା । ହିତୈଷିଣୀରେ ଚିଲ୍ରୋତ୍ପଳାର ଅନେକ ସମାଲୋଚନା ପ୍ରକାଶ ପାଇଛି । ଚିଲ୍ରୋତ୍ପଳା କାବ୍ୟକୁ ନେଇ ପ୍ରାଚୀନପଂଥି ପଣ୍ଡିତଙ୍କ ଠାରୁ ଆଧୁନିକ ରସଲିପ୍ସୁ ସାଧକଙ୍କ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି । ସୋମନାଥ ଜ୍ୟୋତିଷାଳଙ୍କାର ଏ କାବ୍ୟକୁ ସପ୍ରଶଂସ ଦୃଷ୍ଟିରେ ଦେଖିଛନ୍ତି । *(୩୨)* ଲାଲା ରାମନାରାୟଣ ଏହାର ସମୀକ୍ଷାତ୍ମକ ଟୀପ୍ପଣୀ ବାଢ଼ିଛନ୍ତି । *(୩୩)* ଜଗନ୍ନାଥ ପଟ୍ଟନାୟକଙ୍କ ଚିଲ୍ରୋତ୍ପଳା ସମାଲୋଚନାର ପ୍ରତି ସମାଲୋଚନା ମଧ କରିଛନ୍ତି ରାମ ନାରାୟଣ *(୩୪)* ଚିଲ୍ରୋତ୍ପଳାର କେତେକ ଦୋଷ ପ୍ରଦର୍ଶନ କରି ପଣ୍ଡିତ ଗଦାଧର ବିଦ୍ୟାଭୂଷଣ ପତ୍ର ଦେଇଥିଲେ । ତାଙ୍କର ଦୋଷ ଗୁଡିକ ବୃଥା ସୂଚାଇ ଦୋଷ ପରିହାର କରିଛନ୍ତି ପଣ୍ଡିତ ଚିନ୍ତାମଣି ମିଶ୍ର ଶର୍ମା । ଶାସ୍ତ୍ର ବିରୁଦ୍ଧତା ପ୍ରଭୃତି ଅଠଗଟି ଦୋଷର ଶାସ୍ତ୍ରୀୟ ପ୍ରମାଣ ସହ ଚିନ୍ତାମଣି ମିଶ୍ର ଦୋଷ ଉନ୍ମୂଳନ କରିଛନ୍ତି । *(୩୫)* ଚିଲ୍ରୋତ୍ପଳାର ଏକ ଅଦ୍ଭୁତ ସମାଲୋଚନା ଉତ୍କଳ ସାହିତ୍ୟ ୧/୩, ଚୈତ୍ର ୧୩୦୪ ସଂଖ୍ୟାରେ ଦାମୋଦର ପଟ୍ଟନାୟକ ନାଟକାକାରେ କରନ୍ତି । ଏ ସମାଲୋଚନାକୁ ହିତୈଷିଣୀ ଦୃଢ଼ ଭାବେ ଖଣ୍ଡନ କରେ । *(୩୬)*

ରାଧାନାଥଙ୍କ ମହାଯାତ୍ରା ବ୍ୟତୀତ ଚିଲ୍ରୋତ୍ପଳାର ହିଁ ଅଧିକ ସମାଲୋଚନା ହିତୈଷିଣୀରେ ଦେଖାଯାଏ ।

ହିତୈଷିଣୀ ୬.୯.୧୮୯୩ ସଂଖ୍ୟାରେ ସୁଢ଼ଳ ଦେବଙ୍କ ଜାତୀୟବୋଧକ କାବ୍ୟ ବୀରବାମା ପ୍ରକାଶ ଲଭେ । ଲକ୍ଷ୍ମୀ ବାଈ ହିନ୍ଦୁନାରୀ ହୋଇ ଯେଉଁ ବୀରତ୍ୱ ପ୍ରଦର୍ଶନ କରିଥିଲେ,

ତାକୁହିଁ ପ୍ରଦର୍ଶନ କରି ଭାରତୀୟଙ୍କୁ ପ୍ରବୋଧିତ କରିବା କବିଙ୍କ ଉଦ୍ଦେଶ୍ୟ । ଇଂରେଜ ରାଜତ୍ୱରେ ଏକ ପ୍ରାନ୍ତୀୟ ରାଜ୍ୟର କର୍ତ୍ତା ହୋଇ ବ୍ରିଟିଶ ବିରୋଧୀ ଲକ୍ଷ୍ମୀବାଈଙ୍କ ଅପୂର୍ବ ସାହସକୁ ବାହାବା ଜଣାଇ ଇଂରେଜ ମାନଙ୍କୁ ସମାଲୋଚନା କରିବା ମାତୃପ୍ରେମର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଏ କାବ୍ୟରେ ସୁଡ଼ଳଦେବ ଇଂରେଜ ଶାସନର ନୀରବ ପ୍ରତିବାଦ ମାତ୍ର କରିଛନ୍ତି । କେବଳ କାବ୍ୟରେ ନୁହେଁ କର୍ମରେ ମଧ୍ୟ ସେ ଏହା ପ୍ରଦର୍ଶନ କରିଛନ୍ତି । ଅକୁତୋଭୟ ସୁଡ଼ଳଦେବ ନିଜର ରାଜୋଦ୍ୟାନରେ ଲକ୍ଷ୍ମୀବାଈଙ୍କ ଏକ ଅଶ୍ୱାରୋହିଣୀ ପ୍ରତିମା ସ୍ଥାପନ କରିଥିଲେ ।

ହିତୈଷିଣୀ ୨୬.୪.୯୩ ସଂଖ୍ୟାରେ ଜଣେ ଦର୍ଶକ ଛଦ୍ମନାମରେ କିଷ୍କିନ୍ଧ୍ୟା କାବ୍ୟ ପ୍ରକାଶ ପାଇଥିଲା । ଏ କାବ୍ୟ ସେତେଟା ସାରସ୍ୱତ ସମ୍ମାନ ଲଭିନାହିଁ । ଏହାର କଳାତ୍ମକ ଚାତୁର୍ଯ୍ୟ ମଧ୍ୟ ଚିତ୍ରୋତ୍ପଳା ବା ବୀରବାମା କୋଟୀକୁ ସ୍ପର୍ଶ କରି ପାରିନାହିଁ । ବରଂ ଜଣେ ସାଧାରଣ ଦର୍ଶକର ଦୃଷ୍ଟିନେଇ ସେ ପର୍ଯଟନ ଅନୁଭୂତିକୁ କାବ୍ୟ କଳାରେ ପରିବେଷଣ କରିଛନ୍ତି । ଦକ୍ଷିଣାତ୍ୟ ଭ୍ରମଣର ଏହା ଏକ ସ୍ମାରକୀ । ବର୍ଣ୍ଣନାତ୍ମକ ଶୈଳୀରେ ପାଠକଙ୍କୁ ଆନନ୍ଦ ପ୍ରଦାନ କରିବା ଏହାର ଆଭିମୁଖ୍ୟ । ବର୍ଣ୍ଣନା ଶୈଳୀ ନିର୍ମଳ ଭାବଦ୍ୟୋତକ, ଶବ୍ଦସଜ୍ଜା ନିରାଡମ୍ବର, ସାବଲୀଳ, ଉପମା ଅଳଙ୍କାର ର ଅଯଥା ଅତିଶଯ୍ୟ ଅନୁପସ୍ଥିତ ।

ସୁଡ଼ଳଦେବଙ୍କ କାବ୍ୟ ପ୍ରବଣତା କର୍ମରେ ଫୁଟିଉଠିଛି । ତାଙ୍କର ମାନସକୁ ହିତୈଷିଣୀ ବାସ୍ତବ ରୂପରେ ପ୍ରକାଶ କରିଛି । ତାଙ୍କର ସଂସ୍କାରକର ଦୃଷ୍ଟିଭଙ୍ଗୀ, ବିଭିନ୍ନ ଲୋକହୀତକର କାର୍ଯ୍ୟକୁ ହିତୈଷିଣୀ ସାର୍ବଜନୀନ କରିତୋଳିଛି । ବାଲ୍ୟବିବାହ, ବୃଦ୍ଧ ବିବାହ, କୁଲି ଚାଲାଣ ମାଦକ ଦ୍ରବ୍ୟ ବିରୁଦ୍ଧରେ ତାଙ୍କର ସଂଗ୍ରାମକୁ ଶିକ୍ଷଣୀୟ ଦୃଷ୍ଟାନ୍ତ ରୂପେ ତୋଳି ଧରିଛି ହିତୈଷିଣୀ । ଶିକ୍ଷା କ୍ଷେତ୍ରରେ ଥିବା କୁସଂସ୍କାର ଦୂରୀକରଣ, ଶୁଦ୍ଧ ପାଠ୍ୟ ପ୍ରଚଳନ ଓ ଉପଯୁକ୍ତ ଶିକ୍ଷକଙ୍କୁ ପୁରସ୍କାର ପ୍ରଦାନ ଦିଗରେ ସୁଡ଼ଳଦେବଙ୍କ କୃତିତ୍ୱକୁ ହିତୈଷିଣୀ ସମ୍ମାନ ଦେଇଛି । କୃଷି. ଶିଳ୍ପ, ଯୋଗାଯୋଗ କ୍ଷେତ୍ରରେ ତାଙ୍କର ଅବଦାନର ବିଶଦ୍ ବିବରଣୀ ଏଥିରେ ପ୍ରକାଶ ଲଭିଛି ।

ସଂସ୍କୃତ ସାହିତ୍ୟ ପ୍ରତି ସୁଡ଼ଳଦେବଙ୍କ ସହଜାତ ଆଗ୍ରହ ରହିଥିଲା । ସୁଡ଼ଳଦେବଙ୍କ ବମ୍ବେ ଯାତ୍ରା ସମୟେ ପଣ୍ଡିତ ରମାବାଈଙ୍କ ସହିତ ସଂସ୍କୃତରେ ବାକ୍ୟାଳାପ ଏକ ଆଶୁ କବିତ୍ୱର ପରାକାଷ୍ଠା ପ୍ରଦର୍ଶନ କରେ ।

## ସୁଡ଼ଳଦେବଙ୍କ ପ୍ରଶ୍ନ :

''ଯା ବୈବିଶ୍ୱେଶ-ଲକ୍ଷ୍ମୀପଡି଼ମୁଖ ନଳିନାନ୍ନିର୍ଗଳଦ୍ୱାକ୍ ସୁଧାଦ୍ଧି ପ୍ରୋଲୁଙ୍ଗଲ୍ଲୋଳ କାଲେ ତବ ପରମ ସୁଖଂ ପୁପ୍ଲୁବେ ହିନ୍ଦୁ ଧର୍ମଃ ତସ୍ମା ନିର୍ବ୍ୟାଜ-ଧର୍ମାତ୍ ସବିମଳ କୁଳଜେ ! ନିଷ୍କଳଙ୍କାତ୍ କଥଂତେ ପ୍ରତ୍ୟାବୃତ୍ତାଃ ପବିତ୍ରାଃ ସୁଲଳିତ ମତୟୋରେ ମିରେବୈବିଧର୍ମେ ।''

**ପଣ୍ଡିତା ରମାବାଈଙ୍କ ଉତ୍ତର :**

''ନାସ୍ମାକଂ ବିଧର୍ମଃ ବସ୍ତୁତ ଈଶ୍ୱରେ ଜୀବସ୍ୟ ସମନ୍ଧ ଏବ ଧର୍ମଃ, ସତୁ ବେଦାଧ୍ୟୟନାଦ୍ ଭବିଷ୍ୟତି, କିନ୍ତ୍ୱସ୍ମାକଂ ବେଦାଧିକାରୋନାସ୍ତି, ସ୍ତ୍ରୀ ଶୂଦ୍ରୌ ନା ଧୀୟେତା ମିତ୍ୟୁକ୍ତେ ଏବଂ ଚ ହିନ୍ଦୁମତେ ସ୍ତ୍ରୀଣାଂହି ପତିଦେବତା ଇତ୍ୟୁକ୍ତଂ ମନୁଷ୍ୟ ପୂଜନଂ ସିଦ୍ଧଂ ତାବତା ପରମ ପ୍ରାପ୍ତି ର୍ନ ଭବିଷ୍ୟତି ଶଙ୍କତୀୟା ହିନ୍ଦୁଧର୍ମ ପରିତ୍ୟାଗୋ ବରୀୟାନିତ୍ୟାବି ।'' *(୩୭)*

ସୁଢ଼ଳ ଦେବ କ୍ରାନ୍ତଦ୍ରଷ୍ଟା କବି । ସେ ଅନୁଭବ କରିଥିଲେ ଆଧୁନିକ ଯୁଗସନ୍ଧନକୁ ଏବଂ ଜାଣିଥିଲେ ପରଂପରାବିହୀନ ସାହିତ୍ୟ ମୂଲ୍ୟବୋଧ ରହିତ । ତେଣୁ ଏକ ପୁଷ୍ଟଳ ଶୁଦ୍ଧ ପ୍ରାଚୀନ ଭିତ୍ତିରେ ଆଧୁନିକତାକୁ ସେ ଆବାହନ କରିଥିଲେ । ସୁଢ଼ଳଦେବଙ୍କ ନେତୃତ୍ୱରେ ହିତୈଷିଣୀ ତଥା ବାମଣ୍ଡାର ସାରସ୍ୱତ ପୃଷ୍ଠଭୂମି ରାଧାନାଥ ସାହିତ୍ୟକୁ ଓଡ଼ିଶା ବାଙ୍ମୟରେ ପ୍ରତିଷ୍ଠା କରିଗଲା । ଓଡ଼ିଆ ଭାଷା-ସାହିତ୍ୟ ଓ ସଂସ୍କୃତିକୁ ସୁଢ଼ଳଦେବ ସ୍ୱପ୍ରତିଭା ବଳରେ ସମୃଦ୍ଧ କରିଥିଲେ ।

## ୨: ରାଧାନାଥ ରାୟ : (୧୮୪୮-୧୯୦୮)

ରାଧାନାଥ ଓ ବାମଣ୍ଡାର ସଂପର୍କ ଅଭିନବ ଓ ଅନନ୍ୟ । ରାଧାନାଥ ବ୍ୟକ୍ତିଗତ ଜୀବନରେ ଓ ସାରସ୍ୱତ କ୍ଷେତ୍ରରେ ବାମଣ୍ଡାର ଉଚ୍ଚ ପ୍ରଶଂସା କରିଥିଲେ । କେବଳ ଥରେ ମାତ୍ର ଗଙ୍ଗାଧରଙ୍କୁ ପତ୍ର ପ୍ରସଙ୍ଗରେ ସେ ନିଜର ବିରକ୍ତିଭାବ ପ୍ରକାଶ କରିଥିଲେ ''ପ୍ରକୃତ ସାହିତ୍ୟାନୁରାଗୀ ରାଜା ଓଡ଼ିଶ୍ୟାରେ ଜଣେ ସୁଦ୍ଧା ନାହାନ୍ତି । ବାମଣ୍ଡା ଅବଶ୍ୟ ପ୍ରଶଂସ୍ୟ, ମାତ୍ର ଅମାରାତିରେ ଏକମାତ୍ର ଜ୍ୟୋତିରିଙ୍ଗଣବତ୍ ପ୍ରଶଂସ୍ୟ । ସେଥିରୁ ଅଧିକ କିଛି ନୁହନ୍ତି । ବାମଣ୍ଡା ରାଜାଙ୍କ ସହିତ ବନ୍ଧୁତା ଦ୍ୱାରା ମୋହର ଲାଭ ନ ହୋଇ ବରଂ କ୍ଷତି ହୋଇଅଛି । ଆପଣ ମୋହର ଅତି ବିଶ୍ୱସ୍ତ ବନ୍ଧୁ ବୋଲି ହୃଦୟର କଥା ଆପଣଙ୍କୁ ଲେଖିଲି ।''*(୩୮)* ବାମଣ୍ଡା ରାଜାଙ୍କୁ ବିଭିନ୍ନ ପତ୍ରରେ, ଭ୍ରମଣକାରୀର ପତ୍ରରେ, ବା ବାମଣ୍ଡା ପ୍ରବନ୍ଧରେ ଭୂରିଭୂରି ପ୍ରଶଂସା କରିଥିବା ରାଧାନାଥଙ୍କ ଉପରୋକ୍ତ ମନ୍ତବ୍ୟ ବିସ୍ମୟକର । ଏହାର ମର୍ମ ଉଦ୍‌ଘାଟନ ରହସ୍ୟ ଜନକ ଓ ସଙ୍କଟ ସଂକୁଳ । ରାଧାନାଥଙ୍କ ମାନସିକତା ସହିତ ପରିଚିତ ସମାଲୋଚକ ଓ ପାଠକ ଏ ରୂପ ବ୍ୟତିକ୍ରମ ଓ ପରସ୍ପର ବିରୋଧୀ ମନ୍ତବ୍ୟ ସହିତ ଅଭ୍ୟସ୍ତ । ରାଧାନାଥ ନିଜସ୍ୱ ମତ ସାବ୍ୟସ୍ତ ପାଇଁ ଅନେକତ୍ର ମିଥ୍ୟାର ଆଶ୍ରୟ ନେଇ ଥିବାର ପ୍ରମାଣିତ ହୋଇଛି । *(୩୯)*

ରାଧାନାଥଙ୍କ ସହିତ ବାମଣ୍ଡା ଦରବାର ତଥା ରାଜା ସୁଢ଼ଳଦେବଙ୍କ ସଂପର୍କର ସେତୁ ଉଦ୍‌ଘାଟନ ସହିତ ଏ ଅଭିଯୋଗର ଅସାରତା ସ୍ୱତଃ ପ୍ରମାଣିତ ହେବ ।

ରାଧାନାଥ ଯେତେବେଳେ ପାଠ୍ୟପୁସ୍ତକ ପ୍ରକାଶନ ଜନିତ ଆକ୍ରମଣରେ ଆକ୍ରାନ୍ତ ଓ ପ୍ରକାରାନ୍ତରେ ସ୍ତବ୍ଧ ଠିକ୍ ସେତିକିବେଳେ ବାମଣ୍ଡା ଦରବାର ତରଫରୁ ତାଙ୍କୁ ଆହ୍ୱାନ କରି

'କବିବର' ଉପାଧିପ୍ରଦାନ କରିଥିଲେ । 'କବିବର' ଉପାଧି ସହିତ ରାଧାନାଥଙ୍କ ବାମଣ୍ଡା ସଂପର୍କର ଅୟମାରମ୍ଭ ହୋଇଥିଲା । ସୁଡ଼ଳଦେବଙ୍କ ପତ୍ରିକା ପ୍ରକାଶ ଆଗ୍ରହକୁ ରାଧାନାଥ ସ୍ୱାଗତ କରିଥିଲେ । ହିତୈଷିଣୀ ସଂପାଦକ ବିଦ୍ୟାରତ୍ନଙ୍କ ସହିତ ତାଙ୍କର ଆତ୍ମିକ ସଂପର୍କ ଥିଲା । ବିଦ୍ୟାରତ୍ନ ଅନେକ ସମୟରେ ରାଧାନାଥଙ୍କ ଲେଖା ମଗାଇ ହିତୈଷିଣୀରେ ପ୍ରକାଶ କରାଉଥିଲେ । ନିଜର ସୁଚିନ୍ତିତ ମତାମତକୁ ହିତୈଷିଣୀ ପୃଷ୍ଠାରେ ପ୍ରକାଶ କରିବାକୁ ରାଧାନାଥ ଉଚିତ ମଣିଥିଲେ । ତାଙ୍କ ମତରେ ହିତୈଷିଣୀ ବ୍ୟତୀତ ତତ୍‌କାଳୀନ ଓଡ଼ିଶାର ସମ୍ବାଦପତ୍ର ଗୁଡିକ ସାହିତ୍ୟ ସଂପର୍କଶୂନ୍ୟ । ସାହିତ୍ୟରେ ସେମାନଙ୍କର ଅଭିନିବେଶ ନାହିଁ । ହିତୈଷିଣୀ ସଂପାଦକ ସହୃଦୟ ସାହିତ୍ୟାନୁରାଗୀ ବ୍ୟକ୍ତି ।

ରାଧାନାଥଙ୍କ ମହାଯାତ୍ରା, ଯଯାତିକେଶରୀ, ପାର୍ବତୀ ପ୍ରଭୃତି କାବ୍ୟ ଧାରାବାହିକ ଭାବେ ହିତୈଷିଣୀରେ ପ୍ରକାଶ ଲଭିଥିଲା । ପାର୍ବତୀ କାବ୍ୟ ଆଂଶିକ ଭାବେ ହିତୈଷିଣୀ ୧୩.୮.୧୮୯୦ ରୁ ୧୦.୧୨.୯୦ ସଂଖ୍ୟା ମଧ୍ୟରେ ପ୍ରକାଶ ପାଇଥିଲା । ଏହାକୁ ସୁଡ଼ଳଦେବଙ୍କ ଅନୁମତି ଅନୁସାରେ ୧୮୯୧ରେ ପୁସ୍ତକାକାରେ ପ୍ରକାଶ କରାଯାଇଥିଲା । କାବ୍ୟର ଅସଂପୂର୍ଣ୍ଣତା ସଂପର୍କରେ ପାର୍ବତୀ ଭୂମିକାରେ କୁହାଯାଇଛି-''ଗ୍ରନ୍ଥକାର ମହୋଦୟ ଆପଣାର ପ୍ରାଣପ୍ରତିମ ପ୍ରିୟତମ ପୁତ୍ରକୁ କଠିନ ପୀଡ଼ାଗ୍ରସ୍ତ ହେବାର ଦେଖି ସର୍ବଦା ଚିନ୍ତିତ ରହିବାରୁ ପାର୍ବତୀ କାବ୍ୟର ରଚନା ଅସଂପୂର୍ଣ୍ଣ ଭାବରେ ରହିଲା । କବି ପୁତ୍ରଙ୍କ ପୀଡାରେ ଯେପରି ଦୁଃଖିତ, ତହିଁରେ ପାର୍ବତୀର ଅବଶିଷ୍ଟାଂଶ ଯେ ଶୀଘ୍ର ରଚିତ ଓ ମୁଦ୍ରିତହୋଇ ଉତ୍କଳ ସାହିତ୍ୟ ରସିକ ମାନଙ୍କ ପ୍ରୀତି ସଂପାଦନ କରିବ ଏପରି ସମ୍ଭାବନା ଅତି ଅଳ୍ପ ।'' *(୪୦)*

ପାର୍ବତୀ କାବ୍ୟର ଅସଂପୂର୍ଣ୍ଣତା ସଂପର୍କରେ ଏବେ ବି ମତଦ୍ୱୈଧ ରହିଛି । ବିଜୁଳି-ଇନ୍ଦ୍ରଧନୁ କଳହ ସମୟରେ ପାର୍ବତୀ ବର୍ଣ୍ଣିତ କୌଶଲ୍ୟା-ଗଙ୍ଗେଶ୍ୱର ଚରିତ ଅଭିନବ ରସଦ ଯୋଗାଉଥିଲା । ଏଥିଯୋଗୁଁ ଗଙ୍ଗ ବଂଶରେ କଳଙ୍କ ଲାଗିଲା ବୋଲି ସୁଡ଼ଳଦେବ ବିଦ୍ୟାରତ୍ନଙ୍କ ଉପରେ ଅସନ୍ତୁଷ୍ଟ ହୋଇଥିଲେ । ଏ ଅଶାନ୍ତି ଥିଲା ସାମୟିକ । କଳାକାରର କଳା ପ୍ରତି ଉଚିତ ସମ୍ମାନଦେବା ଜାଣିଥିଲା ବାମଣ୍ଡା । ପାର୍ବତୀ କାବ୍ୟକୁ ନୀରବ ପ୍ରତିବାଦ ଜଣାଇ ସଚ୍ଚିଦାନନ୍ଦ ରଚନା କଲେ 'ବୀରଗାଥା' କାବ୍ୟ *(୪୧)* ଓ ବଳଭଦ୍ର ଦେବ ରଚନାକଲେ ପାର୍ବତୀ ଉତ୍ତରାର୍ଦ୍ଧ । ପାର୍ବତୀ ଉତ୍ତରାର୍ଦ୍ଧରେ ପିତା, ପୁତ୍ରୀର ପ୍ରଣୟ ରୂପୀ କଳଙ୍କକୁ ପ୍ରକ୍ଷ୍ୟାଳନ କରିଥିଲେ ବଳଭଦ୍ରଦେବ । *(୪୨)*

ହିତୈଷିଣୀରେ ରାଧାନାଥଙ୍କ ମହାଯାତ୍ରା ଧାରାବାହିକ ପ୍ରକାଶ ଲଭି ଅପୂର୍ବ ପାଠକୀୟତା ଅର୍ଜନ କରିଥିଲା । ଓଡ଼ିଶାରେ କେତେକାଂଶରେ ଅମିତ୍ରାକ୍ଷର ଛନ୍ଦର ପ୍ରଚଳନ ଆରମ୍ଭ ହୋଇଥିଲା । ମହାଯାତ୍ରା ଥିଲା ଏ ଛନ୍ଦର ବଳିଷ୍ଠ ପରିପ୍ରକାଶ । ଏହାର ସଫଳତାରେ ମିତ୍ରାକ୍ଷର ଓ ଅମିତ୍ରାକ୍ଷର ଗୋଷ୍ଠୀ ଉଭୟେ ସ୍ତମ୍ଭୀଭୂତ ହୋଇଯାଇଥିଲେ । ଏହାର ଛନ୍ଦ, ଏହାର

ବିଷୟକୁ ନେଇ ଅଜସ୍ର ସପକ୍ଷ ଓ ବିପକ୍ଷ ସମାଲୋଚନା ପ୍ରକାଶ ପାଉଥିଲା । ଉତ୍କଳ ପ୍ରଭାର ୩/୪ ସଂଖ୍ୟାରେ ମହାଯାତ୍ରା ଧାରାବାହିକ ପ୍ରକାଶ ପାଉଥିବାରୁ ଜଣେ ବିରକ୍ତି ପ୍ରକାଶ କରିଛନ୍ତି । ହିତୈଷିଣୀର ''ମହାଯାତ୍ରା ପ୍ରତି ମହାବିଦ୍ୱେଷ'' ଶୀର୍ଷକ ସଂବାଦରେ ଏ ବିରକ୍ତି ଅମୂଳକ ଓ ସ୍ୱାର୍ଥ ପ୍ରଣୋଦିତ ବର୍ଣ୍ଣନା କରାଯାଇ ମହାଯାତ୍ରାକୁ ଅମିତ୍ରାକ୍ଷରର ସର୍ବଶ୍ରେଷ୍ଠ ରଚନା ଏବଂ ଓଡ଼ିଆ ସାହିତ୍ୟର ଗର୍ବ ରୂପେ ଅଭିହିତ କରାଯାଇଛି । *(୪୩)*

ହିତୈଷିଣୀ ୧୫.୭.୧୮୯୬ ସଂଖ୍ୟାରେ ଅନେକ ସମାଲୋଚକଙ୍କ ମହାଯାତ୍ରା ସମାଲୋଚନା ପତ୍ରସ୍ଥ ହୋଇଛି । ୨୯.୯.୯୬ ସଂଖ୍ୟାରେ ଭାଗିରଥି ରଥ ଏହାର ଉତ୍କର୍ଷତା ପ୍ରତିପାଦନ କରିଛନ୍ତି । ମହାଯାତ୍ରା ଓ ରାଧାନାଥ ଶୀର୍ଷକ ରଚନାରେ ଭୋଳାନାଥ ସାମନ୍ତରାୟ ମଧ୍ୟ ଏ କାବ୍ୟର ରମଣୀୟତା ଦର୍ଶାଇଛନ୍ତି । *(୪୪)*

ରାଧାନାଥଙ୍କ 'ରାୟବାହାଦୂର' ଉପାଧି ପ୍ରାପ୍ତିରେ ବାମଣ୍ଡାରେ ଏକ ଆନନ୍ଦପ୍ରକାଶ ସଭା ତା ୨୬.୬.୯୭ରେ ଅନୁଷ୍ଠିତ ହୋଇଥିଲା । ସଭାରେ ସଭାପତିତ୍ୱ କରିଥିଲେ ସଚ୍ଚିଦାନନ୍ଦ ଦେବ । ପ୍ରସ୍ତାବକ-ଜଗଦାନନ୍ଦ ଦାସ ଓ ଅନୁମୋଦକ-ଜଳନ୍ଧର ଦେବ । ଏ ସଭାରେ ରାଧାନାଥଙ୍କ ଉପାଧିପ୍ରାପ୍ତି ଉପଲକ୍ଷେ ଆନନ୍ଦ ପ୍ରକାଶ କରି ସଭାର ସମଗ୍ର ବିବରଣୀ ରାଧାନାଥଙ୍କ ଠାକୁ ପଠାଯାଇଥିଲା । ଏ ବିବରଣୀ ହିତୈଷିଣୀରେ ପାଠକଙ୍କ ଅବଗତି ନିମନ୍ତେ ମଧ୍ୟ ପ୍ରକାଶ ପାଇଥିଲା । ହିତୈଷିଣୀର ଦୁଷ୍ପ୍ରାପ୍ୟତା ଓ ରାଧାନାଥ ଓ ବାମଣ୍ଡା ସଂପର୍କର ଏକ ଐତିହାସିକ ଦଲିଲରୂପେ ବିବରଣୀ ପତ୍ରଟି ଅବିକଳ ଉଦ୍ଧୃତ ହେଲା ।

''ରାୟ କବିବରଙ୍କ ରାୟ ବାହାଦୂର ଉପାଧି ଲାଭ ଉପଲକ୍ଷେ ଆନନ୍ଦ ପ୍ରକାଶାର୍ଥ ଆହୂତ ସଭାର କାର୍ଯ୍ୟ ବିବରଣୀ ୨୬-.୬.୯୭ ଦେବଗଡ଼, ବାମଣ୍ଡା ।

ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ମହୋଦୟ ମହାରାଣୀଙ୍କ ହୀରକ ଜୁବିଲୀ ଉପଲକ୍ଷରେ ''ରାୟବାହାଦୂର'' ଉପାଧି ପାଇଥିବାରୁ ଦେବଗଡ ରାଜଧାନୀ ସ୍କୁଲ ଗୃହରେ ଏକ ସଭା ହୋଇଥିଲା । ଉକ୍ତ ସଭାରେ ରାଜଧାନୀର ଦେଶୀ ବିଦେଶୀ ସମସ୍ତ ଭଦ୍ରଲୋକ ଉପସ୍ଥିତ ହୋଇଥିଲେ । ରାତ୍ର ଆଠ ବଜେ ସମୟରେ ସଭାର କାର୍ଯ୍ୟାରମ୍ଭ ହେଲା । ସଭାରେ ନିମ୍ନଲିଖିତ କାର୍ଯ୍ୟମାନ ହୋଇଥିଲା ।

୧ମ: ଶ୍ରୀଯୁକ୍ତ ଯୁବରାଜ ସଚିଦାନନ୍ଦ ଦେବ ମହୋଦୟ ସଭାପତି ଆସନ ଗ୍ରହଣ କରିଥିଲେ ପ୍ରସ୍ତାବକ-ଶ୍ରୀଯୁକ୍ତ ଜଗଦାନନ୍ଦ ଦାସ ଅନୁମୋଦନ-ଶ୍ରୀଯୁକ୍ତ ଜଳନ୍ଧର ଦେବ ।

୨ୟ: ସଭାପତି ମହୋଦୟଙ୍କ କର୍ତ୍ତୃକ ଆଦିଷ୍ଟ ହୋଇ ଶ୍ରୀଯୁକ୍ତ ଜଗଦାନନ୍ଦ ଦାସ ମହାଶୟ ସଭା ଆହ୍ୱାନର ଉଦ୍ଦେଶ୍ୟ ବ୍ୟକ୍ତ କଲେ ।

୩ୟ: ଶ୍ରୀଯୁକ୍ତ ମଧୁସୂଦନ ମିଶ୍ର ପଣ୍ଡିତ ମହାଶୟ ରାଧାନାଥ ପ୍ରଧାନତଃ ସଂସ୍କୃତ ଶିକ୍ଷାର ଉନ୍ନତିକଳ୍ପେ ଯତ୍ନ କରୁଥିବା ଏବଂ ସଂସ୍କୃତଜ୍ଞ ମାନଙ୍କୁ ପ୍ରୀତିଚକ୍ଷୁରେ ଦର୍ଶନ କରୁଥିବା

ହେତୁ ତାଙ୍କ ପରି ବ୍ୟକ୍ତିଙ୍କର ରାଜ ସମ୍ମାନ ଲାଭ ବିଶେଷ ଆନନ୍ଦ ଜନକ ଥିବା ବ୍ୟକ୍ତ କରିଥିଲେ ।

୪ର୍ଥ: ଶ୍ରୀଯୁକ୍ତ ବାବୁ ଜଗଦାନନ୍ଦ ଦାସ ମହାଶୟ ଶ୍ରୀଯୁକ୍ତ ରାଧାନାଥ ରାୟ ମହୋଦୟଙ୍କ ଗଭୀର ଶିକ୍ଷାପ୍ରଦ ସଂକ୍ଷିପ୍ତ ଜୀବନୀ ପ୍ରକାଶ କରି ସେ ପ୍ରକୃତ ସମ୍ମାନାର୍ହ ଥିବା ଏବଂ ତାଙ୍କର ଉପାଧି ଲାଭ ଆନନ୍ଦପ୍ରଦ ହୋଇଥିବା ବ୍ୟକ୍ତ କରିଥିଲେ ।

୫ମ: ଶ୍ରୀଯୁକ୍ତ କାଳୀଚରଣ ଦ୍ୱିବେଦୀ ବିଦ୍ୟାଭୂଷଣ ମହାଶୟ ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ମହୋଦୟ ସ୍ୱୀୟ କବିତାରେ ସଂସ୍କୃତ ସାହିତ୍ୟର ସୁନ୍ଦର ସୁନ୍ଦର ଭାବ ଓ ଭାଷା ସନ୍ନିବେଶ କରି ଉତ୍କଳ ସାହିତ୍ୟର ଉନ୍ନତି ଓ ପରିପୁଷ୍ଟି ବିଷୟରେ ବିଶେଷ କାର୍ଯ୍ୟ କରିଥିବାରୁ ତାଙ୍କର ରାଜ ସମ୍ମାନ ଲାଭରେ ଉତ୍କଳ ବାସୀଙ୍କର ଆନନ୍ଦ ପ୍ରକାଶ କରିବା ଉଚିତ ଥିବା ଓ ସେ ସ୍ୱୟଂ ଅତ୍ୟନ୍ତ ଆନନ୍ଦିତ ହୋଇଥିବା ବ୍ୟକ୍ତ କଲେ ।

୬ଷ୍ଠ: ଶ୍ରୀଯୁକ୍ତ ବାବୁ ଯୋଗେଶ ଚନ୍ଦ୍ର ଦାସ ମହାଶୟ ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟଙ୍କ ଶିଷ୍ଟାଚାର, ନମ୍ରତା ଏବଂ ପାଣ୍ଡିତ୍ୟର ପ୍ରଶଂସା କରି କହିଥିଲେ ଯେ, ଉତ୍କଳ ସାହିତ୍ୟରେ ନବ ନବ ଭାବ ସନ୍ନିବେଶିତ କରି ଓଡ଼ିଆ ସାହିତ୍ୟର ପୁରିପୁଷ୍ଟି ସାଧନ କରିଥିବା, ଏମନ୍ତ କି, ରାଧାନାଥ ଉତ୍କଳର ମାଇକେଲ ମଧୁସୂଦନ ଦତ୍ତ ଥିବା ଓ ରାଜକୀୟ ଉଚ୍ଚତର ଉପାଧି ଲାଭର ଉପଯୁକ୍ତ ଥିବା ଏବଂ ତାଙ୍କର ବର୍ତ୍ତମାନ ଉପାଧି ଲାଭରେ ସମସ୍ତେ ଅତ୍ୟନ୍ତ ଆନନ୍ଦିତ ହୋଇଥିବା ବ୍ୟକ୍ତ କଲେ ।

୭ମ: ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ ମହାଶୟ କବିବର ଜଣେ ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତିଥିବା, ସେ ଜାତିରେ ବଙ୍ଗାଳି ହେଲେ ସୁଦ୍ଧା, ଆପଣାକୁ ଓଡ଼ିଆ ବୋଲି ପରିଚୟ ଦେବାରେ ଗୌରବବୋଧ କରୁଥିବା, ଓଡ଼ିଆଙ୍କୁ ଓ ଓଡ଼ିଆ ସାହିତ୍ୟକୁ ସ୍ନେହଚକ୍ଷୁରେ ଦେଖୁଥିବା, ସର୍ବଜନ ସୁପାଠ୍ୟ ସୁଭାବପୂର୍ଣ୍ଣ ସଦ୍-ସାହିତ୍ୟ ପ୍ରକାଶ କରିଥିବା, ତାଙ୍କ ଯତ୍ନରେ ଉତ୍କଳରେ ପ୍ରାଥମିକ ଶିକ୍ଷାର ବିଶେଷ ଉନ୍ନତି ହୋଇଥିବା ଏବଂ ସେ ବିବିଧ ସଦ୍‌ଗୁଣ ଭୂଷିତ ହୋଇ ସକଳ ବିଷୟରେ ଆମ୍ଭମାନଙ୍କର ଆଦର୍ଶ ସ୍ଥାନୀୟ ଥିବାରୁ ସେ ପ୍ରକୃତ ସମ୍ମାନାର୍ହ ଥିବା ବର୍ତ୍ତମାନ ସେ ରାଜଦ୍ୱାରରେ ସମ୍ମାନାର୍ହ ବିବେଚିତ ହୋଇ ରାୟ ବାହାଦୂର ଉପାଧିଲାଭ କରିଥିବାରୁ ଆମ୍ଭମାନଙ୍କର ଅଶେଷ ଆନନ୍ଦ ହୋଇଅଛି । ଅତଏବ ଆମ୍ଭମାନଙ୍କ ଏହି ଆନନ୍ଦ ସମାଚାର ଉକ୍ତ ମହୋଦୟଙ୍କ ନିକଟକୁ ପ୍ରେରିତ ହେବା ଉଚିତ ।

ଅନୁମୋଦିତ-ଶ୍ରୀଯୁକ୍ତ ଜଳନ୍ଧର ଦେବ

ସମର୍ଥକ :-ଶ୍ରୀଯୁକ୍ତ ବିଶ୍ୱନାଥ ପାଣିଗ୍ରାହୀ ।

୮ମ. ଶ୍ରୀଯୁକ୍ତ ଜଗନ୍ନାଥ ପଟ୍ଟନାୟକ ମହାଶୟ ରାୟ କବିଙ୍କର ଗୁଣ କୀର୍ତ୍ତନ କରି ତାଙ୍କର ସମ୍ମାନ ଲାଭରେ ସଭା ଆନନ୍ଦିତ ହୋଇଥିବା ସଂବାଦ ସମ୍ବାଦପତ୍ରରେ ପ୍ରକାଶ କରିବାର ପ୍ରସ୍ତାବ କଲେ ।

ଅନୁମୋଦକ : ଶ୍ରୀଯୁକ୍ତ ବଳଭଦ୍ର ଦେବ ପଟ୍ଟାୟତ

ସମର୍ଥକ : ଶ୍ରୀଯୁକ୍ତ ଶରତ୍ କୁମାର ଦାସ ।

୯ମ: ରାୟବାହାଦୁରଙ୍କ ନିକଟକୁ ସଭାପକ୍ଷରୁ ପତ୍ର ଲେଖିବା ସକାଶେ ସଭାପତି ମହୋଦୟଙ୍କୁ ଅନୁରୋଧ କରାଯାଉ ଏବଂ ସମ୍ବାଦପତ୍ରରେ ସଭାର କାର୍ଯ୍ୟ ବିବରଣୀ ପ୍ରକାଶ କରିବା ସକାଶେ ହିତୈଷିଣୀ ସଂପାଦକଙ୍କୁ ଅନୁରୋଧ କରାଯାଉ ।

ପ୍ରସ୍ତାବକ : ଶ୍ରୀଯୁକ୍ତ ଜଳନ୍ଧର ଦେବ

ଅନୁମୋଦକ : ଶ୍ରୀଯୁକ୍ତ ଶରତ୍ କୁମାର ଦାସ

ସମର୍ଥକ : ଶ୍ରୀଯୁକ୍ତ ବିଶ୍ୱନାଥ ପାଣିଗ୍ରାହୀ ।

୧୦ମ: ଆନନ୍ଦ ପ୍ରକାଶ ସକାଶେ ସଭା ଆହ୍ୱାନ କରିଥିବାରୁ ଶ୍ରୀଯୁକ୍ତ ଜଗଦାନନ୍ଦ ଦାସ ମହୋଦୟଙ୍କୁ ଧନ୍ୟବାଦ ଦିଆଯାଉ ।

ପ୍ରସ୍ତାବକ: ପଣ୍ଡିତ ଶ୍ରୀଯୁକ୍ତ ମଧୁସୂଦନ ମିଶ୍ର

ଅନୁମୋଦକ: ପଣ୍ଡିତ ଶ୍ରୀଯୁକ୍ତ କାଳୀ ଚରଣ ଦ୍ୱିବେଦୀ

୧୧ଶ: ସଭାପତି ମହୋଦୟ ଶ୍ରୀଯୁକ୍ତ ରାୟ କବିଙ୍କ ଉପାଧି ଲାଭରେ ଅତ୍ୟନ୍ତ ଆନନ୍ଦିତ ହୋଇଥିବା ଏବଂ ସେ ଅଧିକତର ଉଚ୍ଚସମ୍ମାନ ଲାଭର ଅଧିକାରୀ ଥିବା ଆଦି ବିଷୟ ଓ ତାଙ୍କର ଗୁଣାବଳୀ କୀର୍ତ୍ତନ କରିଥିଲେ ଓ ଶ୍ରୀମତୀ ମହାରାଣୀଙ୍କ ହୀରକ ଜୁବ୍ଲି ଉପଲକ୍ଷରେ ରାୟକବି ସମ୍ମାନ ଲାଭ କରିଥିବାରୁ ସଭ୍ୟମାନଙ୍କ ସହିତ ସମସ୍ୱରରେ ମହାରାଣୀଙ୍କ ଜୟଗାନ କରି ଆନ୍ତରିକ କୃତଜ୍ଞତା ଜ୍ଞାପନ କରିଥିଲେ । ତଦ୍‌ପରେ ସଭାପତିଙ୍କୁ ଧନ୍ୟବାଦ ଦିଆଯାଇ ରାତ୍ରି ୧୦ଘଣ୍ଟା ସମୟରେ ସଭାସାଙ୍ଗ କରାଗଲା ।

ସଚ୍ଚିଦାନନ୍ଦ ଦେବ

ସଭାପତି ।" *(୪୫)*

ଏ ସଂବର୍ଦ୍ଧନା ପତ୍ରର ଏକ ଦୀର୍ଘ ଏକାଦଶ ଅନୁଚ୍ଛେଦ ବିଶିଷ୍ଟ ଉତ୍ତର ରାଧାନାଥ ଲେଖିଥିଲେ । ସେ ପତ୍ରଟି ଅବିକଳ ହିତୈଷିଣୀରେ ପ୍ରକାଶ ପାଇଥିଲା ।

"ବାମଣ୍ଡା ଆଲୋଚନା ସଭାର ସଭାପତି ପରମମାନନୀୟ ଶୀଳ ଶ୍ରୀଯୁକ୍ତ ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ମହୋଦୟ ଶ୍ରୀ କର କମଳେଷୁ

ସବିନୟ ନିବେଦନମିଦଂ

ମହାଶୟ,

୧. ବିଗତ ଜୁନମାସ ୨୬ ତାରିଖରେ ଦେବଗଡ ରାଜଧାନୀରେ ବାମଣ୍ଡା ଆଲୋଚନା ସଭାର ଯେଉଁ ଅଧିବେଶନ ହୋଇଥିଲା, ଆପଣଙ୍କ ସ୍ୱାକ୍ଷର ସମ୍ବଳିତ ନିର୍ଦ୍ଧାରଣର ଖଣ୍ଡିଏ ପ୍ରତିଲିପି ପ୍ରାପ୍ତ ହୋଇ ଅପ୍ୟାୟିତ ହେଲି ଏବଂ ସେଥି ସକାଶେ ସଭାକୁ ମୋହର ବିନୀତ କୃତଜ୍ଞତା ଆବେଦନ କରୁଅଛି ।

୨. ସଭା ମୋହୋ ପ୍ରତି ଯେଉଁ ସମ୍ମାନ ପ୍ରଦର୍ଶନ କରିଅଛନ୍ତି ତାହା ମୋହର ଯୋଗ୍ୟତାକୁ ବହୁଦୂର ଅତିକ୍ରମ କରିଅଛି । ରାଜଦତ୍ତ ଉପାଧି ପରି ଏ ସମ୍ମାନ ମଧ ମୋହର ଆଶାତୀତ ବରଂ କଳ୍ପନାତୀତ ଅଟେ । ରାଜଦତ୍ତ ଉପାଧି ମୋହୋ ଚକ୍ଷୁରେ ଯେପରି ମୂଲ୍ୟବାନ ବାମଣ୍ଡା ସଭାର ଏହି ଅଭିନନ୍ଦନ ମଧ ସେହିପରି ମୂଲ୍ୟବାନ ଏବଂ ସେହିପରି ଶିରୋଧାର୍ଯ୍ୟ ।

୩. ସଭାରେ ଯେଉଁ ମହୋଦୟମାନେ ଉପସ୍ଥିତ ଥିଲେ ସେମାନଙ୍କ ମଧରେ ଶ୍ରୀଯୁକ୍ତ ବାବୁ କୁମାର ବଳଭଦ୍ର ଦେବ ପଟ୍ଟାୟତ ସାହେବ, ଶ୍ରୀଯୁକ୍ତ ବାବୁ ଜଳନ୍ଧର ଦେବ, ଶ୍ରୀଯୁକ୍ତ ବାବୁ ନୀଳମଣି ବିଦ୍ୟାରତ୍ନ, ଶ୍ରୀଯୁକ୍ତ ବାବୁ ଜଗଦାନନ୍ଦ ଦାସ, ଶ୍ରୀଯୁକ୍ତ ବାବୁ ମଧୁସୂଦନ ମିଶ୍ର, ଶ୍ରୀଯୁକ୍ତ ବାବୁ ଯୋଗେଶ ଚନ୍ଦ୍ର ଦାସ, ଶ୍ରୀଯୁକ୍ତ ବାବୁ କାଳୀ ଚରଣ ବିଦ୍ୟାଭୂଷଣ, ଶ୍ରୀଯୁକ୍ତ ବାବୁ ଜଗନ୍ନାଥ ପଟ୍ଟନାୟକ, ଶ୍ରୀଯୁକ୍ତ ବାବୁ ଶରତ୍ କୁମାର ଦାସ ମୋର ସହିତ ବହୁ ଦିନରୁ ଘନିଷ୍ଠ ରୂପେ ପରିଚିତ ଏବଂ ସମସ୍ତେ ମୋର ଶ୍ରଦ୍ଧା ଏବଂ ଭକ୍ତିଭାଜନ ଅଟନ୍ତି । ଏହି ବନ୍ଧୁ ମାନଙ୍କୁ ଏବଂ ସଭାସ୍ଥ ପରିଚିତ ଏବଂ ଅପରିଚିତ ଅନ୍ୟାନ୍ୟ ଅନୁଗ୍ରାହକ ସଭ୍ୟମାନଙ୍କୁ ଅନୁଗ୍ରହ ପୂର୍ବକ ମୋର ଆନ୍ତରିକ କୃତଜ୍ଞତାପୂର୍ଣ୍ଣ ସମ୍ଭାଷଣ ଜଣାଇବା ହେବେ ।

୪. ବାମଣ୍ଡା ରାଜ ପଣ୍ଡିତ ଶ୍ରୀଯୁକ୍ତ ବାବୁ ମଧୁସୂଦନ ମିଶ୍ର ମହୋଦୟ ସଂସ୍କୃତଜ୍ଞ ବ୍ୟକ୍ତିମାନଙ୍କ ପ୍ରତି ମୋର ସହାନୁଭୂତି ଥିବା ସମ୍ବନ୍ଧରେ ଯେଉଁ ମନ୍ତବ୍ୟ ବ୍ୟକ୍ତ କରି ଅଛନ୍ତି, ସେଥିରେ ଲେଶମାତ୍ର ଅତିରଞ୍ଜନ ନାହିଁ । ମାତ୍ର ଏଥି ସକାଶେ ମୁଁ ଶ୍ଲାଘାର୍ହ ନୁହେ । ପ୍ରତ୍ୟୁତ ଏ ସମ୍ବନ୍ଧରେ ମୋହର ଯାହା କର୍ତ୍ତବ୍ୟ ସାମର୍ଥ୍ୟାଭାବବଶତଃ ତାହାର ଶତାଂଶ ମୁଁ କରିପାରି ନାହିଁ । ଏହା ସ୍ମରଣ କରି ନିରତିଶୟ ଲଜ୍ଜିତ ହୋଇଥାଏଁ । ସଂସ୍କୃତଜ୍ଞ ପଣ୍ଡିତ ମାନେ ପ୍ରତ୍ୟେକ ଆର୍ଯ୍ୟ ଧର୍ମାବଲମ୍ବୀଙ୍କର ପୂଜନୀୟ ଏବଂ ଯେଉଁମାନଙ୍କ ଦେହରେ ଆର୍ଯ୍ୟଶୋଣିତ ପ୍ରବାହିତ ହେଉଅଛି, ସଂସ୍କୃତଜ୍ଞ ପଣ୍ଡିତ-ମାନଙ୍କ ପ୍ରତି ଶ୍ରଦ୍ଧାଳୁ ହେବା ସେମାନଙ୍କ ପକ୍ଷରେ ସ୍ୱଭାବସିଦ୍ଧ ଅଟେ । ଅଦୃଃଖୋଚିତ ଅଥଚ ଦୁଃଖୀ ପଣ୍ଡିତମାନଙ୍କ ଅବସ୍ଥା ବର୍ତ୍ତମାନ କିପରି ଶୋଚନୀୟ ହୋଇଅଛି, ତାହା ବୋଲିବା ବାହୁଲ୍ୟ । କେବଳ ନିବୃତ୍ତିମୁଖ ସହାନୁଭୂତି ଦ୍ୱାରା ଦୁଃଖର କୌଣସି ପ୍ରତିକାର ହୁଏନାହିଁ । ପଣ୍ଡିତମାନଙ୍କ

ପ୍ରତି ଆସ୍ଥା ପ୍ରଦର୍ଶନ ଏବଂ ସାହାଯ୍ୟଦାନ ବିଷୟରେ ସଂପ୍ରତି ବାମଣ୍ଡା ଓଡ଼ିଶାରେ ଆଦର୍ଶ ସ୍ଥାନୀୟ ହୋଇଅଛି । ଶ୍ରୀ ସୁଢ଼ଳଦେବାଧିଷ୍ଠିତ ଦେବଗଡ ପଣ୍ଡିତ ମାନଙ୍କ ପ୍ରଧାନ ଆଶ୍ରୟସ୍ଥଳୀ ରୂପେ ଉତ୍କଳରେ ଦେଦୀପ୍ୟମାନ । ଏହି ଖ୍ରୀଷ୍ଟୀୟ ଶତାବ୍ଦୀରେ ''ଆନନ୍ଦ ଦାମୋଦର ଚମ୍ପୂ'' ଏବଂ ''କୃଷ୍ଣ ପ୍ରେମ ତରଙ୍ଗିଣୀ'' ପ୍ରଭୃତି ଯେଉଁ ଉତ୍କୃଷ୍ଟ ଏବଂ ସ୍ମରଣୀୟ ସଂସ୍କୃତ ଗ୍ରନ୍ଥ ଉତ୍କଳରେ ରଚିତ ହୋଇଅଛି, ସେମାନଙ୍କର ମୁଦ୍ରଣ ଏବଂ ପ୍ରଚାର ସକାଶେ ଉତ୍କଳୀୟ ବରଂ ଭାରତୀୟ ସାହିତ୍ୟିକ ଜଗତ କେବଳ ବାମଣ୍ଡାଠାରେ ଋଣୀ । ଏ ବିଷୟରେ ବାମଣ୍ଡାର ପ୍ରତିଷ୍ଠା ଉତ୍କଳର ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ନୁହେଁ । ସୁବିସ୍ତୃତ ବଙ୍ଗ ଦେଶର ପଣ୍ଡିତମାନେ ମଧ୍ୟ ବାମଣ୍ଡାର ଯଶୋଗାନରେ ମୁକ୍ତ କଣ୍ଠ । ଏହି ବାମଣ୍ଡାରୁ ମାଦୃଶ ସାମାନ୍ୟ ବ୍ୟକ୍ତି ସମ୍ବନ୍ଧରେ ଏପରି ଅନୁକୂଳ ମତବାଦ ମୋହୋ ପକ୍ଷରେ ଯେପରି ଗୌରବାବହ, ମୁଁ କୌଣସି ଅଂଶରେ ନିଜକୁ ସେହି ଗୌରବର ଉପଯୁକ୍ତ ମଣିଥିଲେ ବାସ୍ତବ ଆହ୍ଲାଦିତ ହୁଅନ୍ତି ।

୪. ସଭାର କୌଣସି କୌଣସି ସଭ୍ୟ ଉତ୍କଳ ସାହିତ୍ୟ ଉନ୍ନତି କଳ୍ପରେ ମୋହର ଯତ୍ସମାନ୍ୟ ଉଦ୍ୟମକୁ ସମ୍ୟକ୍ ଅନୁକୂଳ ଦୃଷ୍ଟିରେ ଦେଖି ସେଥି ସମ୍ବନ୍ଧରେ ପ୍ରୀତି ବ୍ୟଞ୍ଜନ ମନ୍ତବ୍ୟ ବ୍ୟକ୍ତ କରିଅଛନ୍ତି । ମୁଁ ଏ ମନ୍ତବ୍ୟର କେତେଦୂର ଉପଯୁକ୍ତ, ଏ ସମ୍ବନ୍ଧରେ ମୋହର ଗଭୀର ସନ୍ଦେହ ଅଛି । ମାତ୍ର ମୋହଦ୍ୱାରା ଯେବେ ଉତ୍କଳ ସାହିତ୍ୟର କଣାମାତ୍ର ଉନ୍ନତି ସାଧିତ ହୋଇଥାଏ, ସେଥିରେ ମୂଳୀଭୂତ କାରଣ ବାମଣ୍ଡା, ଅଥବା ବାମଣ୍ଡାର ପରମ ମାନନୀୟ ଅଧୀଶ୍ୱର ମହାରାଜ ସୁଢ଼ଳଦେବ ଅଟନ୍ତି । ଓଡ଼ିଆ ସାହିତ୍ୟ ପ୍ରତି ଆବାଲ୍ୟ ମୋହର ପ୍ରଗାଢ଼ ଅନୁରାଗ ଥିଲା । ଅତିଅଳ୍ପ ବୟସରୁ ମୁଁ ସେହି ସାହିତ୍ୟର ଅନୁଶୀଳନରେ ବ୍ରତୀ ହୋଇଥିଲି । ୨/୩ ବର୍ଷ ପରେ ନାନା କାରଣରୁ ବିଶେଷତଃ ସାହିତ୍ୟିକ ସହାନୁଭୂତିର ଅଭାବ ହେତୁରୁ ଉତ୍କଳ ସାହିତ୍ୟର ଚର୍ଚ୍ଚା ମୁଁ ପ୍ରାୟ ପରିତ୍ୟାଗ କରିଥିଲି ଏବଂ ପ୍ରାୟ ୮/୧୦ ବର୍ଷ କାଳ ସେ ବିଷୟରେ ସଂପୂର୍ଣ୍ଣ ଉଦାସୀନ ଥିଲି । ବିଦ୍ୟୋତ୍ସାହି ପ୍ରବର ଶ୍ରୀଯୁକ୍ତ ସୁଢ଼ଳଦେବଙ୍କ ସହିତ ମୋହର ପୂର୍ବରୁ ପରିଚୟ ହୋଇଥିଲେ ମୋହର ଜୀବନର ଉତ୍କୃଷ୍ଟତମ ଅଂଶ ଏପରି ବନ୍ଧ୍ୟ ହୋଇ ନଥାନ୍ତା । ପୂର୍ବୋକ୍ତ ୮/୧୦ ବର୍ଷପରେ ମହାରାଜ ସୁଢ଼ଳଦେବ ସ୍ୱତଃ ପ୍ରବୃତ୍ତହୋଇ ପତ୍ରଦ୍ୱାରା ମୋତେ ପ୍ରୋତ୍ସାହିତ ଏବଂ ମୋହର ନିର୍ବାଣପ୍ରାୟ ଉତ୍କଳ ସାହିତ୍ୟାନୁରାଗ ସନ୍ଧୁକ୍ଷିତ କରାଇ ଦେଲେ ଏବଂ ଅଳ୍ପ ଦିନରେ ଦେବଗଡ଼ ଯିବା ସକାଶେ ମୋତେ ଆମନ୍ତ୍ରଣ ପତ୍ର ପ୍ରେରଣ କଲେ । ସେହି ଆଦେଶାନୁଯାୟୀ ମୁଁ ଦେବଗଡ଼ରେ ଉପସ୍ଥିତ ହୋଇ ମହାରାଜାଙ୍କର ସାକ୍ଷାତ୍କାର ଲାଭ କଲି ଏବଂ ତଦ୍ୱାରା ମୋହୋର ସାହିତ୍ୟିକ ଜୀବନରେ

ଯୁଗାନ୍ତର ପ୍ରବର୍ତ୍ତିତ ହେଲା । ବିବିଧ ଦାୟିତ୍ୱ ପୂର୍ଣ୍ଣ ରାଜପଦ, ସେଥିସଙ୍ଗେ ସଂସ୍କୃତ ବିଦ୍ୟାରେ ଅସାଧାରଣ ପାଣ୍ଡିତ୍ୟ ଏବଂ ସେଥିସଙ୍ଗେ ପୁଣି ଉତ୍କଳ ସାହିତ୍ୟ ଚର୍ଚ୍ଚା ପରସ୍ପର ବିରୋଧୀବତ୍ ପ୍ରତୀୟମାନ ଏହି ଗୁଣ ଏବଂ କାର୍ଯ୍ୟମାନଙ୍କର ଅଦୃଷ୍ଟପୂର୍ବ ସମବାୟ ମୁଁ ସର୍ବପ୍ରଥମ ଦେବଗଡ଼ରେ ଦେଖିଲି । ଏହି ସମୟରୁ ବାମଣ୍ଡା ସହିତ ମୋହର ସଂପର୍କ କ୍ରମଶଃ ଘନିଷ୍ଠ ହେବାକୁ ଲାଗିଲା ଏବଂ ମାନନୀୟ ମହାରାଜାଙ୍କ ଆମନ୍ତ୍ରଣମତେ ମୁଁ ଆହୁରି ଦୁଇଥର ବାମଣ୍ଡା ଯାଇ ବାମଣ୍ଡାର କେତେଗୁଡ଼ିଏ ଲବ୍ଧ ପ୍ରତିଷ୍ଠ ବ୍ୟକ୍ତିଙ୍କ ସହିତ ପରିଚିତ ଏବଂ ବନ୍ଧୁତାସୂତ୍ରରେ ଆବଦ୍ଧ ହେଲି । ବୋଲିବା ବାହୁଲ୍ୟ ଯେ, ବାମଣ୍ଡାର ଔଦାର୍ଯ୍ୟ ମୁଦ୍ରା ଆଜୀବନ ମୋହ ହୃଦୟରେ ମୁଦ୍ରିତ ରହିବ ଏବଂ ମୋହର ଓ ଆତ୍ମୀୟ ବର୍ଗଙ୍କ ସମ୍ବନ୍ଧରେ ବାମଣ୍ଡା ଶବ୍ଦ ସର୍ବଦା ପ୍ରୀତିକର ଅନୁସ୍ମୃତିର ଉଦ୍‌ବୋଧନ ହେବ ।

ଉପସଂହାରରେ ମୋହର ନିବେଦନ ଏହି ଯେ ଯଦିଚ ସଭାରେ ଶ୍ରୀ ମହାରାଜ ସୂକ୍ଷ୍ମଦେହ ସମ୍ୟକ୍ ପ୍ରତିନିହିତ ହୋଇଥିଲେ ତଥାଚ ତାହାଙ୍କର ସ୍ଥୂଳାଧିଷ୍ଠାନ ବିରହିତ ହୋଇଥିବାରୁ ସଭାର ଏହି ଅଭିନନ୍ଦନ ଆଦରଣୀୟ ହୋଇସୁଦ୍ଧା ମୋହ ପ୍ରତି ସମାଧିକ ଆହ୍ଲାଦପ୍ରଦ ହୋଇ ନାହିଁ; ବରଂ ମହାରାଜାଙ୍କର ଦାରୁଣ ପୀଡ଼ାର ସ୍ମୃତିକୁ ଉଦ୍ଦୀପ୍ତ କରାଇ ବିଷାଦ କାଳିମାରେ ହୃଦୟକୁ ଅଧିକତର ମ୍ଳାନ କରାଇଅଛି । ଦୟାମୟ ଜଗଦୀଶ୍ୱରଙ୍କଠାରେ ମୋହର ସତତ ପ୍ରାର୍ଥନା ଏହି ଯେ ମହାରାଜ ଶୀଘ୍ର ରୋଗମୁକ୍ତ ହେଉନ୍ତୁ ଏବଂ ତାହାଙ୍କର ଆରୋଗ୍ୟ ଅମୃତାୟନମାନ ସମ୍ବାଦ ବିଷର୍ଣ୍ଣ ଉତ୍କଳବାସୀଙ୍କୁ ହର୍ଷୋତ୍‌ଫୁଲ୍ଲ କରୁ ।

ବଶମ୍ବଦ

କଟକ  ଶ୍ରୀ ରାଧାନାଥ ରାୟ ।''(୪୬)

ରାଧାନାଥ ଆଜୀବନ ସାରସ୍ୱତ ସାଧକ ଥିଲେ । ''ଆଧୁନିକ ସମାଜ ଏବଂ ତାହାର ସଂସ୍କାର ସମ୍ବନ୍ଧରେ କତିପୟ ପ୍ରସ୍ତାବ'' ହିତୈଷିଣୀ ମାଧ୍ୟମରେ ସେ ପ୍ରଦାନ କରିଥିଲେ । ଏଥିରୁ ତାଙ୍କର ଦୂରଦୃଷ୍ଟି ଓ ଦେଶ ହିତୈଷିତାର ପରିଚୟ ମିଳେ ।

ରାଧାନାଥଙ୍କ ବିଭିନ୍ନ ସମୟେ ବାମଣ୍ଡା ଆଗମନ ତତ୍‌ଜନୀତ ସାହିତ୍ୟ ସମାରୋହ ସମୂହର ସବିଶେଷ ବିବରଣୀ ପ୍ରଦାନରେ ହିତୈଷିଣୀ ଶତମୁଖ ହୋଇଛି । ରାଧାନାଥ ବିଭିନ୍ନ ନବୀନ ଲେଖକଙ୍କ ରଚନାର ପ୍ରଶଂସା ପତ୍ର ମାନ ହିତୈଷିଣୀକୁ ପ୍ରଦାନ କରୁଥିଲେ । ଏଗୁଡିକ ହିତୈଷିଣୀରେ ଉପଯୁକ୍ତ ସ୍ଥାନ ପାଉଥିଲେ । କୌଣସି ସାହିତ୍ୟିକ ସଂଦେଶକୁ ହିତୈଷିଣୀ ମାଧ୍ୟମରେ ରାଧାନାଥ ପ୍ରେରଣ କରୁଥିଲେ । ଚିଲିକା କାବ୍ୟର ଏକ ପଦ ପରିବର୍ତ୍ତନ ପାଇଁ ସେ ଯେଉଁ ପତ୍ର ପ୍ରଦାନ କରିଥିଲେ ତାହା ଉଲ୍ଲେଖଯୋଗ୍ୟ ।

ଚିଲିକା କାବ୍ୟର ''ଚିତ୍ରିମାନ ଆକାରେ ଭାସେ ଶତଶତ

ନିଳୋରସେ ତୋର ଶୈଳ ମାରକତ ''

ପରିବର୍ତ୍ତେ-'' ବିମାନ ଆକାରେ ଭାସେ ଅଗଣନ

ନୀଳୋରସେ ଶୈଳ ବୈଡୁର୍ଯ୍ୟ କିରଣ ।'' ହେବ

x x x x x x x x

''ଓଡ଼ିଶାର ଅନ୍ୟାନ୍ୟ ଅଂଶ ଅପେକ୍ଷା ବାମଣ୍ଡାରେ ଏହି ସଂଶୋଧନ ପ୍ରଚାରିତ ହେବା ବିଶେଷ ରୂପେ ବାଞ୍ଛନୀୟ ହେତୁକି ବାମଣ୍ଡା ମୋହର ଗ୍ରନ୍ଥାବଳୀର ସର୍ବପ୍ରଧାନ ଅଭିଭାବକ ଏବଂ ସମଗ୍ର ଉତ୍କଳ ପ୍ରଦେଶରେ ଯେତେ ସଂଖ୍ୟକ ଗ୍ରନ୍ଥାବଳୀ ବିକ୍ରୀତ ହୋଇଅଛି ଏକମାତ୍ର ବାମଣ୍ଡା ରାଜ୍ୟରେ ସେଥିର ପ୍ରାୟ ଦୁଇଗୁଣ ବିକ୍ରୀତ ହୋଇଅଛି ।'' *(୪୭)*

ରାଧାନାଥଙ୍କ କାବ୍ୟ କବିତାର ପ୍ରକାଶ ଓ ଆଲୋଚନା ସହିତ ରାଧାନାଥଙ୍କ ଉପଦେଶ ଗ୍ରହଣ କରି ହିତୈଷିଣୀ ବୁଦ୍ଧିମନ୍ତ ହୋଇଥିଲା । ରାଧାନାଥଙ୍କ ତିରୋଧାନରେ ସମଗ୍ର ଉତ୍କଳ ପ୍ରକୃତି ସହିତ ସମତାନରେ କାନ୍ଦି ଉଠିଥିଲା ହିତୈଷିଣୀ ।

''କି କୁକ୍ଷଣେ ଆଜି ପାହିଲା ରଜନୀ
କି ଶୁଣିଲୁ ଆଜି କର୍ଣ୍ଣେ
ଅଦ୍ଭୁତେ ମୁଣ୍ଡେ ହେବ ବଜ୍ରାଘାତ
ଭାବି ନ ଥିଲୁ ସ୍ୱପନେ ।
ଉତ୍କଳ ସାହିତ୍ୟ-ଗୌରବ ବର୍ଦ୍ଧକ
ରାଧାନାଥ କବିବର
ଦୁଃଖିନୀ ଉତ୍କଳ-ଜନନୀ ନୟନ
ପ୍ରତିମା ଯୋଗ୍ୟ କୁମର
ଯାହାଙ୍କ ସରସ କବିତା ପୀୟୂଷ
ପାନେ ସର୍ବେ ତୋଷ ଅତି
ନିଜଗୁଣ ବଳେ ସାହିତ୍ୟ ସାମ୍ରାଜ୍ୟେ
ଟେକାଇଥିଲେ ଯେ ଛତି,
x x x x
ସେହି ରାଧାନାଥ ଗୌରବ ଭାସ୍କର
ନାହାନ୍ତି ଏ ମରଧାମେ,
ରହିଲେଣି ଯାଇ ସ୍ୱଚ୍ଛନ୍ଦେ ଅଭେଦ୍ୟ
ଅଗମ୍ୟ ଅନନ୍ତ ଧାମେ ।'' *(୪୮)*

ଯୁଗସ୍ରଷ୍ଟା ରାଧାନାଥଙ୍କ ସାହିତ୍ୟ ପ୍ରତିଷ୍ଠା ଆଣିବାରେ ହିତୈଷିଣୀ ଅଗ୍ରଗଣ୍ୟ ଭୂମିକା ଗ୍ରହଣ କରିଥିଲା । ଗଙ୍ଗାଧରଙ୍କୁ ପତ୍ର ଛଳରେ ''ବାମଣ୍ଡା ସହିତ ସଂପର୍କ ତାଙ୍କୁ କ୍ଷତିଗ୍ରସ୍ତ କରିଛି ବକ୍ତବ୍ୟ'' ମିଥ୍ୟାଶ୍ରିତ । ବରଂ ବାମଣ୍ଡା ସଂପର୍କ ରାଧାନାଥଙ୍କୁ ମହିମାମଣ୍ଡିତ କରିଛି ଓ ରାଧାନାଥ

ସାହିତ୍ୟ ପ୍ରଚାରର ପ୍ରଧାନ ମାଧମ ସାଜିଛି । ରାଧାନାଥ ସୃଷ୍ଟିର ପ୍ରଧାନ ପୃଷ୍ଠପୋଷକ ରୂପେ ବାମଣ୍ଡା ଭୂମି ଓ ହିତୈଷିଣୀ ତଥା ବିଜୁଳି ପତ୍ରିକା ଚିର ଦେଦୀପ୍ୟମାନ ରହିବ ।

## ୩: ବିଶ୍ୱନାଥ କର : (୧୮୬୪-୧୯୩୪)

ଉତ୍କଳ ସାହିତ୍ୟ ପ୍ରକାଶ ପର୍ଯ୍ୟନ୍ତ ବିଶ୍ୱନାଥ କର ନିୟମିତ ହିତୈଷିଣୀ ପୃଷ୍ଠାରେ ଲେଖୁଥିଲେ । ହିତୈଷିଣୀରେ ବିଭିନ୍ନ ସମାଲୋଚନା ମୂଳକ ଟୀପଣୀ, ସମସ୍ୟା ମୂଳକ ରଚନା ପ୍ରକାଶ କରିବା ଅନ୍ତରାଳରେ ବିଶ୍ୱନାଥ ଯେମିତି ଏକ ବୃହତ୍ତର ପରିଚର୍ଯ୍ୟା ପାଇଁ ପ୍ରସ୍ତୁତ ହେଉଥିଲେ । ଏ ପରିଚର୍ଯ୍ୟାର ସାରସ୍ୱତ ପରିପ୍ରକାଶ ଉତ୍କଳ ସାହିତ୍ୟ । ''ସମସାମୟିକ ସମସ୍ୟା ସମାଧାନ ଦିଗରେ ତାଙ୍କର ଉପଯୁକ୍ତ ଉପଦେଶ ନିର୍ଭୀକ ସମାଲୋଚନା, ବିଶେଷତଃ ସାହିତ୍ୟର ଅଗ୍ରଗତି ଦିଗରେ ତାଙ୍କର ଗଭୀର ଦୂରଦୃଷ୍ଟି ଓ ବହୁ ନୂତନ ଲେଖକ ତାଲିମ କରିବାରେ ତାଙ୍କର ଉଦାର ସହାନୁଭୂତି ଓଡିଆ ସାହିତ୍ୟ ଇତିହାସରେ ଏକାନ୍ତ ସ୍ମରଣୀୟ ।'' *(୪୯)* ହିତୈଷିଣୀରେ ପ୍ରକାଶିତ ତାଙ୍କର ରଚନା ସମୂହରୁ ତାଙ୍କର ସ୍ୱାଧୀନଚିନ୍ତା, ସ୍ୱଦେଶ ପ୍ରେମ, ଜାତୀୟବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥାଏ । ତାଙ୍କର ଆଦର୍ଶବାଦୀ ଚିନ୍ତାଧାରା ଆଧ୍ୟାତ୍ମିକ ଚେତନାର ପରିସ୍ଫୁଟନ ମଧ ରଚନା ସମୂହରେ ଦେଖାଯାଏ ।

କଟକ ନର୍ମାଲ ସ୍କୁଲ ସମ୍ବନ୍ଧରେ ହିତୈଷିଣୀ ୨୮.୯.୯୨ ସଂଖ୍ୟାରେ ଲେଖନୀ ଚାଳନା କରିଥିଲେ । ନର୍ମାଲ ସ୍କୁଲର ପରିଚାଳନାଗତ ଦୋଷତୃଟିକୁ ସେ ନିର୍ଭୀକ ଭାବେ ସମାଲୋଚନା କରିଥିଲେ । ଗବର୍ଣ୍ଣମେଣ୍ଟକୁ ଅକ୍ଷେପ କରିବାକୁ ସେ ପଶ୍ଚାତ୍‌ପଦ ହେଉନଥିଲେ । ''ଅଧ୍ୟାପନା କାର୍ଯ୍ୟତୁଲ୍ୟ ଗୁରୁତର ଦାୟିତ୍ୱ ଏ ସଂସାରରେ ଆଉ କଣ ଅଛି । ଆମ୍ଭମାନଙ୍କୁ ଜଣାନାହିଁ; କିନ୍ତୁ ଆମ୍ଭମାନଙ୍କର ଶସ୍ତାଖିଆ ଗବର୍ଣମେଣ୍ଟ ଏହି କର୍ଯ୍ୟଟା ସବୁଠାରୁ ଅଧିକ ଶସ୍ତା ଦରରେ କରାଉବାକୁ ବ୍ୟସ୍ତ ।'' *(୫୦)* ନର୍ମାଲ ସ୍କୁଲର ଭବିଷ୍ୟତ ମଙ୍ଗଳ ନିମନ୍ତେ ସେ ତିନୋଟି ପ୍ରସ୍ତାବ ପ୍ରଦାନ କରିଥିଲେ । ପ୍ରଥମତଃ ପରୀକ୍ଷାବିଧି ପରିବର୍ତ୍ତନ ଓ ପ୍ରବେଶିକା ପରୀକ୍ଷାର ନିୟମ ପ୍ରଚଳିତ କରିବା । ଦ୍ୱିତୀୟତଃ ଉପଯୁକ୍ତ ପୁସ୍ତକ ପ୍ରବର୍ତ୍ତନ । ତୃତୀୟତଃ ଉପଯୁକ୍ତ ଶିକ୍ଷକ ନିର୍ବାଚନ ।

ବିଶ୍ୱନାଥ କର ''ବାଲ୍ୟଶିକ୍ଷା'' ପ୍ରବନ୍ଧରେ ବାଲ୍ୟଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ଏହା ବାଧତାମୂଳକ ହେବା ଉଚିତ । ବାଲ୍ୟଶିକ୍ଷା ଗ୍ରହଣଦ୍ୱାରା ଭବିଷ୍ୟତରେ ସୁନାଗରିକ ସୃଷ୍ଟି ଓ ଦେଶର ଉନ୍ନତି ସମ୍ଭବ । *(୫୧)* ଜନୈକ ପତ୍ର ପ୍ରେରକ ବାଲ୍ୟ ଶିକ୍ଷାର ଅସାରତା ସୂଚାଇ ପତ୍ର ପ୍ରଦାନ କରିଥିଲେ । *(୫୨)* ହିତୈଷିଣୀ ୫.୭.୯୩ ସଂଖ୍ୟାରେ ବାଲ୍ୟଶିକ୍ଷା ପ୍ରତିବାଦର ଉତ୍ତର ପ୍ରଦାନ କରିଥିଲେ ବିଶ୍ୱନାଥ କର । ସେହି ସଂଖ୍ୟାରେ ତାଙ୍କର 'ଅନଧିକାର ଚର୍ଚ୍ଚା'' ପ୍ରବନ୍ଧ ପ୍ରକାଶ ପାଇଥିଲା । ଅନଧିକାର ଚର୍ଚ୍ଚା ଆଲୋଚନାରେ ପଣ୍ଡିତ ରୁଦ୍ର ନାରାୟଣ ଷଡଙ୍ଗୀଙ୍କ ''ଜରାସନ୍ଧ ବଧ'' କାବ୍ୟକୁ ନିଷ୍ଠୁର ଭାବେ ସମାଲୋଚନା

କରାଯାଇଛି । କାବ୍ୟ ପ୍ରତିଭାହୀନ ଅଥଚ ଶବ୍ଦ ପାଣ୍ଡିତ୍ୟ ବଳରେ କାବ୍ୟସୃଷ୍ଟି ଅସଂଭବ । ଶବ୍ଦଜ୍ଞାନ ଓ ପୁରାଣ ଜ୍ଞାନରୁ କବିତା ଜନ୍ମେ ନାହିଁ । ଏଣୁ ପଣ୍ଡିତଙ୍କର ଉଦ୍ୟମକୁ ଅନଧିକାର ଚର୍ଚ୍ଚା ବୋଲି ବିଶ୍ୱନାଥ ଅଭିହିତ କରିଛନ୍ତି । ଉକ୍ରଳ ପ୍ରଭାର ବିଶୃଙ୍ଖଳ କାର୍ଯ୍ୟ ପ୍ରଣାଳୀକୁ ମଧ ସାହିତ୍ୟ ରାଜ୍ୟରେ ଅନଧିକାର ଚର୍ଚ୍ଚା ବୋଲି ସେ ଇଙ୍ଗିତ କରିଛନ୍ତି । ''ଅଧିକ ଅକ୍ଷେପର ବିଷୟ ଏହି ଯେ ''ଉକ୍ରଳ ପ୍ରଭା'' ଉତ୍କଳ ସାହିତ୍ୟର ଉନ୍ନତି ପାଇଁ ଜନ୍ମ ହୋଇ ବୁଦ୍ଧି ବିବେଚନାର ବିଚିତ୍ର ଅଭିନୟ କରୁଛି । ଲୋକମାନେ କହନ୍ତି ସଂପାଦକ ପଣିଆ ବଡ ସୁବିଧାଜନକ କାର୍ଯ୍ୟ । ଏହାଠାରୁ ବଳି ଭ୍ରାନ୍ତି ଆଉ କଣ ହୋଇପାରେ ? x x x ସ୍ଥାୟୀ ସାହିତ୍ୟ ସୃଷ୍ଟି କରିବା ମାସିକ ପତ୍ରିକାର ଉଦ୍ଦେଶ୍ୟ । ଉଚ୍ଚ ଶ୍ରେଣୀର ସାହିତ୍ୟରେ ଯାହାର ପ୍ରବେଶ ଜନ୍ମି ଅଛି ତାହାର ଦ୍ୱାରା ଏ ଉଦ୍ଦେଶ୍ୟ ସୁସିଦ୍ଧ ହୋଇପାରେ । କୌଣସି ବିଷୟ ପରିଚାଳନା କରିବାକୁ ହେଲେ ପ୍ରୟୋଜନାତିରିକ୍ତ ପ୍ରଭୂତ ଶକ୍ତି ପଶ୍ଚାଦ୍ଦେଶରେ ଥିବା ଆବଶ୍ୟକ । କିନ୍ତୁ ଯେଉଁଠାରେ ପ୍ରୟୋଜନୋପଯୋଗୀ ଶକ୍ତିର ସୁଦ୍ଧା ଅଭାବ, ସେଠାରେ କାର୍ଯ୍ୟ ଶୃଂଙ୍ଖଳାର ଆଶା କଣ ? ଉକ୍ରଳ ପ୍ରଭାର କାର୍ଯ୍ୟରେ ଏ ପର୍ଯ୍ୟନ୍ତ ସେପରି କୌଣସି ପରିଚୟ ମିଳିନାହିଁ । ଏ ମଧ ଏକ ପ୍ରକାର ଅନଧିକାର ଚର୍ଚ୍ଚା ।'' ***(୫୩)*** ୧୯.୪.୯୩ ସଂଖ୍ୟାରେ ''ରାକ୍ଷସୀ ଲୀଳା'' ପ୍ରବନ୍ଧ ପ୍ରକାଶ ପାଇଥିଲା । ଏଥିରେ ବେଶ୍ୟା ରାକ୍ଷାସୀ ଓ ସୁରା ରାକ୍ଷସୀ ଯୋଗୁଁ ସମାଜ ବିପଥଗାମୀ ହେବାର ଆଶଙ୍କା ପ୍ରକାଶ ପାଇଛି । ଲେଖକଙ୍କର ଏ ମନୋବୃତ୍ତି ଆହୁରି ଉଗ୍ରରୂପ ଧାରଣ କରିଛି ''ବାଇନାଚ ଓ ଗବର୍ଣ୍ଣମେଣ୍ଟ'' (୨୭.୧୨.୧୮୯୩) ପ୍ରବନ୍ଧରେ । ବେଶ୍ୟା ନାଚକୁ ଏକ ଜାତୀୟ କଳଙ୍କ ଓ ଦୁର୍ନୀତି ରୂପେ ବିଶ୍ୱନାଥ ଅଭିହିତ କରି ସରକାର ଏହାର ଉଚ୍ଛେଦ ସାଧନ କରନ୍ତୁ ବୋଲି ଆଶା ପ୍ରକାଶ କରିଛନ୍ତି । ''ସାହିତ୍ୟ ଓ ସମାଲୋଚନା' ପ୍ରବନ୍ଧରେ ଗଠନମୂଳକ ସମାଲୋଚନାକୁ ବିଶ୍ୱନାଥ ସ୍ୱାଗତ କରିଛନ୍ତି । ତାଙ୍କ ମତରେ ''ସାହିତ୍ୟ-ସମାଲୋଚନା ସଭ୍ୟତାର ଗୋଟିଏ ପ୍ରଧାନ ଓ ଅପରିହାର୍ଯ୍ୟ ଅଙ୍ଗ । ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ସାହିତ୍ୟର ଉନ୍ନତି, ତହିଁ ସଙ୍ଗେ ସଙ୍ଗେ ସମାଲୋଚନାର ମାତ୍ରାବୃଦ୍ଧି ।'' ***(୫୪)*** ଲେଖକର ଦାୟିତ୍ୱଜ୍ଞାନ ଜନ୍ମାଇବା ସ୍ଥାୟୀ ସାହିତ୍ୟ ବିଚାର ଓ ପାଠକଙ୍କ ନିକଟରେ ସାହିତ୍ୟର ମୂଲ୍ୟ ନିରୂପଣ ହିଁ ସମାଲୋଚକର କର୍ତ୍ତବ୍ୟ ବୋଲି ବିଶ୍ୱନାଥ ବିଶ୍ୱାସ କରନ୍ତି । 'ସାହିତ୍ୟ ଚର୍ଚ୍ଚା' ପ୍ରବନ୍ଧରେ ବିଶ୍ୱନାଥ ସଦ୍ ସାହିତ୍ୟ ସୃଷ୍ଟି ପ୍ରତି ଗୁରୁତ୍ୱ ଦେଇଛନ୍ତି । ମାତୃଭାଷାର ଉନ୍ନତି ପାଇଁ ସାହିତ୍ୟିକଗଣ ଅଧ୍ୟୟନ, ଆଲୋଚନା ଓ ଚିନ୍ତାଦ୍ୱାରା ନିଜ ଜୀବନକୁ ପ୍ରସ୍ତୁତ କରନ୍ତୁ । ଲେଖାଦ୍ୱାରା ଦେଶ ଓ ଜାତିକୁ ଜାଗ୍ରତ କରନ୍ତୁ । ଏ ପ୍ରବନ୍ଧ ବିଜୁଳି, ଇନ୍ଦ୍ରଧନୁ କଳହ ସମୟରେ ରଚିତ ହୋଇଥିବାରୁ ବିଶ୍ୱନାଥ ମଙ୍ଗଳକାରୀ ସାହିତ୍ୟର ସଂଜ୍ଞା ନିରୂପଣରେ ଅଧିକ ଯତ୍ନବାନ ହୋଇଛନ୍ତି । ***(୫୫)*** ଏ ପ୍ରେକ୍ଷାପଟ୍ଟରେ ବିଶ୍ୱନାଥଙ୍କର ''କବି ଉପେନ୍ଦ୍ର ଭଞ୍ଜ (୧୩.୯.୯୩) ଗୋଟିଏ ଉତ୍ତର (୮.୧୦.୯୩) ହିତୈଷିଣୀରେ ପ୍ରକାଶ ଲଭି ପ୍ରାଚୀନ ରୁଚିର କଳଙ୍କିତ

ପ୍ରସଙ୍ଗକୁ ଉନ୍ମୋଚିତ କରିଛି । ଗୋଲକଧନ୍ଦା ପ୍ରମୁଖଙ୍କ ଅସାର ସମାଲୋଚନାକୁ ସେ ନିନ୍ଦା କରିଛନ୍ତି । ଜାତୀୟ ଜୀବନର ପରିପନ୍ଥୀ ରୂପେ ସେ ଭଞ୍ଜ ସାହିତ୍ୟକୁ ଚିତ୍ରଣ କରିଛନ୍ତି । ଉଦ୍ଦେଶ୍ୟ ପ୍ରଣୋଦିତ ପ୍ରୀତିୟା ଦଳଙ୍କ ସମାଲୋଚନା ଧାରାକୁ ସେ ନିର୍ଭୀକ ଭାବେ ଇଙ୍ଗିତ କରିଛନ୍ତି ''ଶତଶତ ସହସ୍ର ସହସ୍ର ଦୃଷ୍ଟାନ୍ତ ଥାଉଁ ଥାଉଁ ଲଜ୍ଜା, ଘୃଣା, ବୁଦ୍ଧି ବିଚାରର ମସ୍ତକରେ ପଦାଘାତ କରି ନୀଚ ଇନ୍ଦ୍ରିୟ କ୍ରୀଡ଼ାର ବୀଭତ୍ସ ଚିତ୍ରମାନଙ୍କ ପକ୍ଷ ସମର୍ଥନ କରିବା ପାଇଁ ଦଳବଳ ସାଜି ବାହାରିଅଛ ? ଦେଖୁନାହଁ କି ବିଳାସିତା ଭାରତ ସମାଜକୁ ଅନ୍ତଃସାରଶୂନ୍ୟ କରିଅଛି ? ପୁରୁଷୋଚିତ ଉଦ୍ୟମ କାହିଁ ? ଆକାଂକ୍ଷା କାହିଁ ? ବୀରତ୍ୱ କାହିଁ ? ତୁମର ସ୍ତ୍ରୀ, କନ୍ୟା, ଭଗିନୀ ମାନଙ୍କର କି ଦୁର୍ଦ୍ଦଶା ହୋଇଅଛି, ଥରେ ଚିନ୍ତା କରି ଦେଖୁଅଛ କି ? ହେ ବିଳାସୀ ପୁରୁଷଗଣ । ସେମାନଙ୍କୁ କ୍ରୀଡା ପୁତ୍ତଳିକା କରିବାର ପ୍ରଧାନ ହେତୁ ତୁମ୍ଭର ଜାତୀୟ କୁକାବ୍ୟମାନ ନୁହେଁ କି ?'' *(୪୬)*

''ଶରୀରଂ ବ୍ରହ୍ମ ମନ୍ଦିରଂ'' (୧୫.୩.୧୮୯୩) ଓ 'ବ୍ରାହ୍ମଧର୍ମର ଅଭ୍ୟୁଦ୍‌ଥାନ ଓ ଦେଶକାଳ ପାତ୍ର' (୧୬.୭.୧୮୯୫) ପ୍ରବନ୍ଧ ଦ୍ୱୟରେ ବିଶ୍ୱନାଥଙ୍କ ଜୀବନବାଦୀ ଆଧାତ୍ମିକ ବ୍ୟାଖ୍ୟା ବେଶ୍ ରୁଚିଶୀଳ । ବ୍ରାହ୍ମଧର୍ମର ମହାନତା ପ୍ରଦର୍ଶନରେ ଲେଖକ ଯତ୍ନଶୀଳ ।

ଭାଷାର ଅପବ୍ୟବହାର (୬.୯.୧୮୯୩) ରେ ଭାଷାର ଶୁଦ୍ଧ ବ୍ୟବହାର ଦ୍ୱାରା ଜାତୀୟ ଉନ୍ନତି ସମ୍ଭବ ବୋଲି ସୂଚୀତ । ଅଦ୍ଭୁତ ଆତ୍ମୋତ୍ସର୍ଗ (୧୦.୯.୧୮୯୩) ଓ ମେବାରର ଶେଷ ସ୍ୱାଧୀନ ରାଜା ବୀରବର ଅମରସିଂହ (୨୭.୯.୧୮୯୩) ରଚନାରେ ଇତିହାସର ଝଲକ ସୁସ୍ପଷ୍ଟ । ପୁରାତନ (୧୨.୬.୧୮୯୩) ପ୍ରବନ୍ଧରେ ରକ୍ଷଣଶୀଳତାକୁ ସମାଲୋଚନା କରାଯାଇଛି । ପୁରାତନ ମହତ୍ତ୍ୱ ସ୍ମରଣ କରି ଆଗେଇବାକୁ ପଡ଼ିବ ପୁରାତନକୁ ଭିଡିଧରି ପଡି ରହିଥିବା ସଭ୍ୟତାର ପରିପନ୍ଥୀ । ପୁରାତନବାଦକୁ ବିଶ୍ୱନାଥ ଝରାପତ୍ରକୁ ବୃକ୍ଷ ପୁଣି ସାଉଁଟି ଦେହରେ ଖଞ୍ଜିବା ସହିତ ତୁଳନା କରିଛନ୍ତି । ପ୍ରକୃତି କିନ୍ତୁ ଝରାପତ୍ର ନୁହେଁ ନବ ପଲ୍ଲବ ସୃଷ୍ଟିର ପକ୍ଷପାତି *(୪୭)* ଏକ ପୁରୁଷିଆ କୀର୍ତ୍ତି (୨୪.୫.୧୮୯୩) ରେ ବିଶ୍ୱନାଥ ସାଧାରଣ ସଂପତ୍ତିର ସୁବିନିଯୋଗ ପ୍ରତି ଗୁରୁତ୍ୱ ଦେଇଛନ୍ତି । ସାଧାରଣ ଦାନରେ ସର୍ବକାଳିକ କୀର୍ତ୍ତି ଗଠିତ ହେବା ଉଚିତ । ହିତୈଷିଣୀ ୭.୮.୧୮୯୩ ସଂଖ୍ୟାରେ କଟକ ଆଲୋଚନା ସଭା ନିମିତ୍ତ ଲିଖିତ ତାଙ୍କର 'ଇତିହାସ' ପ୍ରବଂଧ ପ୍ରକାଶିତ । ଏ ପ୍ରବନ୍ଧରେ ଜାତି ଧର୍ମ ବର୍ଣ୍ଣର ଉର୍ଦ୍ଧ୍ୱରେ ଏକ ମହତ୍ତର ଜୀବନ ଭୋଗ ପାଇଁ ବାର୍ତ୍ତା ଉଦ୍ଦିଷ୍ଟ । ସତ୍ୟର ଜୟ ସର୍ବକାଳରେ । ଅଯୋଗ୍ୟର ବିନାଶ ବିଧିନିର୍ଦ୍ଦିଷ୍ଟ । ଯୋଗ୍ୟତା ଅନୁସାରେ ଜାତିର ଉନ୍ନତି ଘଟିଥାଏ । ଅଯୋଗ୍ୟ ସବୁକ୍ଷେତ୍ରରେ ବଞ୍ଚିତ ହୁଏ । *(୪୮)*

ଶ୍ରୀ ଶର୍ମାଙ୍କ ହିତୈଷିଣୀ ତା ୩୧.୫.୧୮୯୩ ରେ ପ୍ରକାଶିତ 'ଜାତିଭେଦ' ପ୍ରବନ୍ଧର ପ୍ରତିବାଦ ବିଶ୍ୱନାଥ କର ରଚନା କରନ୍ତି *(୪୯)* । ଜାତିଭେଦ ଉପରେ ବାଦାନୁବାଦ

ହୋଇଥିଲା । ବିଜୁଳି-ଇନ୍ଦ୍ରଧନୁ କହଳଯୋଗୁଁ ଜାତିଭେଦ ସଂପର୍କିତ ବାଦାନୁବାଦ ଆକର୍ଷଣହୀନ ହୋଇ ପଡିଥିଲା । ବିଶ୍ୱନାଥଙ୍କର ଏକ ଦୁର୍ଲଭ 'ଭ୍ରମଣ ବୃତ୍ତାନ୍ତ' ହିତୈଷିଣୀ (୭/୨୩) ତା ୬.୧୧.୧୮୯୫ ରୁ ଧାରାବାହିକ ପ୍ରକାଶ ପାଉଥିଲା । ଏଥିରେ କଟକଠାରୁ କୋଡରା, କୋଡରାଠାରୁ ସୋନପୁର, ସୋନପୁର ଠାରୁ ଧମା, ସମ୍ବଲପୁର, ବାମଣ୍ଡା, ବାମଣ୍ଡାରୁ ଢେଙ୍କାନାଳ, ପ୍ରଭୃତି ସ୍ଥାନ ଭ୍ରମଣର ଅନୁଭୂତି ବର୍ଣ୍ଣିତ । ପ୍ରାରମ୍ଭିକ ପର୍ଯ୍ୟାୟର ଏକ ଉତ୍କୃଷ୍ଟ ଭ୍ରମଣକାହାଣୀ ରୂପେ ଏହାକୁ ଗ୍ରହଣ କରାଯାଇ ପାରେ । ଭ୍ରମଣ ବୃତ୍ତାନ୍ତରେ ଗଡଜାତ ଅଞ୍ଚଳର ସାହିତ୍ୟ, ସଂସ୍କୃତି, ସମାଜ ଜୀବନ ଓ ପ୍ରକୃତିର ଅଭିନବ ଚିତ୍ର ଏଥିରେ ପ୍ରତିଫଳିତ । *(୬୦)*

ବିଶ୍ୱନାଥଙ୍କର ଯୁକ୍ତିନିଷ୍ଠ ଆଦର୍ଶବାଦୀ ଆଭିମୁଖ୍ୟ ହିତୈଷିଣୀର ଚଲାପଥକୁ ପୁଷ୍ପିତ କରିଥିଲା । ଉତ୍କଳ ସାହିତ୍ୟର ପ୍ରକାଶ (୧୮୯୭) ସହିତ.ହିତୈଷିଣୀ ପାଠକ ବିଶ୍ୱନାଥଙ୍କର ଯାଦୁକାରୀ ପ୍ରବନ୍ଧ ପାଠରୁ ବଞ୍ଚିତ ହେଲେ । ଅନ୍ୟପକ୍ଷରେ ହିତୈଷିଣୀର ଅନୁଭୂତି ବିଶ୍ୱନାଥ ଙ୍କରଙ୍କୁ ଉତ୍କଳ ସାହିତ୍ୟର ବୃହତ୍ତର ଦିଗନ୍ତକୁ ଆଲୋକିତ କରିବାରେ ଅନୁପ୍ରେରଣା ଯୋଗାଇଥିଲା ।

## ୪ : ଫକୀର ମୋହନ ସେନାପତି :(୧୮୪୩-୧୯୧୮)

ବ୍ୟାସକବି ଫକୀର ମୋହନ ସେନାପତି ଥିଲେ ହିତୈଷିଣୀର ଅନ୍ୟତମ ଶୁଭ ଚିନ୍ତକ । ଫକୀରମୋହନଙ୍କ କୃତି ପ୍ରକାଶନରେ ହିତୈଷିଣୀ ଉର୍ଜସ୍ୱଳ । ତାଙ୍କର ଅନେକ କୃତିର ଆଲୋଚନା ପତ୍ରସ୍ଥ କରି ହିତୈଷିଣୀ ମହିମା ମଣ୍ଡିତ । ଫକୀରମୋହନଙ୍କ ସାରସ୍ୱତ ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟର ପୁରାଣାଦି ଅନୁବାଦ ଓ କବିତା ରଚନାରେ ସୀମାବଦ୍ଧ । ଦ୍ୱିତୀୟ ପର୍ଯ୍ୟାୟରେ ୧୮୯୭ 'ରେବତୀ' ପରଠାରୁ ସ୍ୱକୀୟ ମହିମାରେ ଦୀପ୍ତିମନ୍ତ । ଫକୀରମୋହନଙ୍କ ଉଭୟ ପର୍ଯ୍ୟାୟର ସୃଷ୍ଟି ମର୍ଯ୍ୟାଦାକୁ ହିତୈଷିଣୀ ନିରୀକ୍ଷଣ କରିଥିଲା ଏବଂ ଉଚିତ ମୂଲ୍ୟାୟନ ମଧ୍ୟ କରିଥିଲା ।

ଫକୀର ମୋହନଙ୍କ ଉତ୍କଳ ଭ୍ରମଣଂ ହିତୈଷିଣୀ ୧୮୯୨ର ବିଭିନ୍ନ ସଂଖ୍ୟାରେ ପ୍ରକାଶ ପାଇ ୧୬.୩.୯୨ ସଂଖ୍ୟାରେ ସମାପ୍ତ ହୋଇଥିଲା । ୪/୧୨ ତା ୨୪.୮.୯୨ ସଂଖ୍ୟାରେ ଏହାର ଦ୍ୱିତୀୟ ଭାଗ ପ୍ରକାଶ ପାଇଥିଲା । ତା ୨୩.୩.୯୩ ହିତୈଷିଣୀରେ ଉତ୍କଳ ଭ୍ରମଣଂର ସମାଲୋଚନା ପ୍ରକାଶ ପାଇଥିଲା । ହିତୈଷିଣୀ ୭.୬.୯୩ ସଂଖ୍ୟାରେ "ଫକୀରମୋହନଙ୍କ ଚତୁରତା" ଶୀର୍ଷକରେ ଯୁଗାନ୍ତକାରୀ "ଶହେପାନ ଦୁଇଶହ ଗୁଆ" ପ୍ରସଙ୍ଗ ସନ୍ନିବେଶିତ ହୋଇଥିଲା । ୫.୭.୧୮୯୩ ସଂଖ୍ୟାରେ 'ସେନାପତିଙ୍କ ଦୋଷଗୁଣ'ଶୀର୍ଷକରେ ସଂପାଦକୀୟ ଟୀପଣୀ ପ୍ରକାଶ ପାଇଥିଲା । ୬.୩.୧୯୦୧ ସଂଖ୍ୟାରେ ଫକୀର ମୋହନ ଉତ୍କଳ ମଧୁପର କ୍ରମୋନ୍ନତି ଅତ୍ୟନ୍ତ ଆନନ୍ଦ ଦାୟକ ବୋଲି ଘୋଷଣା କରିଥିଲେ । ହିତୈଷିଣୀ ୭.୧.୧୯୦୫ରେ ତାଙ୍କର "ଶ୍ମଶାନ" କବିତା ପ୍ରକାଶ ପାଉଥିଲା ।

ହିତୈଷିଣୀ କେବଳ ଯେ ନବୀନ ଲେଖକଙ୍କୁ ଉଚିତ୍ ଦିଗ୍‌ଦର୍ଶନ ଦେଉଥିଲା ତା ନୁହେଁ ପ୍ରବୀଣ ଲେଖକମାନଙ୍କର ଦୋଷ ତ୍ରୁଟୀକୁ ମଧ ପ୍ରଦର୍ଶାଉଥିଲା । ଉତ୍କଳ ପ୍ରଭାର ଦୁର୍ଦ୍ଦଶା ଶୀର୍ଷକ ସଂବାଦରେ ପ୍ରଭାରେ ପ୍ରକାଶିତ ଫକୀର ମୋହନଙ୍କ କବିତାରେ ବଙ୍ଗଳା ଶବ୍ଦର ବାହୁଲ୍ୟ ପ୍ରତି ହିତୈଷିଣୀ ଆକ୍ଷେପ କରିଥିଲା । *(୬୧)* ଫକୀର ମୋହନଙ୍କ ଅନେକ ରଚନା ହିତୈଷିଣୀରେ ପ୍ରକାଶ ପାଇଥିଲା । ଏହା ବ୍ୟତୀତ ତାଙ୍କର ଅନେକ କୃତିର ସମାଲୋଚନା ହିତୈଷିଣୀ ପୃଷ୍ଠାରେ କରାଯାଇଥିଲା । ବଙ୍ଗୀୟ କବି ନବୀନ ଚନ୍ଦ୍ର ସେନଙ୍କ 'ଅମିତାଭ' କାବ୍ୟ ସହିତ ଫକୀର ମୋହନଙ୍କ 'ବୌଦ୍ଧାବତାର' କାବ୍ୟର ସାମ୍ୟକୁ ପ୍ରଥମେ ହିତୈଷିଣୀ ପୃଷ୍ଠାରେ ଆଲୋଚନା କରାଯାଇଥିଲା । *(୬୨)* ଆଲୋଚକ ବୃନ୍ଦାବନ ନାଥ ଶର୍ମା କେବଳ 'ବୌଦ୍ଧାବତାର' ନୁହେଁ ବରଂ କବିଙ୍କର ପୂଜାଫୁଲ, ଲଚ୍ଛମା ଓ ଉପହାର ପୁସ୍ତକର ସମାଲୋଚନା କରିଥିଲେ । ହିତୈଷିଣୀ ୧୯୧୬ ସଂଖ୍ୟାରେ ଫକୀର ମୋହନଙ୍କ 'ସରସ୍ୱତୀ' ଉପାଧି ପ୍ରାପ୍ତିର ସବିଶେଷ ବିବରଣୀ ପ୍ରଦତ୍ତ । ଫକୀର ମୋହନଙ୍କ ଆତ୍ମ ଚରିତ'' ସେନାପତିଙ୍କ ଆତ୍ମ ଚରିତ'' ଶୀର୍ଷକରେ ହିତୈଷିଣୀ (୩୦/୧୨) ତା ୮.୨.୧୯୧୯ରୁ ଧାରାବାହିକ ପ୍ରକାଶ ଲଭିଥିଲା

ଫକୀର ମୋହନଙ୍କ ସହିତ ବୃନ୍ଦାବନ ନାଥଶର୍ମାଙ୍କ ସାରସ୍ୱତ ସଂପର୍କ ଅତି ନିବିଡ ଥିଲା । ଫକୀରମୋହନ ରୀତିମତ ଶର୍ମାଙ୍କ ପାଖକୁ ପତ୍ର ଦେଉଥିଲେ । ତାଙ୍କ ପତ୍ର ସମୂହ ସାରସ୍ୱତ ସଂପଦରେ ଭରପୁର । ଫକୀର ମୋହନଙ୍କ ଅଜସ୍ର ପତ୍ର ଭିତରୁ ଯେଉଁ କେତୋଟି ବୃନ୍ଦାବନ ଯତ୍ନର ସହିତ ସାଇତି ପାରିଥିଲେ ସେଥିରୁ ଅନେକ ହିତୈଷିଣୀରେ ପ୍ରକାଶ ଲଭିଥିଲା । ହିତୈଷିଣୀ (୩୩/୧) ତା ୮.୪.୧୯୨୨ ସଂଖ୍ୟାରେ ଛଅଟି, (୩୩/.୨) ତା ୨୨.୪.୧୯୨୨ ସଂଖ୍ୟାରେ ଗୋଟିଏ ଏବଂ (୩୩/୩) ତା ୬.୫.୧୯୨୨ ସଂଖ୍ୟାରେ ତିନୋଟି ଏପରି ସର୍ବମୋଟ ଦଶଟି ପତ୍ର ପ୍ରକାଶ ଲଭିଥିଲା । ଏ ପତ୍ରଗୁଡିକ ୧୯୧୨ରୁ ୧୯୧୬ ମଧରେ ଲିଖିତ । ପତ୍ରଗୁଡିକରେ ତତ୍କାଳୀନ ସମାଜଚିତ୍ର ବାମଣ୍ଡାର ଉନ୍ନତିମୂଳକ କାର୍ଯ୍ୟ ବିଭିନ୍ନ ସାହିତ୍ୟକଙ୍କ କୃତି ସଂପର୍କରେ ସୂଚନା ମିଳେ । *(୬୩)*

ଫକୀର ମୋହନ ବିଭିନ୍ନ ସମୟରେ ନବୀନ ସାହିତ୍ୟିକଙ୍କ ସୃଷ୍ଟି ଉପରେ ଯେଉଁ ମନ୍ତବ୍ୟ ଦେଉଥିଲେ ତାକୁ ଆଗ୍ରହର ସହିତ ହିତୈଷିଣୀ ପ୍ରକାଶ କରୁଥିଲା ।

## ୫: ମଧୁସୂଦନ ରାଓ :(୧୮୫୩-୧୯୧୩)

ଭକ୍ତ କବିଙ୍କର ଅତି କମ୍ ରଚନା ହିତୈଷିଣୀରେ ପ୍ରକାଶ ପାଇଥିଲେ ମଧ ଏହାଙ୍କର ସାରସ୍ୱତ କ୍ରମୋନ୍ନତିକୁ ହିତୈଷିଣୀ ଲକ୍ଷ୍ୟ କରିଥିଲା । ହିତୈଷିଣୀର ସେ ଥିଲେ ଅନ୍ୟତମ ଶୁଭେଚ୍ଛୁ । ସେ ଏକାଧିକବାର ବାମଣ୍ଡା ଆଗମନ କରିଛନ୍ତି । ତା ୨୦.୫-୧୯୧୧ରେ ବାମଣ୍ଡାରେ ପଦାର୍ପଣ କରିଥିଲେ । ସପ୍ତାହବ୍ୟାପୀ ଅବସ୍ଥାନରେ ସେ ଅନେକ ସାରସ୍ୱତ

ସମାରୋହରେ ଯୋଗ ଦେଉଥିଲେ । ଏ ପର୍ଯ୍ୟାୟରେ ''କବିତା ଓ କଳ୍ପନା'' ତଥା 'ଅଭିବ୍ୟକ୍ତିବାଦ' ଉପରେ ସେ ବକ୍ତୃତା ପ୍ରଦାନ କରିଥିଲେ । ତାଙ୍କର ଏ ରହଣୀର ସବିଶେଷ ବିବରଣୀ ହିତୈଷିଣୀ (୬.୬. ୧୯୧୧) ପ୍ରଦାନ କରେ ।

ବାମଣ୍ଡା ଅବସ୍ଥାନ ସମୟେ ସେ 'ବାମଣ୍ଡା ରାଜ ପ୍ରଶସ୍ତି' ଓ 'ହିମାଚଳେ ଉଦୟ ଉତ୍ସବ' ରଚନା କରି ହିତୈଷିଣୀ ପ୍ରେସରେ ପ୍ରକାଶ କରିଥିଲେ । ଏକ ବିରାଟ ସଭାରେ 'ବାମଣ୍ଡାରାଜ ପ୍ରଶସ୍ତି' ପାଠକରି ସଚ୍ଚିଦାନନ୍ଦଙ୍କୁ କବି ଅର୍ପଣ କରିଥିଲେ ।

ମଧୁରାଓଙ୍କ ପରଲୋକଗମନରେ ବାମଣ୍ଡା ଠାରେ ରାଜୀବ ଲୋଚନ ଦେବଙ୍କ ସଭାପତିତ୍ୱରେ ଏକ ଶୋକସଭା ୭.୧.୧୯୧୩ରେ ଅନୁଷ୍ଠିତ ହୋଇ କବିଙ୍କର ସ୍ମୃତିଚାରଣ କରାଯାଇଥିଲା । କବିଙ୍କର ଅନେକ କୃତିର ସମାଲୋଚନା ହିତୈଷିଣୀରେ ପ୍ରକାଶ ପାଇଥିଲା ।

ସୁଢ଼ଳଦେବ, ରାଧାନାଥ, ବିଶ୍ୱନାଥ କର, ଫକୀରମୋହନ ବ୍ୟତୀତ ଭକ୍ତକବି ମଧୁରାଓ, ପ୍ରାବନ୍ଧିକ ବିଜୟ ଚନ୍ଦ୍ର ମଜୁମଦାର, ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା, ମଧୁସୂଦନ ମିଶ୍ର ତର୍କ ବାଚସ୍ପତି, ପ୍ରମୁଖଙ୍କର ଆକର୍ଷଣ ଭୂମି ଥିଲା ହିତୈଷିଣୀ । ପରବର୍ତ୍ତୀ ପୀଢ଼ିର ସାରସ୍ୱତ ସେବକ ଗଣ ହିତୈଷିଣୀର ଅବଲମ୍ବନରେ ନିଜର ସାରସ୍ୱତଚର୍ଯ୍ୟାକୁ ସଜାଡ଼ି ନେଇଥିଲେ, ସମୃଦ୍ଧ କରିଥିଲେ ।

## (ଘ) ହିତୈଷିଣୀ ପୃଷ୍ଠାର ସ୍ରଷ୍ଟାଙ୍କ ସୃଷ୍ଟି ଆବେଦନ :

ଅଜସ୍ର ସ୍ରଷ୍ଟାଙ୍କ ସୃଷ୍ଟି ଅବେଦନରେ ଉର୍ଜସ୍ୱଳ ହିତୈଷିଣୀ । ତିନି ପୀଢ଼ିର ସାରସ୍ୱତ ସ୍ରଷ୍ଟାଙ୍କ ସୃଷ୍ଟିଶିଳ୍ପ ହିତୈଷିଣୀରେ ଝଙ୍କୃତ । ରାଧାନାଥ ଯୁଗଠାରୁ ସତ୍ୟବାଦୀ ଯୁଗୀୟ ସାରସ୍ୱତ ଧାରା ହିତୈଷିଣୀ ପୃଷ୍ଠ ପୀଠିକାରେ ଗଢ଼ି ଉଠିଥିଲା । ସବୁଜ ଯୁଗୀୟ ଉନ୍ମେଷ ଏବଂ ଅତ୍ୟାଧୁନିକ କାବ୍ୟଝଲକ ମଧ ହିତୈଷିଣୀରେ ପ୍ରତିଫଳିତ । ହିତୈଷିଣୀର ସ୍ରଷ୍ଟା ସମୂହଙ୍କର ସାରସ୍ୱତ ଅବଦାନର ସୂକ୍ଷ୍ମ ବିଶ୍ଳେଷଣ ମାଧମରେ ଏ ପତ୍ରିକାର ସାରସ୍ୱତ ଅବଦାନ ସ୍ପଷ୍ଟ ହେବ । ସଚ୍ଚିଦାନନ୍ଦ, ଗଙ୍ଗାଧର, ନନ୍ଦକିଶୋରଙ୍କ ଠାରୁ ଆରମ୍ଭ କରି ପଦ୍ମଚରଣ ଯାଏ ଏକ ବଳିଷ୍ଠ କାବ୍ୟ ଭିତ୍ତି ସୃଷ୍ଟିରେ ହିତୈଷିଣୀ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଜଳନ୍ଧର, ଗୋପୀନାଥ, କୃଷ୍ଣପ୍ରସାଦ, ବିଜୟ ମଜୁମଦାର, ବୃନ୍ଦାବନ ନାଥଶର୍ମାଙ୍କ ଦେଇ ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟର ଧାରା ରୁଦ୍ଧିମନ୍ତ ହୋଇଥିଲା । ଆଧୁନିକ ସାହିତ୍ୟର ସୃଷ୍ଟି ମୁହୂର୍ତ୍ତକୁ ହିତୈଷିଣୀ ମଧୁମୟ ଓ ଆକର୍ଷଣୀୟ କରି ଗଢ଼ିଥିଲା । ଓଡ଼ିଆ ସାହିତ୍ୟର ଏକ ଗୌରବାବହ ଚିତ୍ର ଅଙ୍କନରେ ହିତୈଷିଣୀ ସତତ ବ୍ରତୀ ଥିଲା ।

## ୧: ସଚ୍ଚିଦାନନ୍ଦ ଦେବ (୧୮୭୨-୧୯୧୬) :

ପିତା ବାସୁଦେବ ସୁଢ଼ଳଦେବଙ୍କ ତିରୋଧାନ (୧୯୦୩) ପରେ ସଚ୍ଚିଦାନନ୍ଦ ଦେବ ବାମଣ୍ଡାର ସିଂହାସନ ଆରୋହଣ କରନ୍ତି । ଉତ୍ତର ଦାୟାଦ ସୂତ୍ରରେ ସେ ରାଜ ସିଂହାସନ ସହିତ ସାରସ୍ୱତ ସାଧନା ମଧ ଗ୍ରହଣ କରିଥିଲେ । ହିତୈଷିଣୀର ପୃଷ୍ଠପୋଷକତା କରିଥିଲେ । ସୁଢ଼ଳଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ, ହିତୈଷିଣୀ ପତ୍ରିକାର ସାରସ୍ୱତ ପ୍ରଭାବ ମଧଦେଇ ସଚ୍ଚିଦାନନ୍ଦଙ୍କ କବି ପ୍ରତିଭା ବିକଶିତ ହୋଇଥିଲା । ବହୁସ୍ଥାନ ଭ୍ରମଣ, ବହୁଶାସ୍ତ୍ର ପଠନ, ବହୁ ମହାମନିଷୀଙ୍କ ସହିତ ଶାସ୍ତ୍ରାଲୋଚନା ମଧରେ ସଚ୍ଚିଦାନନ୍ଦ ବ୍ୟକ୍ତିତ୍ୱ ପରିମାର୍ଜିତ ଏବଂ ନିଜସ୍ୱ ନିଷ୍ଠା ଏବଂ ପ୍ରଜ୍ଞାର ମହତ୍ତ୍ୱ ଦ୍ୱାରା ସ୍ୱୀକୃତ । ତାଙ୍କର କାବ୍ୟପ୍ରାଣ ପ୍ରେମର ମହନୀୟ ପରାକାଷ୍ଠା ଉପଲବ୍ଧି କରିଛି, ଜୀବନର ଆକସ୍ମିକତାକୁ ଅନୁଭବିଛି ଏବଂ ସ୍ୱୀକାରିଛି ମହାଭାରତୀୟ ସଂସ୍କୃତିର ଚିରନ୍ତନତାକୁ । ତେଣୁ ତାଙ୍କର କବିତା ଏକ ମିଶ୍ର ଚେତନାର ସଙ୍ଗମସ୍ଥଳ ।

ଇନ୍ଦ୍ରଧନୁ-ବିଜୁଳି କଳହ ଜନିତ ଏକ ମୌଳିକ ସାରସ୍ୱତ ଧାରାର ଉତ୍ପତ୍ତି ହେଲା । ରାଧାନାଥ କାବ୍ୟଧାରା ସମାଲୋଚିତ ହେଲା ପରେ ଫକୀର ମୋହନ, ଗଙ୍ଗାଧର, ନନ୍ଦ କିଶୋରଙ୍କ ପରି ସଚ୍ଚିଦାନନ୍ଦ ମଧ ନିଜର ଏକ ସ୍ୱତନ୍ତ୍ର ରୁଚି ଆଦର୍ଶ ପ୍ରତିଷ୍ଠା କଲେ । ରାଧାନାଥୀୟ କୃତି ଅବଲମ୍ବନରେ ସଚ୍ଚିଦାନନ୍ଦ ପ୍ରାରମ୍ଭିକ ପର୍ଯ୍ୟାୟରେ କାବ୍ୟ ରଚନା କରିଥିଲେ ମଧ ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କର ସୃଷ୍ଟି ଥିଲା ରାଧାନାଥ ସାହିତ୍ୟର ନୀରବ ପ୍ରତିବାଦ । ଏ ପର୍ଯ୍ୟାୟର କୃତି ରୂପେ ବୈଦିକ ପ୍ରକୃତି (୧୯୧୦), ପ୍ରକୃତି (୧୯୧୦), ଯୌନ ନିର୍ବାଚନ (୧୯୧୨), ବୀରଗାଥା (୧୯୧୫) ପ୍ରଭୃତି କାବ୍ୟକୁ ଗ୍ରହଣ କରାଯାଇପାରେ । ରାଧାନାଥଙ୍କ ସୃଷ୍ଟି କୌଶଳ ଦ୍ୱାରା ତାଙ୍କର ମାୟାଶବରୀ (୧୮୯୪), ଅନଙ୍ଗ (୧୮୯୪), ଭୀଷ୍ମ (୧୮୯୪), ଚନ୍ଦ୍ରଦୂତ (୧୮୯୪) ଓ ଚିତ୍ର (୧୯୧୦) ପ୍ରଭୃତି ସଂକଳନ ସୁନିୟନ୍ତ୍ରିତ । ପ୍ରେମ ସ୍ତବକ ଓ ସୁନ୍ଦରୀ ଚୌତିଶା କାବ୍ୟ ପ୍ରାଚୀନ ରୀତିର ପରିଚାୟକ ।

ସଚ୍ଚିଦାନନ୍ଦଙ୍କ ରଚନା ଗୁଡିକ ହିତୈଷିଣୀ ପୃଷ୍ଠାରେ ପ୍ରକାଶିତ ଓ ବହୁଳ ଭାବେ ଆଲୋଚିତ । ୧୮୯୦ ର ହିତୈଷିଣୀ ପୃଷ୍ଠାରେ 'ଭ୍ରମଣ ବୃତ୍ତାନ୍ତ' ପ୍ରକାଶିତ । ସଚ୍ଚିଦାନନ୍ଦ ପିତାଙ୍କ ସହିତ ସମ୍ବଲପୁର, ପଦ୍ମପୁର, ରାୟପୁର,ନାଗପୁର, ନାସିକ, ବମ୍ବେ ପ୍ରଭୃତି ଭ୍ରମଣରେ ଯାଇଥିଲେ । ଏ ସମସ୍ତ ଅଞ୍ଚଳର ସବିଶେଷ ବିବରଣୀ ସେ ହିତୈଷିଣୀରେ ପ୍ରକାଶ କରିଥିଲେ । ଏ ରଚନାରୁ ସଚ୍ଚିଦାନନ୍ଦଙ୍କର ସ୍ୱାଧୀନ ଚିନ୍ତା, ନିର୍ଭୀକତା, ଓ ଦେଶ ହିତୈଷିତାର ପରିଚୟ ମିଳେ । ଭ୍ରମଣ ବୃତ୍ତାନ୍ତର ପ୍ରାରମ୍ଭରୁ ତୋଷାମଦକାରୀ କର୍ମଚାରୀଙ୍କୁ ସେ ଅକ୍ଷେପ କରିଛନ୍ତି । ସ୍ୱାବଲମ୍ବନଶୀଳ ହେବାକୁ ଆହ୍ୱାନ ଦେଇଛନ୍ତି । "ଆଜିକାଲି ସର୍ବତ୍ର ଦେଖାଯାଏ ଯେ, କୌଣସିମତେ ପାଣ୍ ଖଣ୍ଡେ କରି କାର୍ଯ୍ୟଖଣ୍ଡେ ପାଇଲାରୁ ଉପରିସ୍ଥ ମାନଙ୍କ ମନ ଯୋଗାଇବାକୁ ସମୟ ଅଣ୍ଟେ ନାହିଁ; ଦେଶହିତକର କାର୍ଯ୍ୟକୁ ପଚାରେ କିଏ ? ଏଠାରେ ଯେ ଏ ରୀତିର

ଅନ୍ୟଥା ହୋଇଅଛି ତାହା କହି ନ ପାରୁଁ; ମାତ୍ର ଆପଣାର ହିତାହିତ ଆପେ ନ ବୁଝିଲେ ଅନ୍ୟ କିଏ କେତେ ବୁଝାଇବ ? ସମ୍ବଲପୁରରେ ଅଭାବ ଅନେକ । ତାହାର ପୂରଣ ନିମିତ୍ତ ପ୍ରଚୁର ଯତ୍ନ ଓ ପରିଶ୍ରମ ଆବଶ୍ୟକ ସମସ୍ତେ ଏକାଯୋଗ ହୋଇ କାର୍ଯ୍ୟ ନ କଲେ ଅଭାବ ପୂରଣ ହେବ କିପରି ?'' *(୬୪)*

ହିତୈଷିଣୀ ୧୮୯୧ରେ ସଚ୍ଚିଦାନନ୍ଦଙ୍କ କାଶୀ ଭ୍ରମଣ ବୃତ୍ତାନ୍ତ ପ୍ରକାଶ ପାଇଥିଲା । *(୬୫)* ଏ ଭ୍ରମଣ ବୃତ୍ତାନ୍ତ ସମୂହରେ ସଚ୍ଚିଦାନନ୍ଦଙ୍କ ପ୍ରାରମ୍ଭିକ ସାରସ୍ୱତଚର୍ଯ୍ୟା ସୁରକ୍ଷିତ ।

ହିତୈଷିଣୀ ୧୬.୫.୧୮୯୪ ରେ ଅନଙ୍ଗ ୨୪.୧୦.୧୮୯୪ରେ ଚନ୍ଦ୍ରଦୂତ କାବ୍ୟ ପ୍ରକାଶ ପାଇଥିଲା । ଅନଙ୍ଗରେ ପୌରାଣିକ ମଦନ ଶିବଙ୍କର ଅଭିଶାପରେ ଭସ୍ମହେବା ଆଖ୍ୟାୟିକା ରୂପାୟିତ । ପ୍ରାଚୀନ କାହାଣୀ ଉପରେ ଅଭିନବ ପ୍ରକୃତି ବର୍ଣ୍ଣନା କାବ୍ୟଟିକୁ ରୁଚି ସଂପର୍ଣ୍ଣ କରିଛି ।

ଉଠିଲା କାନନୁ କଳ ବିହଙ୍ଗ-ସଙ୍ଗୀତ
ମଧୁ ସମାଗମେ ସର୍ବେ ହେଲେ ଉଲ୍ଲସିତ ।
ଫୁଲ୍ଲ ଫୁଲେ ଗୁଞ୍ଜରିଲା ମତ୍ତ ମଧୁକର
ବିରହୀ ମଣିଲା ତାକୁ କାମନାମାକ୍ଷର
ଭ୍ରମର-ଦଂପତି ରସି ପ୍ରଣୟ ପୁଲକେ
ମଧୁପାନ କଲେ ଏକ କୁସୁମ-ଚଷକେ
ଭରତିଆ ପ୍ରିୟା ସଙ୍ଗେ ନାଚିଲା ଗଗନେ
ମଧୁ-ଯଶ ଗାଏ ପିକ ଅତି ହୃଷ୍ଟମନେ
ସ୍ପର୍ଶ ସୁଖ ଅନୁବର୍ତ୍ତୀ ହୋଇ କୃଷ୍ଣସାର
ଶୃଙ୍ଗେ କଣ୍ଡୂୟନ କଲା ଅଙ୍ଗ ସ୍ୱ-ପ୍ରିୟାର
ଅର୍ଦ୍ଧଭୁକ୍ତ ମୃଣାଳକୁ ଚକ୍ରବାକ ଘେନି
ଚକ୍ରବାକୀ ମୁଖେ ଦେଲା ସ୍ନେହଭାବ ଘେନି ।।'' *(୬୬)*

ଏ କାବ୍ୟ ଖଣ୍ଡରୁ ଏହାର ଅନନ୍ୟତା ଅନୁଧ୍ୟାନ କରାଯାଇପାରେ । ଏହାର ବର୍ଣ୍ଣନା ଶୈଳୀ ଚିଲିକା ଓ ତପସ୍ୱିନୀର ପ୍ରକୃତି ବର୍ଣ୍ଣନାର ସମପର୍ଯ୍ୟାୟବାଚୀ ।

ସଚ୍ଚିଦାନନ୍ଦଙ୍କ ଚନ୍ଦ୍ରଦୂତ, ଦୂତକାବ୍ୟ ପରଂପରାର ଅନୁପମ ପ୍ରତିନିଧି । ବିରହ ବିଧୁର ବିଦେଶାନ୍ତର୍ଗତ ପତି ନିଜ ପ୍ରିୟପତ୍ନୀ ନିକଟକୁ ଚନ୍ଦ୍ରଦ୍ୱାରା ପ୍ରେମ ସମ୍ଭାଷଣ ପ୍ରେରଣ କରୁଛି । ସଚ୍ଚିଦାନନ୍ଦଙ୍କର ପ୍ରାରମ୍ଭିକ କାବ୍ୟ ପ୍ରଚେଷ୍ଟା ରୂପେ ଏ କାବ୍ୟରେ ଅଭିନବ ବର୍ଣ୍ଣନା କୌଶଳ, ଆଧୁନିକ ଚିତ୍ରକଳ୍ପର ସୁସମାବେଶ ସହଜଲଭ୍ୟ ।

ହିତୈଷିଣୀ (୬/୩୧) ତା ୨.୧.୧୮୯୫ ସଂଖ୍ୟାରେ ସଚ୍ଚିଦାନନ୍ଦଙ୍କ ସଂପାଦିତ 'ପାରିଜାତମାଳା' କବିତା ପୁସ୍ତକର ସମାଲୋଚନା ପ୍ରକାଶ ପାଏ । ସମଧର୍ମା ଚନ୍ଦ୍ରଧର ଦେବ,

ଦାମୋଦର ମିଶ୍ରଙ୍କ ସହିତ କବିଙ୍କର ଷଡରତୁ ବର୍ଣ୍ଣନା ଏ ପୁସ୍ତକର ଅନ୍ତର୍ଗତ । ଷଡରତୁମଧ୍ୟରୁ ସଚ୍ଚିଦାନନ୍ଦଙ୍କ ଶରତ ଓ ହେମନ୍ତ କବିତା ଏଥିରେ ପତ୍ରସ୍ଥ ।

ସଚ୍ଚିଦାନନ୍ଦଙ୍କର ଅନେକ କବିତା ହିତୈଷିଣୀରେ ପ୍ରକାଶିତ । ତାଙ୍କର ପ୍ରତିଟି କୃତି ହିତୈଷିଣୀ ପୃଷ୍ଠାରେ ଆଲୋଚିତ ଏବଂ ତାର ନିଷ୍କର୍ଷ ପାଠକ ସମ୍ମୁଖରେ ଉନ୍ମୋଚିତ । ହିତୈଷିଣୀ ତା ୪.୭.୯୪ ସଂଖ୍ୟାରେ ଅନଙ୍ଗ, ତା ୫.୧୨.୯୪ ସଂଖ୍ୟାରେ ଭୀଷ୍ମ ଓ ଚନ୍ଦ୍ରଦୂତ, ତା ୨୭.୫.୯୬ ସଂଖ୍ୟାରେ ରାସ ରହସ୍ୟ, ତା ୨.୧.୯୫ରେ ପାରିଜାତମାଳା ୨୨.୮.୧୯୦୦ ସଂଖ୍ୟାରେ କୁମାରୀ ଶିକ୍ଷା, ତା ୧୮.୯.୧୯୦୯ ଓ ୨.୧୦.୧୯୦୯ରେ ପ୍ରେମ ସ୍ତବକ, ୧୨.୧୧.୧୯୧୦ ସଂଖ୍ୟାରେ ଚିତ୍ର, ୩.୧୨.୧୯୧୦, ୧୦.୨.୧୯୧୦ ଓ ୧୯.୮.୧୯୧୧ ସଂଖ୍ୟାରେ ବୈଦିକ ପ୍ରକୃତି, ୯.୯.୧୯୧୧ ସଂଖ୍ୟାରେ ପ୍ରକୃତି ପଭୃତି କାବ୍ୟ କବିତାର ସମାଲୋଚନା କରିଛନ୍ତି । ହିତୈଷିଣୀରେ ବିଭିନ୍ନ ସମୟରେ ରାଧାନାଥ, ଫକୀର ମୋହନ, ବିଦ୍ୟାରତ୍ନ, ମଧୁସୂଦନ ମିଶ୍ର, ବ୍ରଜବଂଧୁ ମିଶ୍ର, ଭାଗିରଥି ରଥ, ରାମକୃଷ୍ଣ ସାହୁ, ଭୋଳାନାଥ ସାମନ୍ତରାୟ, ଚିନ୍ତାମଣି ମିଶ୍ର, ସୋମନାଥ ଶତପଥି, ଚିନ୍ତାମଣି ମହାନ୍ତି ପ୍ରମୁଖ ସଚ୍ଚିଦାନନ୍ଦଙ୍କ କୃତିର ସୂକ୍ଷ୍ମ ବିଶ୍ଳେଷଣ କରିଛନ୍ତି । ଏ ସମାଲୋଚନା ସମୂହକୁ ଅଧ୍ୟୟନ କଲେ ସଚ୍ଚିଦାନନ୍ଦଙ୍କ କୃତିରେ ଥିବା ମୌଳିକତା ପ୍ରତି ସମାଲୋଚକ ମାନେ ଆକୃଷ୍ଟ ହୋଇଥିବାର ଜଣାପଡେ । ତାଙ୍କର କାବ୍ୟ କବିତାର ମୂଳଭିତ୍ତିକୁ ନିମ୍ନପ୍ରକାରେ ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

୧: କାବ୍ୟ କବିତାର ଉପଜୀବ୍ୟ ରୂପେ ପ୍ରଥମ ଥର ପାଇଁ ବୈଜ୍ଞାନିକ ତଥ୍ୟ ସମୂହକୁ ଗ୍ରହଣ ।

୨. ପ୍ରକୃତି ଚିତ୍ରଣରେ ଅନାବଶ୍ୟକ କଳ୍ପନା ବିଳାସକୁ ପରିହାର କରି ବାସ୍ତବ ଓ ମୌଳିକ ଭିତ୍ତିରେ ପ୍ରକୃତି ବର୍ଣ୍ଣନା ।

୩. ଉପମା ଓ ରୂପକଙ୍କ ପ୍ରୟୋଗରେ ପ୍ରାଚୀନ ପ୍ରୟୋଗକୁ ଯଥା ସମ୍ଭବ ଅସ୍ୱୀକାର କରି ନୂତନ ବ୍ୟାପ୍ତି ପ୍ରଦାନ ।

୪. ପ୍ରାଚୀନ ଶାସ୍ତ୍ର ଓ ଆଧୁନିକ ବିଜ୍ଞାନ ଜ୍ଞାନର ସମନ୍ୱୟ ସାଧନରେ ଏକ ପରିଚ୍ଛନ୍ନ କାବ୍ୟ ବିମ୍ବ ନିର୍ମାଣ ।

ଏ ଚାରୋଟି ପ୍ରସଙ୍ଗ ପ୍ରତି ବିଶ୍ୱସ୍ଥ ରହି କବିତାର ଆଙ୍ଗିକ ଓ ଆତ୍ମିକ ସୌନ୍ଦର୍ଯ୍ୟକୁ ରୁଚି ସଂପନ୍ନ କରିଥିଲେ ସଚ୍ଚିଦାନନ୍ଦ । ଏବଂ କାବ୍ୟରେ ନିମ୍ନ ପ୍ରକାରେ ନୂତନ ଧାରା ନିର୍ମାଣରେ ବଦ୍ଧ ପରିକର ହୋଇଥିଲେ ।

୧: ବିଭିନ୍ନ ଚିତ୍ର ପ୍ରଦର୍ଶନରେ କାବ୍ୟ ପ୍ରସ୍ତୁତ

୨: ଜଡ ବସ୍ତୁକୁ ମାଧ୍ୟମ କରି କାବ୍ୟ ନିର୍ମାଣ । ଏ ପ୍ରସଙ୍ଗରେ ଜହ୍ନମାମୁଁ, ପ୍ରଧାନ ପାଟ ବସନ୍ତ ନିବାସ ପ୍ରଭୃତି କାବ୍ୟକୁ ଗ୍ରହଣ କରାଯାଇପାରେ ।

ସଚ୍ଚିଦାନନ୍ଦଙ୍କ 'ରାସରହସ୍ୟ' ଓ ''ଅଳଙ୍କାର ସାର'' ଓଡ଼ିଆ ସାହିତ୍ୟକୁ ଏକଏକ ଅଭିନବ ଭେଟି । ସୁଢ଼ଳଦେବଙ୍କ ଅଳଙ୍କାର ବୋଧୋଦୟ ପ୍ରଥମ ଓଡ଼ିଆ ଅଳଙ୍କାର ପୁସ୍ତକ । ଏହାକୁ ବଳିଷ୍ଠ କରିଛି ସଚ୍ଚିଦାନନ୍ଦଙ୍କ ଅଳଙ୍କାର ସାର । ରାସ ରହସ୍ୟ ରେ ଶ୍ରୀକୃଷ୍ଣ କାମୁକ କିନା? ପ୍ରସଙ୍ଗର ଶାସ୍ତ୍ରୀୟ ବିଶ୍ଳେଷଣ କରି ସଚ୍ଚିଦାନନ୍ଦ ନିଜର ଅପୂର୍ବ ଶାସ୍ତ୍ର ଜ୍ଞାନର ଦୃଷ୍ଟାନ୍ତ ପ୍ରଦାନ କରିଛନ୍ତି । ସେ କୃଷ୍ଣଙ୍କୁ ଇନ୍ଦ୍ରିୟଜୟୀ ରୂପେ ଶାସ୍ତ୍ରୀୟ ପ୍ରମାଣ ପ୍ରଦାନ କରିଛନ୍ତି । ସଚ୍ଚିଦାନନ୍ଦଙ୍କ ବୃଷ୍ଟି ବିଜ୍ଞାନରେ ବୃଷ୍ଟି ସଂବନ୍ଧୀୟ ପ୍ରବାଦ, ବଚନ, ପ୍ରାକୃତିକ ଲକ୍ଷଣ ସହିତ ବାୟୁ, ମେଘ, ତାପ, ବିଦ୍ୟୁତ୍, ପାଣିପାଗ ସଂପର୍କରେ ଜ୍ଞାତବ୍ୟ ବିଷୟ ସନ୍ନିବେଶିତ ହୋଇଛି ।

ସଚ୍ଚିଦାନନ୍ଦଙ୍କ କାବ୍ୟକୃତିକୁ ନିରୀକ୍ଷଣ କଲେ ରାଧାନାଥ ଯୁଗୀୟ କାବ୍ୟ ଧାରାର ଜଣେ ମୌଳିକ ସମର୍ଥ କାବ୍ୟପୁରୁଷ ରୂପେ ତାଙ୍କୁ ସମ୍ମାନିତ କରାଯାଇପାରେ । ଓଡ଼ିଆ କାବ୍ୟ ସାହିତ୍ୟରେ ବିଜ୍ଞାନ ଜ୍ଞାନକୁ ସଂଯୋଜିତ କରିବାର ପ୍ରାରମ୍ଭିକ ଉଦ୍ୟମ ତାଙ୍କ ସୃଷ୍ଟିରେ ସହଜଲଭ୍ୟ । ଭାବର ଅନୁଭୂତିରେ ସିକ୍ତ, ରସ ପରିଚର୍ଯ୍ୟାରେ ଆମୋଦିତ, ଛନ୍ଦର ମାଦକତାରେ ବିହ୍ୱଳ ସଚ୍ଚିଦାନନ୍ଦଙ୍କ କୃତିକୁ ଓଡ଼ିଆ କବିତାରେ ଏକ ନୂତନ ସଂଯୋଗ ରୂପେ ଗ୍ରହଣ କରାଯାଇପାରେ ।

## ୨: ଗଙ୍ଗାଧର ମେହେର (୧୮୬୨-୧୯୨୪) :

ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଆଦିସ୍ୱାକ୍ଷର ହିତୈଷିଣୀରେ ସୁସ୍ପଷ୍ଟ । ଓଡ଼ିଆ କବିତାର ଏ ନବ ଅଙ୍କୁରୋଦ୍‌ଗମଟି ହିତୈଷିଣୀ ପୃଷ୍ଠାରେ ଲାଳିତ ପାଳିତ ଓ ପରିବ୍ୟାପ୍ତ । ବିଦ୍ୟାରତ୍ନ ନିୟମିତ ଗଙ୍ଗାଧରଙ୍କୁ ପତ୍ରଦ୍ୱାରା ଉତ୍ସାହିତ କରୁଥିଲେ । ରାଧାନାଥ ମଧ ଗଙ୍ଗାଧରଙ୍କୁ ନିଜ କୃତି ସମୂହକୁ ହିତୈଷିଣୀରେ ପ୍ରକାଶ କରିବାକୁ ଉପଦେଶ ଦେଉଥିଲେ । ହିତୈଷିଣୀ ଗଙ୍ଗାଧରଙ୍କ ଆଦ୍ୟ ସାରସ୍ୱତ ଜୀବନର କୃତି ସମୂହକୁ ପ୍ରକାଶ କରିବାରେ ଉନ୍ମୁଖ ଥିଲା । ହିତୈଷିଣୀ ଆଶାପୋଷଣ କରିଥିଲା ''....ସେ ନିୟମିତ ରୂପେ ସାହିତ୍ୟ ଚର୍ଚ୍ଚା କଲେ ସୁଲେଖକଙ୍କ ସମାଜରେ ଉନ୍ନତ ସ୍ଥାନ ଅଧିକାର କରିପାରିବେ । ଭରସା କରୁ ଗଙ୍ଗାଧର ବାବୁ ସାହିତ୍ୟ ଚର୍ଚ୍ଚା ପ୍ରତି କଦାଚ ବୀତସ୍ପୃହ ହେବେ ନାହିଁ ।'' *(୬୭)* ଗଙ୍ଗାଧରଙ୍କ କୃତିକୁ ପାଠକ ମଧ୍ୟରେ ପରିଚିତ କରାଇବା ପାଇଁ ଏକ ସୁବର୍ଣ୍ଣ ସେତୁରୂପେ ହିତୈଷିଣୀ କାର୍ଯ୍ୟ କରିଛି । କବିଙ୍କ ଭାବ, ଚିନ୍ତା ଓ କଳ୍ପନାର ଅପୂର୍ବ ପରିଚୟକୁ ଓଡ଼ିଆ ପାଠକ ନିକଟରେ ଭେଟି ଦେଇଛି ହିତୈଷିଣୀ । ତଥ୍ୟାନୁସନ୍ଧାନରେ ବିଦ୍ୟାରତ୍ନଙ୍କ ନିରବଚ୍ଛିନ୍ନ ବ୍ୟାପକ ଅନୁସନ୍ଧିତ୍ସା ଏବଂ ସଂବେଦନଶୀଳ ଦୃଷ୍ଟିଭଙ୍ଗୀ ଗଙ୍ଗାଧରଙ୍କ ଗଭୀର-ସୂକ୍ଷ୍ମ ଧୀଶକ୍ତିକୁ ଆବିଷ୍କାର କରିଥିଲା । ଏଣୁ ଗଙ୍ଗାଧର ବିଦ୍ୟାରତ୍ନଙ୍କ ଅବଦାନକୁ ଅନାବିଳ ସ୍ୱରରେ ସ୍ୱୀକାର କରନ୍ତି-

''ଧନ୍ୟ ଧନ୍ୟ ବାସୁଦେବ ମହାପାତ୍ର ମଣି

ଧନ୍ୟ ଧନ୍ୟ କ୍ଷଣଜନ୍ମା ବୁଧ ନୀଳମଣି
ଉତ୍କଳରେ କରି ଶୁଭ ଯଜ୍ଞର ଆରମ୍ଭ
ସ୍ଥାପିଦେଲେ କାଳ ଦର୍ପ ଧ୍ୱଂସୀ ଯୂପସ୍ତମ୍ଭ
x x x x x x x x
ତୁମ୍ଭ କୀରତିର ଚାରୁ ପତାକା ସୀବନେ
ସୂତ୍ର ହେଲେ ଧନ୍ୟ ହେବି ମୁଁ ଦୀନ ଜୀବନେ ।'' *(୬୮)*

କେବଳ ବିଦ୍ୟାରତ୍ନ ନୁହଁନ୍ତି ହିତୈଷିଣୀର ପରବର୍ତ୍ତୀ ସଂପାଦକ ଦୀନବନ୍ଧୁ ଗଡନାୟକ ମଧ୍ୟ ଗଙ୍ଗାଧରଙ୍କୁ ବାରଂବାର ପତ୍ରଦେଇ ସୃଜନ କର୍ମ ପାଇଁ ଉତ୍ସାହିତ କରୁଥିଲେ । ତାଙ୍କରି ଉତ୍ସାହରେ ଗଙ୍ଗାଧରଙ୍କ କବିତା କଲ୍ଲୋଳର ପ୍ରାୟ ସମସ୍ତ କବିତା ହିତୈଷିଣୀରେ ପ୍ରକାଶ ଲଭିଥିଲା । *(୬୯)*

ହିତୈଷିଣୀ ତା ୪.୪.୧୮୯୪ ସଂଖ୍ୟାରେ ଗଙ୍ଗାଧରଙ୍କ ''କୁମାର ଜନ୍ମୋତ୍ସବ'' କବିତା ପ୍ରକାଶିତ । ଏହା ବରପାଲି ଅଧିଶ୍ୱରଙ୍କ ପୌତ୍ର ଜନ୍ମ ଉପଲକ୍ଷେ ଏକ ଆନନ୍ଦ ଗୀତିକା । ସବଂଲପୁର ଓଡ଼ିଆ ଭାଷା ଉଚ୍ଛେଦ ହେବାର ରାଜକୀୟ ଆଦେଶ ବିରୁଦ୍ଧରେ କବିଙ୍କ କାବ୍ୟିକ ପ୍ରତିକ୍ରିୟା, 'ଭାରତୀ ରୋଦନ', 'ଉତ୍କଳ ଭାରତୀଙ୍କ ନିବେଦନ' ଶୀର୍ଷକରେ ପ୍ରକାଶିତ । ଏ କବିତା ଦୁଇଟି ଜନମତ ସୃଷ୍ଟି ଓ ସାଧାରଣ ସଂବେଦନା ଆକର୍ଷଣରେ ସଫଳ ହୋଇଥିଲା ।

''ଉତ୍କଳ ଭାରତୀ ରୋଦନ କରୁଛି
କାତରେ ସମ୍ବଲପୁରେ
ସେ ବିକଳ ଧ୍ୱନି କର୍ଣ୍ଣରେ ପଡିଲେ
ନୟନେ ଲୋତକ ପୁରେ ।
ବୋଲଇ ଦୁଃଖିନୀ କେତେ କେତେ କଷ୍ଟ
ସହି ମୋ କୋଳରେ ଧରି
କୁମାରଙ୍କୁ ମୋର ପାଳନ କରୁଛି
ପ୍ରାଣାଧିକ ସ୍ନେହ କରି ।
x x x x x x x x x
ହିନ୍ଦି ସରସ୍ୱତୀ ମୋ ଛାତିରେ ବସି
କରିବ ପରା ରାଜତ୍ୱ
ମୋ ଆଶା କାନନ ଭସ୍ମରାଶିହେବ
ତା ନବ ଉଦ୍ୟାନେ ଖତ ।
ଉପମାତା ଆସି ଗର୍ଭ ଧାରିଣୀର

ମସ୍ତକେ ଚରଣ ଦେବ,
ଏ ଦଶା ଦେଖିଲେ  କେଉଁ ସନ୍ତାନର
ମନରେ ଦୁଃଖ ନ ହେବ ।'' *(୭୦)*

ଏ ଶୋକାର୍ତ୍ତ ସ୍ୱର ଆହୁରି ରସଘନ ହୋଇଛି 'ଉତ୍କଳ ଭାରତୀଙ୍କ ନିବେଦନ' କବିତାରେ । ଏ କବିତାରେ ଉଡ୍ଡବର୍ଣ୍ଣଙ୍କୁ ଦୁଃଖମୋଚନ ପାଇଁ ନିବେଦନ କରାଯାଇଛି ।

''ଜୟ ଜୟ ଉଡ୍‌ବରନ ଦୟାମୟ ହୃଦୟ
ନ୍ୟାୟ କଳାକାର ସ୍ୱରୂପେ ହୋଇଅଛ ଉଦୟ
ଭାଷା କୁମୁଦିନୀ ବିକଶି ତୁମ୍ଭ କରୁଣାକରେ
ଚୌଦିଗେ ସୁଲେଖା ସୌରଭ ରାଶି ପ୍ରକଟ କରେ
x x x x  x x x x
ନିର୍ବାସନ ହେବା ପାଇଁ କି ଅଛି ଜନନୀ ଭାଲେ-
ମାତୃହୀନ ଦଶା ଘଟିବା ଅଛି ଥୟ କପାଳେ
ଭବିତବ୍ୟ ଯାହା ତା ଘଟୁ ବିଧି ଆୟର ସିନା
ବୋଲି କାପୁରୁଷ ନ ହୁଅ ମୂଳୁ ଉଦଯୋଗ ବିନା ।'' *(୭୧)*

ହିତୈଷିଣୀ ୯.୧୨.୧୮୯୬ ରେ ଶଶିଭୂଷଣଙ୍କ 'ଦାକ୍ଷିଣାତ୍ୟ ଭ୍ରମଣ' ପୁସ୍ତକର ଏକ ମନୋଜ୍ଞ ସମାଲୋଚନା କରିଥିଲେ ଗଙ୍ଗାଧର । ୧୭.୩.୧୮୯୭ ସଂଖ୍ୟାରେ 'ବ ଭେଦ' ପ୍ରକାଶିତ । ହିତୈଷିଣୀରେ ବଳଭଦ୍ର ଦେବ 'ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ' ପାଦ ପୂରଣ ପାଇଁ ଦେଇଥିଲେ । ଏ ଶୀର୍ଷକରେ ଗଙ୍ଗାଧରଙ୍କ ରଚନା ବେଶ ସୁଲଳିତ । ଏ ପଦ୍ୟଟି ଗଙ୍ଗାଧରଙ୍କ କୌଣସି ଗ୍ରନ୍ଥାବଳୀରେ ବୋଧେ ସଙ୍କଳିତ ହୋଇନାହିଁ ।

''ଲାଗି ପ୍ରଭାକର କର  ଚନ୍ଦ୍ର ହୋଇଛି ଭାସ୍ୱର
ନତୁ ଚନ୍ଦ୍ର ଜଡ ପିଣ୍ଡ ସ୍ୱତେଜ ହୀନ
ଗଭୀର ଗହ୍ୱର ଯହିଁ  ରବି ରଶ୍ମି ନ ପଡ଼ଇ
ଅନ୍ଧାର ଯୋଗୁଁ ତା ଦିଶୁଅଛି ମଳିନ
ବସିନାହିଁ ତାହା ଶଶକ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।
ଚନ୍ଦ୍ର ବିଶ୍ୱ ମନୋହର  ସଭାବେ ଅମୃତକର
ପ୍ରିୟ ଦରଶନ ଅପଘନ ନିର୍ମଳ
ମଧ୍ୟେ ଯେ କୃଷ୍ଣ ବରନ  କରୁଛ ଅବଲୋକନ
ତାହା ବକ୍ଷ ଦେଶ କେଶ ରାଶି କେବଳ

ହୋଇଅଛି ଶୋଭା ବ୍ୟଞ୍ଜକ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।'' (୭୨)

ଗଙ୍ଗାଧରଙ୍କ ଅନେକ କବିତା ହିତୈଷିଣୀ ରେ ପ୍ରକାଶିତ । ୫.୩.୧୯୧୦ ରେ ଚନ୍ଦ୍ର ରଜନୀ, ୩୦.୭.୧୦୮ରେ ପ୍ରଣୟାଙ୍କୁର, ୨୯.୧୦.୧୦ରେ ସୋମନାଥ ବିଜୟ, ୧୯-୧୧.୧୦ରେ ପ୍ରଧାନ ପାଟ ୩.୧୨.୧୦ରେ ବେଦବ୍ୟାସ, ୧୦.୧୨.୧୦ରେ ବୁଢ଼ାରଜା, ବାଳ ପାଦପ, ୨.୧୧.୧୨ରେ ହିତୈଷିଣୀ ୮.୫.୧୫ରେ ଖଦ୍ୟୋତର ଖେଦ, ୩.୭.୧୫ରେ ପ୍ରେତର ଅନୁତାପ, ୩୧.୭.୧୫ରେ ବର୍ଷାଋତୁ ପ୍ରତି ୧୦.୯.୧୭ରେ ନବବର୍ଷରେ ହିତୈଷିଣୀ ଆବାହନ ୯.୧.୧୯୨୩ରେ ନବବର୍ଷର ପ୍ରାର୍ଥନା ପ୍ରଭୃତି କାବ୍ୟ କବିତା ପ୍ରକାଶିତ । ଏ ସମସ୍ତ କୃତିରେ ଗଙ୍ଗାଧରଙ୍କ କବି ପ୍ରତିଭା ପ୍ରତିଫଳିତ । ତାଙ୍କର କେତେକ କବିତା ପୁସ୍ତକର ସମାଲୋଚନା ମଧ ହିତୈଷିଣୀରେ ପ୍ରକାଶିତ । ସମକାଳୀନ ଅନେକ ସାହିତ୍ୟ ରଥି ଗଙ୍ଗାଧରଙ୍କ ପ୍ରତିଭାକୁ ସ୍ୱାଗତ ଜଣାଇଛନ୍ତି ।

ରାଧାନାଥ ପୂର୍ଣ୍ଣାଙ୍ଗ ଭାବେ ପାଶ୍ଚାତ୍ୟ ସାହିତ୍ୟର ଶିଳ୍ପ ବିଭବରେ ଆତ୍ମହରା କିନ୍ତୁ ଗଙ୍ଗାଧର ଥିଲେ ପ୍ରାଚ୍ୟ ସାହିତ୍ୟ ସମନ୍ୱୟର ଅପୂର୍ବ ବାର୍ତ୍ତାବହ । ହିତୈଷିଣୀ ମାଧ୍ୟମରେ ଗଙ୍ଗାଧର ସାହିତ୍ୟ ପରିବ୍ୟାପ୍ତ ହୋଇଥିଲା । ଇନ୍ଦ୍ରଧନୁ-ବିଜୁଳି ମସୀଯୁଦ୍ଧର ପରିଣତି ରୂପେ ଏକ ମୌଳିକ କାବ୍ୟାଭିମୁଖ୍ୟର ପ୍ରଧାନ ସାରଥୀ ଥିଲେ ଗଙ୍ଗାଧର । ଏ ପ୍ରସଙ୍ଗରେ ଡଃ ନଟବର ସାମନ୍ତରାୟଙ୍କ ଉଦ୍‌ଘୋଷଣା ପ୍ରଣିଧାନଯୋଗ୍ୟ-''ଇନ୍ଦ୍ରଧନୁ-ବିଜୁଳି ବିବାଦ ପରେ ଏ ଦେଶର ବିଷୟ ବସ୍ତୁ ଭିତରେ ନୀତି ଆଦର୍ଶ ଓ ସାମାଜିକ ମୂଲ୍ୟବୋଧ ମାନଦଣ୍ଡରେ ପାଶ୍ଚାତ୍ୟ ସୃଷ୍ଟି ଆଦର୍ଶର ରୂପାୟନ କରିବା ଯେଉଁ ସାହିତ୍ୟର ଆଭିମୁଖ୍ୟ ଥିଲା, ମେହେର ସାହିତ୍ୟ ସେଇ ଆଭିମୁଖ୍ୟର ଥିଲା ପ୍ରଥମ ସାର୍ଥକ ପ୍ରତିନିଧି-ମେହେର ସାହିତ୍ୟର ଏ ଐତିହାସିକ ବିକାଶ-ବିଭବ ପ୍ରତ୍ୟେକ ଇତିହାସ ଛାତ୍ର ପକ୍ଷରେ ଏକାନ୍ତ ସ୍ମରଣୀୟ ।'' (୭୩)

## ୩: ନନ୍ଦ କିଶୋର ବଳ (୧୮୭୫-୧୯୨୮) :

ସରଳ ଭାଷାଶିଳ୍ପ ସହିତ ପଲ୍ଲୀ କୋଣର ସୁମଧୁର ଚିତ୍ରକୁ କାବ୍ୟରୂପ ଦେବାରେ ନନ୍ଦକିଶୋରଙ୍କ ବିଚକ୍ଷଣତା ସର୍ବସ୍ୱୀକୃତ । ଲୋକ କଳ୍ପନା ଓ ଲୋକ ଚେତନାକୁ ଲୋକ ଭାଷାରେ ବ୍ୟଞ୍ଜିତ କରିବା ଥିଲା ନନ୍ଦ କିଶୋରଙ୍କ ମୌଳିକତା । ଫକୀର ମୋହନ ଓ ଗୋପାଳ ପ୍ରହରାଜ ଗଦ୍ୟ ଶବ୍ଦରେ ଯେଉଁ କୌଶଳ ଖଞ୍ଜିଲେ ତାକୁ କାବ୍ୟ କଳାରେ ଦୀପ୍ତିମାନ କଲେ ନନ୍ଦକିଶୋର । ଓଡ଼ିଆତ୍ୱର ମୌଳିକ ଅଙ୍ଗୀକାରକୁ ସେ ଦେଶଜ ଶବ୍ଦ ବିଭବରେ ପରିସ୍ଫୁଟ କଲେ । ଲୋକ ଭାଷାର କାବ୍ୟିକ ଅବଚେତନକୁ ଗଣମୁଖୀ ଆବେଦନରେ ଉନ୍ମୋଚନ କଲେ । ଅଙ୍କୁରି ଉଠିଲା

ଏକ ସଜଳ କାବ୍ୟ ବିଭା ଯାହା ସୁପ୍ତ ଥିଲା ଅଜସ୍ର ଓଡ଼ିଆତ୍ୱର ଅବଚେତନରେ । ଏ ଅଙ୍କୁରୋଦ୍ଗମର ପବିତ୍ର ମୁହୂର୍ତ୍ତକୁ ଓଡ଼ିଆ ପାଠକଙ୍କୁ ଭେଟିଦେଲା ହିତୈଷିଣୀ ।

"ଉତ୍କଳ ପଲ୍ଲୀଚିତ୍ର" ଥିଲା ହିତୈଷିଣୀରେ କବିଙ୍କର ପ୍ରଥମ ସ୍ୱାକ୍ଷର । ଏହା ପରବର୍ତ୍ତୀ ପର୍ଯ୍ୟାୟରେ "ପଲ୍ଲୀଚିତ୍ର" ରୂପେ ପୁସ୍ତକାକାରେ ପ୍ରକାଶିତ ହୋଇଥିଲା । ହିତୈଷିଣୀର ୯.୨.୧୮୯୮ ସଂଖ୍ୟାରେ 'ସାଇମଧେ', ୬.୩.୧୮୯୮ରେ 'ଗ୍ରାମଚାଟଶାଳୀ ଓ ଗ୍ରାମଖଳା', ୨୩.୩.୧୮୯୮ରେ 'ଗ୍ରାମତୋଟା' ଓ 'ଗ୍ରାମଶ୍ମଶାନ' ପ୍ରକାଶିତ । ହିତୈଷିଣୀ ୮.୬.୧୮୯୮ ସଂଖ୍ୟାରୁ କ୍ରମଶାଃକାରେ "ରାଜପୁତ ବାଳିକା କୃଷ୍ଣକୁମାରୀ" ପ୍ରକାଶିତ । ୨୫.୧୨.୧୮୯୫ ସଂଖ୍ୟାରେ କର୍ମ ପ୍ରବନ୍ଧ ୧୮.୫.୯୮ରେ ଏକତା, ୨୬.୫.୯୮ରେ 'ସପତ୍ନୀ' ଓ 'ପ୍ରଭାତଚିତ୍ର', ୨୮.୩.୧୯୦୦ରେ ଶ୍ରୀରାମ ବିଳାପ, ୪.୪.୧୯୦୦ରେ ପ୍ରବାସୀର ପତ୍ର ଓ ନିନ୍ଦୁକ ପ୍ରତି କବିର ନିବେଦନ, ୧୮.୪.୧୯୦୦ ରେ କାହିଁଗଲା ୯.୧୦.୧୯୦୧ରେ ଶ୍ରୀକ୍ଷେତ୍ର ପ୍ରକାଶିତ । ଏତଦ୍ ବ୍ୟତୀତ ତାଙ୍କର ଅନେକ କାବ୍ୟ କବିତା ହିତୈଷିଣୀରେ ପ୍ରକାଶିତ ।

ଉତ୍କଳସାହିତ୍ୟ ଓ ମୁକୁର ପ୍ରକାଶ ପରେ ନନ୍ଦ କିଶୋରଙ୍କ ଅନେକ ରଚନା ସେଥିରେ ପ୍ରକାଶ ଲଭେ । ହିତୈଷିଣୀ ୫.୬.୧୯୦୧ ସଂଖ୍ୟାରେ ନିର୍ଝରିଣୀର ସମାଲୋଚନା ପ୍ରକାଶ ପାଏ । ଏଥିରେ ନନ୍ଦକିଶୋରଙ୍କ କାବ୍ୟାଭିମୁଖ୍ୟକୁ ହିତୈଷିଣୀ ସ୍ୱାଗତ କରେ । ହିତୈଷିଣୀ ୨୦.୬.୧୯୦୦ରେ ପଲ୍ଲୀଚିତ୍ରର କାବ୍ୟ ବିଶ୍ଳେଷଣ କରି ଉଚ୍ଚମତ ପୋଷଣ କରିଛି । ଏ କବିତା ରାଧାନାଥ ତଥା ଅନ୍ୟାନ୍ୟ କାବ୍ୟ ରସିକଙ୍କ ଦୃଷ୍ଟି ଆକର୍ଷଣ ସହିତ କବିଙ୍କର ଶକ୍ତିମତ୍ତା ଓ ଚିନ୍ତାଶୀଳତାର ଦୃଷ୍ଟାନ୍ତ ବହନ କରେ । ହିତୈଷିଣୀ ମତରେ "ବାସ୍ତବରେ କବି ସରଳ, ସୁମଧୁର ଭାଷାରେ ପଲ୍ଲୀ ଗ୍ରାମର ଯେ ସକଳ ଦୃଶ୍ୟର ବର୍ଣ୍ଣନା କରି ଅଛନ୍ତି, ତାହା ଏପରି ମନୋହର ହୋଇଅଛି ଯେ ସହୃଦୟ ସାହିତ୍ୟ ରସିକ ମାନେ ତାଙ୍କର ଶକ୍ତିମତ୍ତାର ସୁଖ୍ୟାତି ନ କରି ରହି ପାରିବେ ନାହିଁ ।" *(୭୪)*

ହିତୈଷିଣୀ (୧୮୯୫) ର ଅନେକ ସଂଖ୍ୟାରେ ସଂବଲପୁର ଭାଷା ସଂକଟ ଆଳରେ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳକୁ ଏକତ୍ରୀକରଣ କିରବାର ଆହ୍ୱାନ ଦିଆଯାଉଥିଲା । ହିତୈଷିଣୀର ଗୁଣମୁଗ୍ଧ କବି ନନ୍ଦ କିଶୋର ଏ ଦାବୀ କାବ୍ୟ କଳାରେ ଗୁହାରୀ ରୂପେ ନେଇଛନ୍ତି । "ନବୀନ ସମ୍ରାଟଙ୍କ ନିକଟରେ ଉତ୍କଳ ମାତାର ଗୁହାରୀ"ଶୀର୍ଷକ କବିତା ଏ ପ୍ରସଙ୍ଗରେ ଉଲ୍ଲେଖ ଯୋଗ୍ୟ-

"କୋଟି ସୁତା ମାତା ହୋଇ ମୁଁ ସମ୍ରାଟ<br>
ଅର୍ଦ୍ଧ କୋଟି ସୁତ ଅଛି ହରାଇ<br>
ଗଞ୍ଜାମ ସମ୍ବଲ-ପୁର କାଢ଼ି ନେଲେ<br>
ମାନ୍ଦ୍ରାଜ, ମଧ୍ୟ ଭୂ, ବଙ୍ଗ ଛଡାଉ ।

ଅଙ୍ଗ ହୀନ ହୋଇ ପଡିଅଛି ମୁହିଁ
ନିତାନ୍ତ ଦୁର୍ବଳ ଦରିଦ୍ର ହୀନ
ଏକତା ଅଭାବେ ମୋର ସୁତଗଣ
ଫେରାଇ ନାହାନ୍ତି ପୂର୍ବ ସୁଦିନ
x x x x x x x x
ସମଗ୍ର ଉତ୍କଳ ଭାଷୀ ଦେଶ ଖଣ୍ଡେ
ଏକୀଭୂତ କରି କର ସବଳ
ଏକ ସମ୍ରାଟଙ୍କ ତଳେ ଥାଇ ଶୁଭ
ମନାସନ୍ତୁ ମୋର ସୁତ ସକଳ'' *(୭୫)*

ପ୍ରାଚୀନ ଓଡ଼ିଆ ଛନ୍ଦକୁ ନବନିର୍ମାଣ କରି ଲୋକ ଗୀତର ଗଠନ ମୂଳକ ଶୈଳୀରେ ଏକ ସମର୍ଥ ଗୀତି ମୁଖର ପ୍ରାଣବାନ ଛନ୍ଦ ନିର୍ମାଣରେ ନନ୍ଦକିଶୋର ସିଦ୍ଧିହସ୍ତ । ତାଙ୍କର ଛନ୍ଦ ବିଶେଷତଃ ଗତିଶୀଳ, ସରଳ ତରଳ ଗ୍ରାମ୍ୟ ବାଳିକା ପରି । କୌଣସି ବାଧା ନାହିଁ ବନ୍ଧନ ନାହିଁ ପାହାଡ଼ି ଝରଣା ପରି । ଯାହାର ଉଦ୍ଦେଶ୍ୟ ଅଗ୍ରଗମନ । ସମସ୍ତ ବାଧା ବିପତ୍ତିକୁ ଗର୍ଭସ୍ଥ କରି ପରମ ପୁରୁଷର ସଙ୍ଗମ ପାଇଁ ଉନ୍ମୁଖ ତଟିନୀଟିଏ ପରି ନନ୍ଦକିଶୋରଙ୍କ କାବ୍ୟଧାରା ଶାଶ୍ୱତ ପବିତ୍ର । ଅତି ପରିଚିତ ଗ୍ରାମ୍ୟଦୃଶ୍ୟକୁ କାବ୍ୟକଳାରେ ମଣ୍ଡନ କରିବାର ଏ ଅଭିନବ କୌଶଳ ସର୍ବଜନୀନ ସ୍ୱୀକୃତି ଲଭିଲା ନନ୍ଦକିଶୋରଙ୍କ ଲେଖନୀରେ । ରାଜାଝିଅର ବାହୁନା, ଡାଆଣିଆ ଖରା, ରଜଦୋଳି ଗୀତ, ବା ଡାମରା କାଉକୁ ଡାକିବାର ଐଶ୍ୱର୍ଯ୍ୟମୟ ପରଂପରାକୁ ସ୍ମରଣ କରାଇଦେଲେ ତାଙ୍କର କବିତା । ସିନ୍ଦୁର ଫରୁଆ ଭିତରେ ବନ୍ଦୀ ଓଡ଼ିଆତ୍ୱର ଅତିପ୍ରିୟ ଭଅଁରଟିକୁ ସେ ଶାପମୁକ୍ତ କଲେ । କବିତାକୁ ଆଣିଦେଲେ ଏକ ବଳିଷ୍ଠ ପ୍ରତୀଭୂ ।

## ୪: ଦାମୋଦର ମିଶ୍ର (୧୮୭୧- —)

ସାଂସ୍କୃତିକ ରେନ୍‌ସାଁର ପ୍ରାରମ୍ଭିକ ସମୟରେ ରାଧା-ମଧୁ-ଫକୀର-ସାରସ୍ୱତ ତ୍ରୟୀଙ୍କ କାବ୍ୟ ବିଭବ ସହିତ ଐକତାଳିକ ନ୍ୟାୟରେ ଯେଉଁମାନେ ପାଦ ମିଳାଇ ଏକ ନବ ଜାଗୃତିର ସାହିତ୍ୟକୁ ଋଦ୍ଧିମନ୍ତ କଲେ ସେମାନଙ୍କ ମଧ୍ୟରେ ଏକ ବଳିଷ୍ଠ ତଥା ସ୍ୱଜ୍ଞଜାତ କବି ପ୍ରତିଭା ଦାମୋଦର ମିଶ୍ର ।

ଯୁଗପୁରୁଷ ନୀଳମଣି ବିଦ୍ୟାରତ୍ନଙ୍କ ଅନୁଜ ଦାମୋଦର ମିଶ୍ରଙ୍କ ଜନ୍ମ ବାଙ୍କୀର ବୈଦ୍ୟେଶ୍ୱର ନିକଟସ୍ଥ ବ୍ରଜବିହାରୀପୁର ଶାସନ ଗ୍ରାମରେ ୧୮୭୧ରେ ହୁଏ । ଅଗ୍ରଜ ବିଦ୍ୟାରତ୍ନଙ୍କ ସହିତ ୧୮୮୬ରେ ସେ ବାମଣ୍ଡା ଆଗମନ କରନ୍ତି । ବାମଣ୍ଡା ରହଣୀ ହିଁ ତାଙ୍କର କାବ୍ୟ ଜୀବନକୁ ପରିବର୍ଦ୍ଧିତ ଓ ପ୍ରତିଷ୍ଠିତ କରିଥିଲା । ବାମଣ୍ଡାର ସାରସ୍ୱତ ପରଂପରା ତାଙ୍କର

କାବ୍ୟ ପ୍ରାଣକୁ ଉଦ୍‌ବୋଧିତ କରିଥିଲା । ହିତୈଷିଣୀ ପୃଷ୍ଠାରେ ଏ ନୀରବ କବି ନିଜର କାବ୍ୟିକ ଭିତ୍ତିକୁ ସୁଦୃଢ଼ କରି ପାରିଥିଲେ । ବିଦ୍ୟାରତ୍ନଙ୍କ ଅନୁପସ୍ଥିତିରେ ଦାମୋଦର ମିଶ୍ର ସାମୟିକ ହିତୈଷିଣୀର ସଂପାଦନା ଗ୍ରହଣ କରୁଥିଲେ । *(୭୬)* ହିତୈଷିଣୀର ଅନ୍ୟତମ ବିଶିଷ୍ଟ ଲେଖକ ଥିଲେ ଦାମୋଦର ମିଶ୍ର । ହିତୈଷିଣୀର ପ୍ରାୟ ପ୍ରତିଟି ସଂଖ୍ୟା ଦାମୋଦରଙ୍କ ରଚନାରେ ଝଙ୍କୃତ ।

୧୮୯୩ରେ ସଂଘଟିତ ''ଇନ୍ଦ୍ରଧନୁ-ବିଜୁଳି''କଳହରେ ଦାମୋଦର ମିଶ୍ରଙ୍କ ଯୋଗଦାନ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସେ ବିଜୁଳି ପରିଚାଳନାରେ ପ୍ରମୁଖ ଭୂମିକା ଗ୍ରହଣ କରନ୍ତି । ଆଧୁନିକ ସାହିତ୍ୟର ପକ୍ଷ ସମର୍ଥନ କରି ତାଙ୍କର ଅନେକ ଲେଖା ପ୍ରକାଶିତ ହୁଏ । ବିଜୁଳିର ମେନେଜର ରୂପେ ଭଞ୍ଜୀୟ କାବ୍ୟଦୋଷ ସମୂହକୁ ଏକତ୍ରୀତ କରି 'ଦୋଷ ଦର୍ଶନ' ପୁସ୍ତକ ପ୍ରଣୟନ କରିଥିଲେ *(୭୭)* ଅଠ ତିରିଶ ପୃଷ୍ଠା ସମ୍ବଳିତ ଏ କ୍ଷୁଦ୍ର ପୁସ୍ତିକା ଭଞ୍ଜ ସାହିତ୍ୟ-ଆଲୋଚନାର ପ୍ରଥମ ପ୍ରକାଶିତ ପୁସ୍ତକ ମନେହୁଏ । ଏ ପୁସ୍ତକ ପ୍ରଣୟନର ଉଦ୍ଦେଶ୍ୟ ସଂପର୍କରେ ଦାମୋଦର ମିଶ୍ର ପ୍ରକାଶ କରନ୍ତି-''ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୀତ କାବ୍ୟ ନିଚୟ ବିବିଧ ଦୋଷାଶ୍ରିତ ଥିବାରୁ ତହିଁର ବ୍ୟବହାର ବିଷୟରେ ବିଶେଷ ସତର୍କତା ଅବଲମ୍ବନ କରିବା ଏବଂ ତଦନୁକରଣରେ କବିତା ନ କରିବା ବିଜ୍ଞ ପାଠକ ମାନେ ଏହି (ଦୋଷ ଦର୍ଶନ) ରୀତିରେ ଭଞ୍ଜୀୟ କାବ୍ୟ ସମାଲୋଚନା କଲେ ତହିଁର ପ୍ରକୃତ ପରିଚୟ ପାଇପାରିବେ ।'' *(୭୮)* ଏ ପୁସ୍ତକରେ ଭଞ୍ଜ କାବ୍ୟର ଅସଙ୍ଗତ ବର୍ଣ୍ଣନା, ଅସମର୍ଥ କଥନ, କୁତ୍ସିତ ବର୍ଣ୍ଣନା, ଅଶ୍ଳୀଳ ବର୍ଣ୍ଣନା, ନିକୃଷ୍ଟ ବର୍ଣ୍ଣନା, ନ୍ୟୁନ ପଦତା ଦୋଷ ପ୍ରଭୃତିର ବୈଜ୍ଞାନିକ ଅନୁଶୀଳନ କରାଯାଇଛି । ଦୋଷ ଦର୍ଶନ ପ୍ରକାଶର ପାଞ୍ଚ ବର୍ଷପରେ ପଣ୍ଡିତ ବୁଦ୍ଧିନାଥ ଶର୍ମା ୧୯୦୦ମ: ରେ ମୟୂରଭଞ୍ଜ ଷ୍ଟେଟ ପ୍ରେସରୁ 'ଗୁଣାଦର୍ଶ' ପୁସ୍ତକ ପ୍ରଣୟନ କରିଥିଲେ । ଦୋଷ ଦର୍ଶନ ପ୍ରଦର୍ଶିତ ଦୋଷ ସମୂହକୁ ଗୁଣାଦର୍ଶ ରୂପେ ପ୍ରତିପାଦିତ କରିବା ଏ ପୁସ୍ତକର ଲକ୍ଷ୍ୟ । ହିତୈଷିଣୀ ପତ୍ରିକାର ତା ୩୦-୧.୧୯୦୧ରୁ ୨୦-୨-୧୯୦୧ ସଂଖ୍ୟା ମଧରେ ଦାମୋଦର ମିଶ୍ର 'ଗୁଣାଦର୍ଶର ସମାଲୋଚନା' ପ୍ରକାଶ କରିଥିଲେ । ସମାଲୋଚନାରେ ଗୁଣାଦର୍ଶର ବକ୍ତବ୍ୟକୁ ବଳିଷ୍ଠ ଯୁକ୍ତିଦ୍ୱାରା ଦାମୋଦର ମିଶ୍ର ଖଣ୍ଡନ କରିଛନ୍ତି ।

ଦୋଷ ଦର୍ଶନ, ଗୁଣାଦର୍ଶର ସମାଲୋଚନା ବା ବିଜୁଳି ପତ୍ରିକା ମାଧମରେ ପ୍ରଦର୍ଶିତ ଆଧୁନିକ ଚିନ୍ତା ଓ ଚେତନା ଦାମୋଦରଙ୍କ ଅଜସ୍ର କାବ୍ୟ କବିତାରେ ପ୍ରତିଫଳିତ । ଦେବଗଡ଼ର ପ୍ରାକୃତିକ ଦୃଶ୍ୟ ରାଜି ଓ ପ୍ରଧାନ ପାଟ ପ୍ରପାତର ଦୃଶ୍ୟ କବିଙ୍କୁ ଆକୃଷ୍ଟ କରିଛି । ପ୍ରକୃତିକୁ ଉପଜୀବ୍ୟ କରି ଗଢ଼ି ଉଠିଛି 'ପ୍ରଧାନ ପାଟ' କାବ୍ୟ । ଏହାକୁ କବି ନିଜର ପ୍ରଥମ କବିତା (୧୮୮୭) ରୂପେ ସ୍ୱୀକାର କରନ୍ତି ।

''ଧନ୍ୟ ତୁ ପ୍ରଧାନ ପାଟ ନିର୍ଝରିଣୀ
ପଞ୍ଚଖଣ୍ଡା ଗିରି ସୀମନ୍ତ ରୂପିଣି

x x x x x x x x

ଧନ୍ୟ ନିର୍ଝରିଣୀ ପ୍ରତାପ ତୋହରି

ଶତ୍ରୁ ପକ୍ଷେ ତୁହି ମହା ଭୟଙ୍କରୀ

ଭାବୁକର ଭାବ-ଉର୍ମି ବିସ୍ତାରିଣୀ

ସନ୍ତାପୀ ମାନବ ଶାନ୍ତି ବିଧାୟିନୀ

ଭୃଗୁଁ ଭୃଗୁଁ ଦେହେ କରିତୁ ବିନାଶ

ଜନ୍ମାଉ ଭାବୁକ ମନେ କି ଉଲ୍ଲାସ ।'' *(୭୯)*

ଦାମୋଦର ମିଶ୍ର ରାଧାନାଥ ଯୁଗୀୟ ଜଣେ ବହୁପ୍ରସୂ କବି । ଆଧୁନିକ କବିତାର ପ୍ରତିଟି ବିଭାବ ତାଙ୍କ କବିତାରେ ସୁରକ୍ଷିତ । ତାଙ୍କର କବିତା ପ୍ରକୃତି ବର୍ଣ୍ଣନା, ଜାତୀୟ ଚେତନା, ମାନବ ସଂପ୍ରୀତି, ଶିକ୍ଷାତ୍ମକ ଓ ବିବିଧ ବିଷୟକୁ ଆଧାର କରି ଗଢ଼ି ଉଠିଛି । ହିତୈଷିଣୀର ଯେ କୌଣସି ପୃଷ୍ଠା ଓଲଟାଇଲେ ଦାମୋଦରଙ୍କ କବିତା ଦୃଷ୍ଟିଗୋଚର ହୁଏ ।

ହିତୈଷିଣୀରେ ଦାମୋଦର ମିଶ୍ରଙ୍କ ଗ୍ରୀଷ୍ମବର୍ଣ୍ଣନା (୨୭.୪.୯୨) ବିଳାପଲହରୀ (୩୧.୮.୯୨) ଚର୍ଚ୍ଚିକା ସ୍ତବ (୨୧.୨.୯୩), ସତୀକିଏ (୨୯.୩.୯୩) ବସନ୍ତ ପିକ (୧୬.୫.୯୩) ବିଧବା ପ୍ରତି (୨୪.୫.୯୩) ଚକୋର (୧୬.୬.୯୩) ଉତ୍କଳେ ବାସନ୍ତୀ ନିଶା (୨୧.୬.୯୩) ଆର୍ଯ୍ୟ ମହିଳା ସୁମିତ୍ରା (୧୮.୧୦.୯୩) ଦୁର୍ଗାବତୀ (୧୫.୧୧.୯୩), ସ୍ୱପ୍ନ (୧୬.୧.୯୪), ଶଶିକଳା (୯.୫.୯୪) ବିପନ୍ନର ବିଳାପ (୧୮.୭.୯୪) ବିପଦ ସମ୍ବନ୍ଧେ ଉପଦେଶ (୧.୮.୯୪) ଦେଶାନ୍ତରିତ ବ୍ୟକ୍ତିର ସ୍ୱଦେଶ ଚିନ୍ତା ((୨୫.୭.୯୪) ଶମନ ଅତ୍ୟାଚାର (୨୯.୮.୯୪), ମୋହିନୀ ((୨୬.୧୨.୯୪) ପ୍ରଧାନ ପାଟ (୧୪.୮.୯୫), ପାପୀର ବିଳାପ (୩୧.୭.୯୫), ଶୁଭ ସମାଚାର (୭.୮.୯୫), ମାନବ ଜୀବନ କି ଦୃଶ (୧୮.୯.୯୫), ମଙ୍ଗଳ ଗୀତ (୨୨.୪.୯୫) ବୃନ୍ଦାବତୀ (୭.୧୦.୧୯୦୧) ବିହଙ୍ଗ ସୌଭାଗ୍ୟ, ତତ୍ୱଚିନ୍ତା (୨୩.୧.୧୯୦୧), ଭିକ୍ଟୋରିଆ ରାଣୀଙ୍କ ପରଲୋକ ଗମନ ଉପଲକ୍ଷେ (୩୦.୧.୧୦୯୧) ଭାରତ ଚିନ୍ତା (୩.୪.୧୯୦୧), ମୁମୂର୍ଷୁର ମୃତ୍ୟୁ ଆବାହନ (୫.୬.୧୯୦୧) ପ୍ରେମ, (୫.୬.୧୯୦୧) ଉଷା (୧.୭.୧୯୦୧) ଚୌହାଣ କୀର୍ତ୍ତି ଦର୍ପଣ (ଦୀର୍ଘ କବିତା ୧୮.୨.୧୯୦୫ ରୁ କ୍ରମଶଃ) ଭକ୍ତିମଣିମାଳ (୧.୪.୧୯୦୫) ପ୍ରଭୃତି ଅଜସ୍ର କବିତା ପ୍ରକାଶିତ ।

ଦାମୋଦରଙ୍କ ଅନେକ ପ୍ରବନ୍ଧ ମଧ ହିତୈଷିଣୀରେ ପ୍ରକାଶିତ ଯଥା ହିନ୍ଦୁରମଣୀର କ୍ଷମା (୧୩.୨.୧୯୦୧) ସଂସାରର ଅନିତ୍ୟତା (୨୭.୨.୧୯୦୧) ଆମ୍ଭମାନଙ୍କର ଦୂରାବସ୍ଥାର କାରଣ କି ? (୧୮.୨.୧୯୦୫) ଛାତ୍ରମାନଙ୍କ ବଦଭ୍ୟାସ (୧୧.୩.୧୯୦୫) ଆମ୍ଭ ମାନଙ୍କ କାର୍ଯ୍ୟରି ପରିଚାଳକ କିଏ (୧.୪.୧୯୦୫) ଗୋପାଳନର ପ୍ରୟୋଜନ କି

(୧.୪୧୯୦୫) ଉକ୍ଷଣ ମୂଳକ ସାଦୃଶ୍ୟ (୨୨.୪.୧୯୦୫) ବର୍ତ୍ତମାନ ବିଗୁଡ଼ାଚରଣେ ଦୋଷୀକେ (୧୩.୫.୧୯୦୫) ଆର୍ଯ୍ୟ ମହିଳାର ସତୀତ୍ୱ (୧୫.୭.୧୯୦୫) ଭାରତର ପ୍ରାଚୀନ ଗୌରବ (୨୯.୪.୧୯୦୫) ସଂଶୟ (୬.୫.୧୯୦୫) ବର୍ତ୍ତମାନ ଚାକେରୀର ଫଳ (୨୦.୫.୧୯୦୫) ଇତ୍ୟାଦି ।

ଦାମୋଦର ମିଶ୍ରଙ୍କ ଅନେକ କବିତା ପୁସ୍ତକ ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ଅଂଶୁପା (୧୮୯୨) କମଳା, ପଦ୍ମାବତୀ (୧୮୯୩) ଦୁର୍ଗାବତୀ (୧୮୯୩) ଆର୍ଯ୍ୟମହିଳା ସୁମିତ୍ରା -(୧୮୯୪) ମୁଁ କାହାର (୧୮୯୩) ମାତା (୧୮୯୫) ପ୍ରଧାନ ପାଟ (୧୮୯୫) ସରଳା (୧୮୯୬) ଚୌହାଣ କୀର୍ତ୍ତିଦର୍ପଣ (୧୯୦୫) ପ୍ରଭୃତି କାବ୍ୟପୁସ୍ତକ ପାଠକୀୟ ସଂବେଦନା ଆକର୍ଷଣରେ ସଫଳ ହୋଇଛି । ଏ ପୁସ୍ତକ ଗୁଡିକ ବିଭିନ୍ନ ସମୟରେ ହିତୈଷିଣୀରେ ସମାଲୋଚିତ ଓ ସୁଧୀ ସମାଲୋଚକଙ୍କ ଦ୍ୱାରା ପ୍ରଶଂସିତ ମଧ ।

ହିତୈଷିଣୀ ୨୨.୩.୯୩ ସଂଖ୍ୟାରେ ଅଂଶୁପାର ସମାଲୋଚନାରେ ଏହାକୁ ଏକ ଉଚ୍ଚକୋଟୀର ପ୍ରକୃତି ବର୍ଣ୍ଣନା ମୂଳକ କାବ୍ୟରୂପେ ସ୍ୱୀକାର କରାଯାଇଛି । ସେ ସଂଖ୍ୟାରେ ରାଧାନାଥ 'କମଳ' କାବ୍ୟର ପ୍ରଶଂସା କରିଛନ୍ତି । ଅଂଶୁପା, 'ଚିଲିକା' କାବ୍ୟର ମହାୟାନ ପରଂପରାର ଏକ ସୁଯୋଗ୍ୟ ଉତ୍ତର ସୃଷ୍ଟି ।

''କି ମୋହିନୀ ଶକ୍ତି ବହିଛୁ ଅଂଶୁପା
କି ଗୁଣେ ମୋ ଠାରେ ତୋର ଏତେ କୃପା
ତୋ ଶୋଭାରେ ଆଜ ହୋଇ ହୃଷ୍ଟ ମନା
ଗମନେ ସ୍ୱସ୍ଥାନେ ନ ବଳେ ବାସନା

x x x x

ତମସ-ବସନା ରଜନୀ-ରମଣୀ
ଶୁଭ୍ର-ତାରା-ମାଳେ ଚନ୍ଦ୍ର-ମଧମଣି
କରି ପରିଧାନ ଏବେ ଉପସ୍ଥିତ
ପଶ୍ଚିମାଶା ଚାରୁ କୁଙ୍କୁମେ ଚର୍ଚ୍ଚିତ ।'' *(୮୦)*

ରୀତି ଯୁଗର ସୁବର୍ଣ୍ଣ ଶୃଙ୍ଖଳକୁ ମୁକୁଳିବାର ସଂଧିକ୍ଷଣରେ ଶୃଙ୍ଗାରିକତାର ପରିଭାଷା ବଦଳିଗଲା । ଶୃଙ୍ଗାର ଚେତନା ଅଶ୍ଳୀଳତାକୁ ପରିହାର କରି ଶୁଭ୍ର ପରିଚ୍ଛନ୍ନ ହୋଇ ଉଠିଲା । ଦୈହିକ ପ୍ରେମ ମାନସିକ ସ୍ତରକୁ ଉତ୍ତୀର୍ଣ୍ଣ ହେଲା । ଏ ପ୍ରସଙ୍ଗରେ ଦମୋଦରଙ୍କ କବିତାର ପ୍ରେମ ଆବାହନକୁ ସ୍ମରଣ କରାଯାଇପାରେ । କମଳ ସୁନ୍ଦରୀ, ଶଶିକଳା, ମୋହିନୀ, ମାଳତୀ ସ୍ୱପ୍ନ, ଓ ପ୍ରେମ କବିତା ଏ ଚେତନାକୁ ସବଳିତ କରନ୍ତି ।

ସମୟର ଇଙ୍ଗାଳରେ ପିହିତ କାବ୍ୟ ପୁରୁଷ ଜୀବନ ପ୍ରତି ଦାର୍ଶନିକ ଦୃଷ୍ଟିଭଙ୍ଗୀ ପ୍ରଦର୍ଶନ କରେ । ଜୀବନ ଦର୍ଶନର ନେତିବାଦ, ଆବେଗ ପ୍ରବଣ ସତ୍ତାକୁ ଶବ୍ଦରୂପ ଦିଏ । ସୃଷ୍ଟି ହୁଏ ମୁଁ

କାହାର, ବିଧବା ପ୍ରତି, ଉମା, ମଦନ, ପଦ୍ମାବତୀ, ଶମନ ଅତ୍ୟାଚାର, ମାତା ପରି କାବ୍ୟ କବିତା । ମାତା କାବ୍ୟ ପାଠକରି ରାଧାନାଥ ଯେଉଁ ପ୍ରଶଂସା ପତ୍ର ଦିଅନ୍ତି ତାହାହିଁ ଏହାର ଯଥାର୍ଥତା । "ଈଶ୍ୱରଙ୍କ କୃପାରୁ ମାତାକାବ୍ୟ ଯୋଗଜନ୍ମା ରଚନା ମଧ୍ୟରେ ସ୍ଥାନ ପାଇବାର ଯୋଗ୍ୟ । ଆପଣ ନିଶ୍ଚୟ ଜାଣିବେ ମୁଁ ମାତାର ଉତ୍କର୍ଷ ସମ୍ବନ୍ଧେ ଅତ୍ୟୁକ୍ତି କରୁନାହିଁ ! ମାତା କାବ୍ୟରେ ପଦ୍ମ, ସୁଧାକର ପ୍ରଣୟୀର ଉଲ୍ଲାସ କିମ୍ବା ବିରହୀର ହାହାକାର ନାହିଁ ସତ୍ୟ କିନ୍ତୁ ପ୍ରକୃତିର ସୁନ୍ଦର ଚିତ୍ର ଯଥାଯଥ ଚିତ୍ରିତ ହୋଇଅଛି । ମୁଁ ନିଜେ ତାହା ଲେଖିଥିଲେ ଆପଣାକୁ ଭାଗ୍ୟବାନ ମଣିଥାନ୍ତି ।" *(୮୧)*

ମାତା କାବ୍ୟର ସମାଲୋଚନାରେ ଭୋଳାନାଥ ସାମନ୍ତରାୟ, ବଙ୍ଗଳା ଭାଷା ପ୍ରଭାବ ହୀନ ଏକ ଉଚ୍ଚକୋଟୀର କାବ୍ୟରୂପେ ଏହାକୁ ସୂଚାଇଛନ୍ତି । *(୮୨)* ହିତୈଷିଣୀ ୩୧.୭.୯୪ ସଂଖ୍ୟାରେ ମାତା କାବ୍ୟରେ ଦାମୋଦରଙ୍କ ଅସାଧାରଣ କବି ପ୍ରତିଭାକୁ କୃଷ୍ଣ ପ୍ରସାଦ ଚୌଧୁରୀ ପ୍ରଶଂସା କରିଛନ୍ତି । କବି ଚିନ୍ତାମଣି ମହାନ୍ତି ଦାମୋଦରଙ୍କ ପ୍ରଧାନ ପାଟ କାବ୍ୟକୁ ପ୍ରଶଂସା କରି କୁହନ୍ତି" କବି ଏକ ଦିଗରେ ଯେ ରୂପ ଶବ୍ଦ ବିନ୍ୟାସ ଦ୍ୱାରା ରଚନାର ଉତ୍କର୍ଷ ରକ୍ଷା କରିଅଛନ୍ତି ଅନ୍ୟ ଦିଗରେ ସେହିପରି କବିତାର ଭାବରକ୍ଷା ଏବଂ ଉତ୍କଳ ଭାଷାର ଜୀବନରକ୍ଷା କରିବାରେ ଅଣୁମାତ୍ର ତ୍ରୁଟି କରି ନାହାନ୍ତି । "*(୮୩)* ଉତ୍କଳ ଦୀପିକା ୧୫-୨-୧୮୯୬ ସଂଖ୍ୟାରେ ମାତା କବିତାର ଆଲୋଚନା କରାଯାଇ ଏହାର ସରଳ ଭାଷା ଓ ସୁନ୍ଦର ଭାବକୁ ପ୍ରଶଂସା କରାଯାଇଛି ।

ସୁସାହିତ୍ୟିକ ଚନ୍ଦ୍ର ମୋହନ ମହାରଣା କବିଙ୍କ 'ଦୁର୍ଗାବତୀ' ଐତିହାସିକ କାବ୍ୟର ଦୀର୍ଘ ଆଲୋଚନା କରି ଏହାର ରଚନାଗତ ଚମତ୍କାରିତା ଓ ନବୀନ ମାଧୁରୀକୁ ସ୍ୱାଗତ କରିଛନ୍ତି । *(୮୪)* ଦାମୋଦରଙ୍କ କାବ୍ୟର ସାମ୍ୟତା ରାଧାନାଥଙ୍କ କାବ୍ୟ ସହିତ ଦୃଷ୍ଟିପଥାରୂଢ଼ ହୁଏ । ସେ ସର୍ବାନ୍ତକରଣରେ ଆଧୁନିକ କାବ୍ୟଗୁଣକୁ ଆହରଣ କରିଥିଲେ । ବିଜୁଳି ଶିବିରର ଜଣେ ରଥୀ ହିସାବରେ ସେ ଆଧୁନିକ କାବ୍ୟ ସମୃଦ୍ଧି ପାଇଁ ଆଜୀବନ ସଂଗ୍ରାମ କରିଛନ୍ତି । ତାଙ୍କର ପଦ୍ମାବତୀ କାବ୍ୟର ଉତ୍କର୍ଷତାକୁ ଲକ୍ଷ୍ୟକରି ଜଣେ ପ୍ରଶଂସକ ଏହା ରାଧାନାଥଙ୍କ ସୃଷ୍ଟି ବୋଲି ସଂଶୟ ପ୍ରକାଶ କରନ୍ତି । ରାଧାନାଥ ଏକ ପତ୍ରରେ ସେ ସଂଶୟ ଖଣ୍ଡନ କରି ଏ ତରୁଣ ପ୍ରତିଭାର ମହତ୍ତ୍ୱ ପ୍ରତିପାଦନ କରନ୍ତି । "ପଦ୍ମାବତୀ ଦାମୋଦର ମିଶ୍ରଙ୍କ ରଚିତ । ଦାମୋଦର ମୋ ରଚିତ ପୁସ୍ତକାଦି ସର୍ବଦା ଅନୁଶୀଳନ କରି ସେଥିର ଅନୁକରଣରେ ଲେଖିଥିବାରୁ ଆପଣଙ୍କର ଭ୍ରମ ହୋଇଛି । ବାସ୍ତବରେ ଦାମୋଦର ବାବୁଙ୍କ ଶକ୍ତି ଅତି ପ୍ରଶଂସନୀୟ । ତାହାଙ୍କର ବୟଃକ୍ରମ ଅତିଅଳ୍ପ । ଏତେ ଅଳ୍ପ ବୟସରେ ଏପରି ରଚନାଶକ୍ତି ସଚରାଚର ଦେଖାଯାଏ ନାହିଁ ।" *(୮୫)*

ଜୀବନର ବହୁମୁଖୀ ପ୍ରଚ୍ଛଦକୁ କାବ୍ୟ ଦୁକୂଳ ପିନ୍ଧାଇ ଦାମୋଦର ଉତ୍କଳ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ତାଙ୍କର କାବ୍ୟ ସମୂହର ସ୍ୱରୂପ ବିଶ୍ଳେଷଣ ଏକ ସୁଦୀର୍ଘ ରଚନାର ଅପେକ୍ଷା ରଖେ । ତଥାପି ବି କବିତାର ବିଭିନ୍ନ ଧାରାକୁ ପରିପୁଷ୍ଟ କରିବାରେ ସେ କାର୍ପଣ୍ୟ କରିନାହାଁନ୍ତି ।

ଓଡ଼ିଆ ଗଦ୍ୟ ସାହିତ୍ୟକୁ ମଧ ସେ ଯଥାଶକ୍ତି ପରିପୁଷ୍ଟ କରିଛନ୍ତି । 'ଦୋଷ ଦର୍ଶନ' ଲିପିପ୍ରଣାଳୀ' (୧୮୯୨) ତାଙ୍କର ଦୁଇଟି ପ୍ରକାଶିତ ପୁସ୍ତକ । ବିଶୁଦ୍ଧ ଓଡ଼ିଆ ରଚନା ପାଇଁ ସେ ଅଗ୍ରଜ ବିଦ୍ୟାରତ୍ନଙ୍କ ଉପଦେଶ ଅନୁସାରେ 'ଲିପିପ୍ରଣାଳୀ' ରଚନା କରିଥିଲେ ।

ତାଙ୍କର ପ୍ରକାଶିତ ପ୍ରବନ୍ଧ ଗୁଡିକରେ ଜାତୀୟ ଚେତନା ଉଦ୍ରେକ ଓ ସମାଜର ସମୃଦ୍ଧି କାମନା କରାଯାଇଛି । ଶିକ୍ଷିତ ବ୍ୟକ୍ତିମାନେ ଶିଳ୍ପଶିକ୍ଷାର ଅଭାବରେ ବାଣିଜ୍ୟାଦି ପ୍ରତି ବିମୁଖ ହୋଇ ଚାକେରୀ ଲାଳସା ହେବା ହିଁ ଦେଶର ଦୁରାବସ୍ଥା । ବିଦେଶୀ ଦ୍ରବ୍ୟ ବର୍ଜନ କରି ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବାକୁ ସେ ଆହ୍ୱାନ ଦେଇଛନ୍ତି । *(୮୬)* ଛାତ୍ରମାନଙ୍କୁ ଉଚିତ ମାର୍ଗ ଦର୍ଶନ, ବିଜ୍ଞାନର ତତ୍ତ୍ୱମୂଳକ ଓ ରମଣୀମାନଙ୍କ ଦୁରାବସ୍ଥା ସଂପର୍କରେ ସେ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ଭାରତର ପ୍ରାଚୀନ ଗୌରବ ଓ ଆର୍ଯ୍ୟ ମହିଳାର ସତୀତ୍ୱ ପ୍ରସଙ୍ଗରେ ସେ ଭାରତୀୟ ପରଂପରାର ଜୟଗାନ କରିଛନ୍ତି । ଏକ ସମୃଦ୍ଧ ଜୀବନ ବଞ୍ଚିବା ପାଇଁ ତାଙ୍କର ପ୍ରବନ୍ଧ ସକଳ ଇଙ୍ଗିତ କରନ୍ତି । ଆଦର୍ଶ ସମାଜ ଗଠନର ନିୟାମକ ହୋଇଛନ୍ତି ଦାମୋଦର ।

ରାଧାନାଥ ଯୁଗୀୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ସଫଳ ସାଧକ ଦାମୋଦର ମିଶ୍ର ।

## ୫: ଚିନ୍ତାମଣି ମହାନ୍ତି (୧୮୬୭-୧୯୪୩) :

ପରିମାଣାତ୍ମକ ଦୃଷ୍ଟିରୁ ଚିନ୍ତାମଣି ମହାନ୍ତିଙ୍କ ଅବଦାନ ଓଡ଼ିଆ ସାହିତ୍ୟରେ ଏକ ବିରାଟ ବିସ୍ମୟ । ଚିରସୃଷ୍ଟିଶୀଳ ଏ ପ୍ରତିଭା ବିବିଧ ବିଷୟକ ରଚନାରେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ପୂର୍ଣ୍ଣ କରିଛନ୍ତି । ତାଙ୍କର ପ୍ରାରମ୍ଭିକ କାବ୍ୟ ଆବେଦନ ହିତୈଷିଣୀକୁ ଅବଲମ୍ବନ କରି ଗଢ଼ି ଉଠିଥିଲା । ଚିନ୍ତାମଣିଙ୍କ କାବ୍ୟ ସମଗ୍ରକୁ ରାଧାନାଥଙ୍କ ବିକଳ ଅନୁକରଣ କହି ଉଡାଇ ଦେଲେ ସତ୍ୟର ଅପଲାପ ହେବ । ଆଧୁନିକ ଯୁଗଧାରାକୁ ଏ ନୀରବ କବି କିପରି ନିଷ୍ଠାପର ଭାବେ ସମୃଦ୍ଧ କରିଯାଇଛନ୍ତି ତାର ଦ୍ୱିତୀୟ ଦୃଷ୍ଟାନ୍ତ ନାହିଁ । ସୁ ସାହିତ୍ୟିକ ଗୋପାଳ ପ୍ରହରାଜ ଚିନ୍ତାମଣିଙ୍କୁ ଫକୀର ମୋହନଙ୍କ ସମତୁଲ୍ୟ କରିଛନ୍ତି । ତାଙ୍କ ମତରେ ''ଚିନ୍ତାମଣି ରାଧାନାଥ ଯୁଗର ଶେଷ ଶ୍ରେଷ୍ଠ କବି । ତାଙ୍କ କବିତାରେ ରାଧାନାଥଙ୍କ କବିତାର ରସିକତା ନଥିଲେ ସୁଦ୍ଧା ମଧୁସୂଦନଙ୍କ ଗାମ୍ଭୀର୍ଯ୍ୟ ଯେ ରହିଅଛି, ଏଥିରେ ସନ୍ଦେହ ନାହିଁ । ସାଧକ ଜନୋଚିତ ଗାମ୍ଭୀର୍ଯ୍ୟର ମୁଦ୍ରା ଚିନ୍ତାମଣିଙ୍କ କବିତାର ପ୍ରତି ଛତ୍ରରେ ସ୍ପଷ୍ଟ ହିସାବରେ ଅଙ୍କିତ । ଚିନ୍ତାମଣିଙ୍କ ଅପକ୍ୱ ବୟସର ଲେଖାରେ ମଧ ପ୍ରବୀଣ ଜନୋଚିତ ଗାମ୍ଭୀର୍ଯ୍ୟ ଦ୍ରଷ୍ଟବ୍ୟ''। *(୮୭)*

ହିତୈଷିଣୀ ସହିତ ଚିନ୍ତାମଣିଙ୍କ ସଂପର୍କ ଖୁବ୍ ନିବିଡ଼ । ତତ୍‌କାଳୀନ ଭଦ୍ରକ ସ୍କୁଲ ସବ୍‌ଇନସପେକ୍ଟର ରମାନାଥ ଦାସ ହିତୈଷିଣୀର ଗ୍ରାହକ ଥିଲେ । ଚିନ୍ତାମଣିଙ୍କ କବି ପ୍ରତିଭାରେ ମୁଗ୍ଧ ହୋଇ ସେ ହିତୈଷିଣୀରେ ଲେଖିବା ପାଇଁ ତାଙ୍କୁ ଉତ୍ସାହିତ କଲେ । ରମାନାଥ ବାବୁଙ୍କ

ଉତ୍ସାହରେ ଚିନ୍ତାମଣି ନିଜର କବିତା ହିତୈଷିଣୀକୁ ପଠାଇଥିଲେ । (୮୮) ବୋଧେ ହିତୈଷିଣୀରେ ତାଙ୍କର ପ୍ରଥମ ପ୍ରକାଶିତ କବିତା "ସ୍ତୁତି" । (୮୯) ଏହାପରେ ବିଦ୍ୟାରତ୍ନଙ୍କ ସହିତ ତାଙ୍କର ପତ୍ର ସଂପର୍କ ଗଭୀର ହୋଇଉଠେ । ବିଦ୍ୟାରତ୍ନ ଚିନ୍ତାମଣିଙ୍କୁ ବାରଂବାର ଉତ୍ସାହ ପତ୍ର ପଠାଉଥିଲେ । ଚିନ୍ତାମଣିଙ୍କ ଅନେକ ଗଦ୍ୟ ଓ ପଦ୍ୟ ରଚନା ହିତୈଷିଣୀରେ ପ୍ରକାଶ ପାଇଥିଲା । ତାଙ୍କର ପ୍ରଥମ ପ୍ରକାଶିତ ପୁସ୍ତକ ମୋହିନୀ ( ୧୯୦୧ ) ସଚ୍ଚିଦାନନ୍ଦଙ୍କ ଆନୁକୂଲ୍ୟରେ ବାମଣ୍ଡାରୁ ପ୍ରକାଶ ପାଇଥିଲା । ଏବଂ ଏହା ଧାରାବାହିକ ହିତୈଷିଣୀରେ ମଧ୍ୟ ପତ୍ରସ୍ଥ ହୋଇଥିଲା । (୯୦) କବିଙ୍କର ସୁଲକ୍ଷଣା କାବ୍ୟ ହିତୈଷିଣୀ ୧୮୯୭ରେ ଧାରାବାହିକ ପ୍ରକାଶ ପାଇଥିଲା । ୧୯୧୬ରେ 'ଶଶିପ୍ରଭା' ନାମରେ ଏହା ପୁସ୍ତକାକାରେ ପ୍ରକାଶିତ ହେଲା । (୯୧) ତତ୍‌କାଳୀନ ଓଡ଼ିଶାର ପଣ୍ଡିତ ଶ୍ରୀଯୁକ୍ତ ସୋମନାଥ କାବ୍ୟତୀର୍ଥ ୧୯୧୩ ହିତୈଷିଣୀ ପତ୍ରିକାରେ ଚିନ୍ତାମଣିଙ୍କୁ 'କବିବର' ଉପାଧି ପ୍ରଦାନ ପାଇଁ ପ୍ରସ୍ତାବ ଦେଇଥିଲେ । ତାଙ୍କର ପ୍ରସ୍ତାବ ଫକୀର ମୋହନ, ବିଦ୍ୟାରତ୍ନ, ରାମ ଶଙ୍କର, ମଧୁସୂଦନଦାସ ପ୍ରମୁଖଙ୍କ ଅନୁମୋଦନ ଲାଭ କରିଥିଲା । ଫଳରେ ଚିନ୍ତାମଣି 'କବିବର' ରୂପେ ପରିଚିତ ହେଲେ । (୯୨)

ହିତୈଷିଣୀର ଜଣେ ଗୁଣମୁଗ୍ଧ ଲେଖକ ଥିଲେ ଚିନ୍ତାମଣି । ସେ "ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଜୀବନୀ"ରେ ହିତୈଷିଣୀ ଓ ବିଦ୍ୟାରତ୍ନଙ୍କୁ ଅକପଟ ସମ୍ମାନ ପ୍ରଦର୍ଶନ କରିଛନ୍ତି । (୯୩)

ସ୍ତୁତି କବିତା ପ୍ରକାଶିତ ହେବା ପୂର୍ବ ୨୩.୧୦.୧୮୯୫ ସଂଖ୍ୟାରେ ଦାମୋଦର ମିଶ୍ରଙ୍କ ପ୍ରଧାନ ପାଟ କାବ୍ୟର ଏକ ସଂକ୍ଷିପ୍ତ ବିଦଗ୍ଧ ଆଲୋଚନା ତାଙ୍କର ପ୍ରକାଶ ପାଏ । ୧୦.୧.୧୯୦୦ ସଂଖ୍ୟାରେ ପଥପାର୍ଶ୍ୱ ପତିତ ଶବ ପ୍ରତି ୧୩.୨.୧୯୦୧ରେ ମଧୁପର ପ୍ରଶଂସା ପତ୍ର ୮.୫.୧୯୧୫ରେ ନିବେଦନ, ୧୨.୬.୧୫ରେ ମୟୂର, ୧୦.୯.୧୭ରେ ବିଦାୟ ଆବାହନ ୧୪.୯.୧୭ ରେ ମାତାମହୀ, ୧୭.୫.୨୨ ରେ ସେବାଧର୍ମ, ୧.୭.୨୨ରେ ଅର୍ଥ, ୮.୭.୨୨ରେ ଯୋଗବିଦ୍ୟା, ୩୧.୨୦ ରେ ମାତୃପଦେ ମାଗୁଣି ୭.୨.୨୦ରେ ମରାଳ ମାଳା ପ୍ରଭୃତି ରଚନା ପ୍ରକାଶ ପାଇଥିଲା । ହିତୈଷିଣୀର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ଚିନ୍ତାମଣିଙ୍କ ସାରସ୍ୱତ ସଂପର୍କ ଅକ୍ଷୁର୍ଣ୍ଣ ଥିଲା । ଚିନ୍ତାମଣିଙ୍କ ସମାଧିକ୍ଷେତ୍ର (କ), ଉତ୍କଳ କମଳା (ଖ) ମହୋଦଧି (ଗ) ପ୍ରତିଲେଖ (ଘ) ମହେନ୍ଦ୍ର କାବ୍ୟ (ଙ) ପତ୍ରପୁଷ୍ପ (ଚ) ପ୍ରଭୃତି ସୃଷ୍ଟିର ସମାଲୋଚନା ହିତୈଷିଣିରେ ପ୍ରକାଶ ପାଇ କବିଙ୍କୁ ଉଚିତ ମାର୍ଗ ଦର୍ଶନ ଦେଇଥିଲା । (୯୪)

## ୬: ଜଳନ୍ଧର ଦେବ ( ୧୮୭୨-୧୯୫୨ ) :

ଓଡ଼ିଆ ସାହିତ୍ୟରେ ଜଳନ୍ଧର ଦେବ ଜଣେ ସର୍ବିତ ଉଚ୍ଚାରଣ । ଆଧୁନିକ ଓଡ଼ିଆ ସାହିତ୍ୟର ନବୋନ୍ମେଷ ସମୟରେ ସେ ଜଣେ ପ୍ରଚଣ୍ଡ ପ୍ରତିଭା । ନିଜସ୍ୱ ପ୍ରଜ୍ଞାବଳରେ ସେ

ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଥିଲେ । ଏ ପ୍ରତିଭା ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ନୂଆ ବ୍ୟାପ୍ତି ଓ ଗଳ୍ପ ସାହିତ୍ୟକୁ ଐଶ୍ୱର୍ଯ୍ୟ ପ୍ରଦାନ କରିଥିଲା । ମହାଭାରତ, ରାମାୟଣ, ବେଦ ଓ ଭଗବତ ଗୀତାର ବୈଜ୍ଞାନିକ ସିଦ୍ଧ ଆଲୋଚନା ତାଙ୍କର ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ଦିଏ ।

ଜଳନ୍ଧର ଜଣେ ସତ୍ୟନିଷ୍ଠ ସ୍ୱାଧିନଚିନ୍ତକ, ନିର୍ଭୀକ ସାରସ୍ୱତ ଶିଳ୍ପୀ । ତାଙ୍କ ସାହିତ୍ୟ ପ୍ରକୃତିରୁ ଜୀବନ୍ୟାସ ପାଇ ସମାଜରେ ସଞ୍ଚରଣଶୀଳ । ଶୁଦ୍ଧବାୟୁ ପରି, ଅରଣ୍ୟର ରସଘନ ମାଦକତା ପରି, କୋଇଲିର କୁହୁପରି, ସୂର୍ଯ୍ୟର ପ୍ରଚଣ୍ଡତା ପରି ତାଙ୍କ ସାହିତ୍ୟ ସତ୍ୟର ରୂପକୁ ସ୍ୱାଗତ କରିଛି । ଜୀବନକୁ ସେ ଯେମିତି ଦେଖିଛନ୍ତି, ଅନୁଭବିଛନ୍ତି ସେମିତି ପ୍ରକାଶ କରିଛନ୍ତି । ସ୍ୱପ୍ନ ଓ କଳ୍ପନାର ଅଳୀକ ଅନୁସଙ୍ଗରେ ସେ ନିଜର ସାହିତ୍ୟକୁ ଉଦ୍ଦୀପିତ କରି ନାହାଁନ୍ତି । ବରଂ ବାସ୍ତବ ବୋଧ ଓ ହେତୁବାଦୀ ଦୃଷ୍ଟୀ ଭଙ୍ଗୀରେ ସଚ୍ଚୋଟ ସୁନାରୀ ପରି ଜଗତକୁ, ସାହିତ୍ୟକୁ ପରଖିଛନ୍ତି । ଯାହା ମାନବ ସମାଜର କଲ୍ୟାଣକର ତାହା ପରଷି ଦେଇଛନ୍ତି ।

ଜଳନ୍ଧରଙ୍କ ପ୍ରାରମ୍ଭିକ ସାରସ୍ୱତଚର୍ଯ୍ୟା ହିତୈଷିଣୀ ମାଧମରେ ସଂଘଠିତ ହୁଏ । ପ୍ରଶାସନିକ ସେବାର ବ୍ୟସ୍ତତା ଭିତରେ ମଧ ସେ ସାହିତ୍ୟ ସାଧନାକୁ ଜୀବନର ମହାର୍ଘ ଅଙ୍ଗରୂପେ ଗ୍ରହଣ କରିନେଇଥିଲେ । ହିତୈଷିଣୀ ପ୍ରତି ତାଙ୍କର ଶୁଭେଚ୍ଛା ରହିଥିଲା । ହିତୈଷିଣୀ, ଆଲୋଚନା ଓ ଉତ୍କଳମଧୁପର ଦେୟ ତାଙ୍କ ନାମରେ ପଠାଇବାକୁ ହିତୈଷିଣୀରେ ଅନୁରୋଧ କରାଯାଇଥିଲା । *(୯୫)* ଏତଦ୍‌ବ୍ୟତୀତ ଜଳନ୍ଧରଙ୍କ ବିଭିନ୍ନ ସାଂସ୍କୃତିକ ଉତ୍ସବ ସହିତ ସଂପୃକ୍ତିକୁ ହିତୈଷିଣୀ ପରିବେଷଣ କରିଥିଲା । ଏ ପ୍ରସଙ୍ଗରେ ଆଲୋଚନା ସଭା, ବିଭିନ୍ନ ସ୍ମୃତିସଭାକୁ ଉଲ୍ଲେଖ କରାଯାଇପାରେ । ଜଳନ୍ଧର ମୌଳିକ ସୃଷ୍ଟିରେ ବ୍ୟସ୍ତ ରହିବା ଅପେକ୍ଷା ଏକ ସାରସ୍ୱତ ଓ ସାଂସ୍କୃତିକ ସଚେତନତା ସୃଷ୍ଟିରେ ଅଧିକ ନିଷ୍ଠା ପ୍ରଦର୍ଶନ କରିଥିଲେ । ଜଳନ୍ଧରଙ୍କ ଅନେକ ରଚନା ହିତୈଷିଣୀରେ ପ୍ରକାଶିତ, ଅନେକ ରଚନା ବେନାମୀ ଭାବରେ ମୁଦ୍ରିତ । ଏଣୁ ଏ ସମସ୍ତ ରଚନାର ପିତୃତ୍ୱ ପ୍ରଦାନ କରିବା ସମ୍ଭବ ନୁହେଁ ।

ହିତୈଷିଣୀ ୧୮୯୫ ବେଳକୁ ସଂବଲପୁରରୁ ଓଡ଼ିଆ ଭାଷା ଉଚ୍ଛେଦ ସଂପର୍କରେ ''ଉତ୍କଳ ଭାରତୀଙ୍କ କ୍ଷୋଭ'' *(୯୬)* ଓ ''ନିବେଦନ'' *(୯୭)* ଶୀର୍ଷକରେ ଦୁଇଟି କବିତା ରଚନା କରିଥିଲେ । ଏ କବିତା ମାଧମରେ ଜଳନ୍ଧର ପାଠକୀୟ ସଂବେଦନା ଆକର୍ଷଣ କରିବାରେ ସଫଳ ହୋଇଥିଲେ । ଏ କବିତାରେ ସେ ତତ୍‌କାଳୀନ କୃତି ସନ୍ତାନଙ୍କୁ ଓଡ଼ିଆ ଭାଷାର ଦୁଃଖ ଦୂର କରିବାକୁ ଆହ୍ୱାନ ଦେଇଥିଲେ ।

''ଏକି ଅଦ୍‌ଭୂତ ଶୁଣିଲିରେ ଆଜ
ମାତାସମ ମାତୃଭାଷା ଆମ୍ଭର
ସପତ୍ନୀକୁ ନିଜ ଶିଶୁଗଣ ଦେଇ
ନିଜ ଦେଶୁଁ ଦୁଃଖେ ହେବ ଅନ୍ତର ।

ଅତିଯତ୍ନେ ପାଳି ଥିଲେରେ ଆମ୍ଭଙ୍କୁ
ସକ୍ଷ ଅନୁସାରେ ସଂପତ୍ତି ଦେଇ
ଗଳହସ୍ତ ହୋଇ ତତା ଯାଉଛନ୍ତି
ସହାୟକି ତାଙ୍କୁ ନୋହିବ କେହି ।
ଏକେ ମାତୃହୀନ ହୋଇବ ସକଳ
ବିମାତାର କୋଳେ ହେବ ପାଳିତ
ବିମାତା ନନ୍ଦନେ ଦୁଃଖରେ ପାଳିବେ
ଏଥିରେ କି ତୁମ୍ଭେ ନୁହ ଲଜ୍ଜିତ ।'' (ନିବେଦନ)

ହିତୈଷିଣୀ ୧୮୯୫ ସଂଖ୍ୟାରେ ଧାରାବାହିକ ଜଳନ୍ଧରଙ୍କ ଭାରତୀୟ ରମଣୀ ପ୍ରକାଶ ପାଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଏହା ଏକ ବିରାଟ ସାମାଜିକ ଆନ୍ଦୋଳନରେ ରୂପାନ୍ତରିତ ହୋଇଥିଲା । ବାଲ୍ୟ ବିବାହ ବିରୁଦ୍ଧରେ ଓ ବିଧବା ବିବାହ ସପକ୍ଷରେ ଜଳନ୍ଧରଙ୍କ ଯୁକ୍ତି ଶାସ୍ତ୍ରୀୟ ସିଦ୍ଧାନ୍ତ ଉପରେ ଗଢ଼ିଉଠିଥିଲା । ଏ ପ୍ରସଙ୍ଗରେ ପ୍ରକାଶ ପାଇଥିଲା ତାଙ୍କର ଅନନ୍ୟ କୃତି 'ବିବାହ ବିଚାର' (୧୯୨୮) । ହିତୈଷିଣୀ ୮/୧୫ ଓ ୮/୧୬ ସଂଖ୍ୟାରେ ତାଙ୍କର 'ଗ୍ରହଣ ବିଚାର' ପ୍ରବନ୍ଧ ପ୍ରକାଶ ପାଇଥିଲା । ଏଥିରେ ଚନ୍ଦ୍ର ଗ୍ରହଣ ଓ ସୂର୍ଯ୍ୟ ପରାଗର ବୈଜ୍ଞାନିକ ବିବରଣୀ ବିଶଦ୍ ବର୍ଣ୍ଣିତ ହୋଇଛି । ଗ୍ରହଣ ସଂପର୍କେ ପ୍ରଚଳିତ ବିଭିନ୍ନ କୁସଂସ୍କାରକୁ ଏ ପ୍ରବନ୍ଧରେ ଖଣ୍ଡନ କରାଯାଇଛି । (୯୮) ହିତୈଷିଣୀ ୧୮୯୬ ବର୍ଷର ୭/୪୫ ସଂଖ୍ୟାରୁ ୮/୫ ସଂଖ୍ୟା ପର୍ଯ୍ୟନ୍ତ ତାଙ୍କର ''ମହରମର ଇତିବୃତ୍ତ''ପ୍ରକାଶ ପାଇଥିଲା । ଏହା କୁମୁଦ ବଂଧୁ ଘୋଷଙ୍କ ବଙ୍ଗଳା 'ମହରମର ଇତିବୃତ୍ତ' ପୁସ୍ତକର ମର୍ମାନୁବାଦ । ହିତୈଷିଣୀ (୨୧/୪) ତା ୧୩.୧୧.୧୯୦୯ ସଂଖ୍ୟାରେ ହେଲିର ଧୂମକେତୁ 'ଶ୍ରୀ' ଛଦ୍ମନାମରେ ପ୍ରକାଶିତ । ଏହା ଜଳନ୍ଧରଙ୍କ ରଚନା ରୂପେ ପ୍ରତିପନ୍ନ ହୁଏ । ଏଥିରେ ମହାଜାଗତିକ ଦୃଶ୍ୟ ଦର୍ଶନ କରି ଜ୍ଞାନ ଆହରଣ କରିବାକୁ ସେ ଆହ୍ୱାନ ଦେଇଛନ୍ତି । ପାଶ୍ଚାତ୍ୟ ପଣ୍ଡିତ ଧୂମକେତୁ ଦେଖିବାକୁ ତତ୍‌ପର କିନ୍ତୁ ଭାରତୀୟ ଗଣ ଏହାକୁ ଅଶୁଭ କହି ଏଡାଇ ଯାଆନ୍ତି । ଏ କୁସଂସ୍କାରକୁ ଜଳନ୍ଧର ଖଣ୍ଡନ କରିଛନ୍ତି ।

ହିତୈଷିଣୀ ଅନ୍ତରାଳରେ ଗଢ଼ି ଉଠିଥିବା ଜଳନ୍ଧର ପ୍ରତିଭା ପରବର୍ତ୍ତୀ ପର୍ଯ୍ୟାୟରେ ଅନେକ ପ୍ରବନ୍ଧ, ଗଳ୍ପ, ନାଟକ, ଭ୍ରମଣ କାହାଣୀ ଓ କବିତା ଓଡ଼ିଆ ସାହିତ୍ୟକୁ ଦାନ କରିଯାଇଛି । ଇନ୍ଦ୍ରଧନୁ-ବିଜୁଳି ସାରସ୍ୱତ କଳହ ଏବଂ ହିତୈଷିଣୀରେ ସଂଘଠିତ ଅନେକ ସାରସ୍ୱତ ବାଦାନୁବାଦ ତାଙ୍କୁ ଏକ ଉତ୍କୃଷ୍ଟ ସମାଲୋଚକ ରୂପେ ଗଢ଼ିଥିଲା । ୧୯୦୦ ମାର୍ଚ୍ଚ ମାସରେ ଦେବଗଡ଼ରୁ ପ୍ରକାଶିତ 'ଆଲୋଚନା' ପତ୍ରିକା ଓ ମାନସିଂହଙ୍କ ପରେ 'ଶଂଖ'ପତ୍ରିକାର ସଂପାଦନା ତାଙ୍କର ବୌଦ୍ଧିକ ଶକ୍ତିକୁ ପରିବ୍ୟାପ୍ତ କରିଥିଲା । ଉତ୍କଳ ସାହିତ୍ୟ, ସହକାର, ଭଞ୍ଜପ୍ରଦୀପ, ରସଚକ୍ର, ମୁକୁର, ପ୍ରଭୃତିର ସେ ଥିଲେ ନିୟମିତ ଲେଖକ ।

ଜଣେ ବେସାଲିସ ସଂସ୍କାରକ ଓ ସତ୍ୟନିଷ୍ଠ ପ୍ରାବନ୍ଧିକ ରୂପେ ସେ ଓଡ଼ିଆ ସାହିତ୍ୟରେ ସ୍ୱୀକୃତ ।

## ୭: ବଳଭଦ୍ର ଦେବ (୧୮୭୮-୧୯୩୭) :

ସାହିତ୍ୟିକ ପିତା ସୁଡ଼ଳଦେବଙ୍କ ଅନୁପ୍ରେରଣା, ଜ୍ୟେଷ୍ଠ ଭ୍ରାତା ବିଜ୍ଞାନ ବିନୋଦ ସଚ୍ଚିଦାନନ୍ଦଙ୍କ ସଖ୍ୟ ବଳଭଦ୍ର ଦେବଙ୍କୁ ଜଣେ ଅନନ୍ୟ କବି କରି ଗଢ଼ିଥିଲା । ସେ ଆଜୀବନ କାବ୍ୟ ଦେବୀର ନିରାଜନା କରିଛନ୍ତି । ବାମଣ୍ଡାର ପ୍ରଶାସନିକ କ୍ଷେତ୍ରରେ ନିଯୁକ୍ତି ଥାଇ ମଧ ସେ ବାମଣ୍ଡା ଛାତ୍ର ସମିତି, ଆଲୋଚନା ସଭାର ଜଣେ ନିୟମିତ ସଭ୍ୟ ଥିଲେ । ସେ ଋତୁ ସଂହାର (୧୯୦୩) ରଘୁବଂଶ, କାଦମ୍ବରୀ (୧୯୨୯) ପ୍ରଭୃତି କାବ୍ୟକୁ ସଂସ୍କୃତରୁ ଅନୁବାଦ କରିଥିଲେ । ଐତିହାସିକ ବିମଣ୍ଡିତ ମହାଭାରତୀୟ ସଂସ୍କୃତିର ଭାଷ୍ୟକାର କାଳିଦାସ, ବାଣଭଟ୍ଟଙ୍କ ଠାରୁ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ୱର୍ଦ୍ଧିତ ପୁରୁଷାକାର ରାଧାନାଥ, ମଧୁସୂଦନଙ୍କୁ ପ୍ରଦକ୍ଷିଣ କରି ନିଜସ୍ୱ କ୍ଷେତ୍ର ତୀର୍ଥ ସାରସ୍ୱତକୁ ସଂଯୋଗ କରୁଥିବା କଳାତ୍ମକ ଅଭିରୁଚିର କାବ୍ୟକାର ବଳଭଦ୍ର ଦେବ ।

ବନ୍ଦୀର ଲାଞ୍ଛନା, ପାର୍ବତୀ ଉତ୍ତରାର୍ଦ୍ଧ, ଭ୍ରାନ୍ତି ହିଲ୍ଲୋଳ, ସୁନାମୁଣ୍ଡା, ବାସେଳୀଳୀଳା, ପ୍ରଭୃତି କାବ୍ୟ କବିତାରେ ବଳଭଦ୍ରଙ୍କ ମୌଳିକ କାବ୍ୟସତ୍ତା ସୁରକ୍ଷିତ । ପାର୍ବତୀ ଉତ୍ତରାର୍ଦ୍ଧ କାବ୍ୟ ରାଧାନାଥଙ୍କ ପାର୍ବତୀ କାବ୍ୟର କଳଙ୍କ ପ୍ରକ୍ଷାଳନରେ ସମର୍ଥ । ସୁନାମୁଣ୍ଡା, ବାଲ୍ୟସ୍ମୃତି ଅତିନ୍ଦ୍ରୀୟ ପ୍ରକୃତି ବର୍ଣ୍ଣନାରେ ଚିଲିକାର ସମକକ୍ଷ । ଭ୍ରାନ୍ତିହିଲ୍ଲୋଳ ସେକ୍ସପିଅରଙ୍କ Comedy of Errors ର ଛାୟାରେ ଏକ ରସସ୍ନିଗ୍ଧ କାବ୍ୟ । ଏହା ଉପରେ ନଟବର ସାମନ୍ତରାୟଙ୍କର ମନ୍ତବ୍ୟ ଏକାନ୍ତ ସ୍ୱାଗତଯୋଗ୍ୟ, ''ଓଡିଶାର ଐତିହାସିକ ଉପାଦାନ ଉପରେ ରାଧାନାଥଙ୍କ ବିଦେଶୀ ବିଷୟ ବସ୍ତୁର ଆରୋପ ଏକାନ୍ତ ବିଭ୍ରାନ୍ତିକର ପରିସ୍ଥିତି ସୃଷ୍ଟି କରିଥିଲା । କିନ୍ତୁ 'ଭ୍ରାନ୍ତି ହିଲ୍ଲୋଳ' କଥାଭାଗ ଯେପରି ପ୍ରୀତିକର, ତାର ରସ ରୂପାୟନ କୌଶଳ ମଧ ସେମିତି ଶୁଦ୍ଧ ଓ ଅନାବିଳ ।'' *(୯୯)*

ହିତୈଷିଣୀ ସହିତ ବଳଭଦ୍ରଙ୍କ ସଂପର୍କ ଅନାବିଳ । ତାଙ୍କର ଅନେକ ରଚନା ହିତୈଷିଣୀରେ ପ୍ରକାଶିତ । ତାଙ୍କ ସୃଷ୍ଟିର ଆଲୋଚନାରେ ହିତୈଷିଣୀ ପଞ୍ଚ ମୁଖର । ହିତୈଷିଣୀ ଦ୍ୱାରା ବଳଭଦ୍ରଙ୍କ ପ୍ରାରମ୍ଭିକ କାବ୍ୟଚର୍ଯ୍ୟା ସୁନିୟନ୍ତ୍ରିତ । ସେ କିଛି ସମୟ ଏହାର ସଂପାଦନା ସହିତ ଜଡିତ ଥିବାର ସୂଚନା ଥିଲେ ହେଁ ସେ ସ୍ୱୟଂ ଏହାକୁ ଖଣ୍ଡନ କରନ୍ତି । ତଥାପି ହିତୈଷିଣୀର ସାଂସ୍କୃତିକ ବାତାବରଣର ସେ ଅଭିନ୍ନ ଅଙ୍ଗ ଥିଲେ ।

ହିତୈଷିଣୀ (୧୧/୩୪) ତା ୨୭.୧୨.୧୮୯୯ ରେ ସେ 'ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ' ସମସ୍ୟା ପ୍ରଦାନ କରିଥିଲେ । ଏ ସମସ୍ୟା ପୂର୍ତ୍ତି ଅନେକ କବି ବିଭିନ୍ନ ଦୃଷ୍ଟିକୋଣରୁ

କରିଥିଲେ । ଏଗୁଡିକ ହିତୈଷିଣୀ ୧୧/୩୮ ଓ ୧୧/୩୯ ସଂଖ୍ୟାରେ ପ୍ରକାଶିତ ହୋଇ ଏକ ସାରସ୍ୱତ ଆଲୋଡନ ସୃଷ୍ଟି ହେଲା । ଏପରି କି ସମସ୍ୟା ପୂର୍ତ୍ତି ଗୁଡିକ ଦରବାର ସଭାରେ ପଠିତ ଓ ଆଲୋଚିତ ହୋଇଥିଲା । ଶ୍ରୀ ବନମାଳୀ ଗୁରୁଙ୍କ ସମସ୍ୟା ପୂର୍ତ୍ତିରେ ଚାନ୍ଦକୁ ପିଠା ସହିତ ତୁଳନାରେ ହାସ୍ୟରୋଳ ସୃଷ୍ଟି ହୋଇଥିଲା ଓ ଗୁଣଗ୍ରାହୀ ସୁଢ଼ଳ ଦେବ କହିଥିଲେ ''କବି ଗଣ ପିଠା ଖାଇବାକୁ ଆଗ୍ରହୀ, ପିଠା ପରଶା ଯାଉ ।'' ସଙ୍ଗେ ସଙ୍ଗେ ଆଦେଶ ପାଳିତ ହୋଇଥିଲା । (୧୦୦)

ହିତୈଷିଣୀ (୨୨/୬) ତା ୧୬.୧୨.୧୯୧୦ରେ 'କୌଣସି ଆଲେଖ୍ୟ ପ୍ରତି' କବିତା ପ୍ରକାଶ ପାଇଥିଲା ।

'' କେ ଗୋ ! ତୁମ୍ଭେ ପୁଣ୍ୟମୟି ! ବଳ୍କଳ ବସନା
ବସିଅଛ ଶିଳାସନେ ଗଣ୍ଡେ କର ଥୋଇ ?
ମହା ଧ୍ୟାନେ, ସୁକୁଞ୍ଚିତ କେଶପାଶ ପିଟି
ରାଜର ଚରମେ, ଯଥା ସୌଦାମିନୀ ପୃଷ୍ଠେ
ପୟୋଧର, ପଳ କତ ଗଲାଣି ପାସୋରି
ଆୟତ ଚଞ୍ଚଳ ଚାରୁ ବିଲୋଚନ ବେନି
କେଉଁ ଧ୍ୟାନେ, ବାହ୍ୟବସ୍ତୁ ଯେତେ ସମ୍ମୁଖର
ଅତିକ୍ରମି ତବ ମନ ବିରାଜୁଛି ସିନା ।'' *(୧୦୧)*

'ଶକୁନ୍ତଳା ପ୍ରତି ଦୁର୍ବାସାଙ୍କର ଅଭିଶାପ' ଚିତ୍ର ପ୍ରତି ବଳଭଦ୍ରଙ୍କ ଏ କବିତାକୁ ଲକ୍ଷ୍ୟ କରି ଅଗ୍ରଜ ସଚ୍ଚିଦାନନ୍ଦ ଆଲେଖ୍ୟର ପରିଚୟ କବିତା ରଚନା କରିଥିଲେ ।

''ଭାଇ !
ଚିହ୍ନୁ ନାହିଁ ? ଏହି ସେହି ବଳ୍କଳ ବସନା
ଲଳନା-ଲଲାମ ଦେବୀ ପୌରବ ମୋହିନୀ
ମେନକା ଗର୍ଭ-ସମ୍ଭୂତ ଶକୁନ୍ତ ଲାଳିତା
ବୈଶାମିତ୍ର ଶକୁନ୍ତଳା,.....'' *(୧୦୨)*

ହିତୈଷିଣୀ ତା ୧୩.୫.୧୯୧୧ରେ ''କୌଣସି ଆଲେଖ୍ୟ ପ୍ରତି'', ୧୨.୮.୧୧ ରେ ଆବାହନ, ୧୨.୯.୧୪ରେ ନବ୍ୟରଷି, ୧୪.୧୧.୧୪ରେ ମାନଭଙ୍ଗ, ୨୧.୧୧.୧୪ରେ ବନ୍ତୁ, ୧୭.୪.୧୫ରେ ମନୋରଞ୍ଜନ, ଦୁର୍ଦ୍ଦୈବ, ୧୫.୫.୧୫ ରେ ନିନ୍ଦୁକ, କାଦୋକିଳ ୨୨.୫.୧୫ ରେ ବୃଦ୍ଧ ଗିରିଙ୍କ ପ୍ରତି, ୨୯.୫.୧୫ରେ କ୍ଷୁଧାର୍ତ୍ତର ପ୍ରତ୍ୟୁପନ୍ନ ମତିତ୍ୱ, ୧୨.୬.୧୫ରେ ଦୁରାଚାର୍ର ପ୍ରତି, ୧୬.୧୦.୧୫ରେ କାହିଁ ସେହିକାଳ, ୫.୧.୧୮ରେ ନବବର୍ଷ, ୧୯.୧.୧୮ରେ ସୁଖଦୁଃଖ, ୨.୨.୧୮ରେ ବଚନ ଶଂଖ, ପ୍ରଭୃତି କବିତା ପ୍ରକାଶିତ ।

ବଳଭଦ୍ରଙ୍କ ବାସ୍ତବବାଦୀ ଦୃଷ୍ଟିକୋଣ ତାଙ୍କର କାବ୍ୟକଳାକୁ ଋଦ୍ଧିମନ୍ତ କରିଛି । ଜୀବନର ପରିଚିତ ଦୃଶ୍ୟାବଳୀର ଅଙ୍କନରେ ଗଭୀର ଅନୁଭୂତିର ଛାପ ସୁସ୍ପଷ୍ଟ । ତାଙ୍କର କବିତା କଳାର ସହଜ ସରଳ ମାଦକତା ପାଠକଙ୍କୁ ବିମୋହିତ କରିବାରେ ସଫଳ ହୋଇଥାଏ ।

## ୮ : ପଦ୍ମ ଚରଣ ପଟ୍ଟନାୟକ :

ଧଉଳି ପାହାଡର ସ୍ରଷ୍ଟା ପଦ୍ମଚରଣ ପଟ୍ଟନାୟକଙ୍କ କାବ୍ୟ ଜୀବନର ଆଦ୍ୟ ଅର୍ଘ୍ୟ ହିତୈଷିଣୀ ମାଧ୍ୟମରେ ନିବେଦିତ । । 'ପଦ୍ମ ପାଖୁଡା' 'ଗୋଲାପ ଗଛ', 'ସୁନାର ଦେଶ' 'ସୂର୍ଯ୍ୟମୁଖୀ' 'ଆଶା ମଞ୍ଜରୀ'ର ସ୍ରଷ୍ଟା ଯେଉଁ ଦୃଢ଼ କାବ୍ୟ ଭିତିରେ ଦଣ୍ଡାୟମାନ ତାହା ହିତୈଷିଣୀ ଦ୍ୱାରା ନିର୍ମିତ । ପୁରୀ ଜିଲ୍ଲା ସ୍କୁଲର ଚତୁର୍ଥ ଶ୍ରେଣୀ ଛାତ୍ର ଥିଲାବେଳେ ତାଙ୍କର କବିତା ହିତୈଷିଣୀରେ ପ୍ରକାଶିତ ହୋଇ ତାଙ୍କୁ କାବ୍ୟ ପ୍ରସିଦ୍ଧି ଆଣି ଦେଇଥିଲା । ହିତୈଷିଣୀ ୪.୧୨.୧୯୦୨ ରୁ ଧାରାବାହିକ ଖଣ୍ଡଗିରି କାବ୍ୟ ପ୍ରକାଶିତ । ପ୍ରାଥମିକ ପର୍ଯ୍ୟାୟରୁ ତାଙ୍କର ବର୍ଣ୍ଣନା ଶୈଳୀ ଓ ଛନ୍ଦବିନ୍ୟାସ ପାଠକଙ୍କୁ ଆକୃଷ୍ଟ କରିଥିଲା । ଏଥି ସହିତ ସଂଯୁକ୍ତ ହୋଇଥିଲା ଜାତୀୟ ଚେତନା ଓ ଦେଶ ପ୍ରେମ । ଯାହା ଶେଷ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହି ତାଙ୍କୁ ଜଣେ ଜାତୀୟ ଗୀତିକାର ରୂପେ ପ୍ରତିଷ୍ଠିତ କରିଥିଲା । ଜାତୀୟ ଚେତନାର ମନ୍ଦ୍ରନିନାଦ ତାଙ୍କର ଏ ପ୍ରାରମ୍ଭିକ କବିତାରେ ଦ୍ରଷ୍ଟବ୍ୟ

''ଭାରତର ଦୂର ହେଉ ଦୁଷଣ
ଭାରତ ଲଭୁ ପବିତ୍ର ଜୀବନ
ଭାରତ ମୁଖ ଇନ୍ଦୁର ପ୍ରକାଶ-
ଦେଖି ମନ ଲଭୁ ଅତି ହରଷ
ଭାରତ ବାସନା
ଶୀଘ୍ର ପୂର୍ଣ୍ଣ କରନ୍ତୁ ବିଦ୍ୟାରମା '' (ବିଷାଦଚିନ୍ତା) (୧୦୩)

## ୯: ବୃନ୍ଦାବନ ନାଥଶର୍ମା (୧୮୮୭-୧୯୫୫) :

ସୃଜନାତ୍ମକ ସମାଲୋଚନା ଧାରାର ଜଣେ ଅଗ୍ରଗଣ୍ୟ ସାଧକ ବୃନ୍ଦାବନ ନାଥଶର୍ମା । ପାରଂପରିକ ସାରସ୍ୱତ ଆଭିମୁଖ୍ୟ ବାହାରେ ସେ ଆଗାମୀ କ୍ରାନ୍ତି ପାଇଁ ନିଜର ସାଧନାକୁ ଉତ୍ସର୍ଗ କରିଦେଇଥିଲେ । ଶ୍ରୀ ଶର୍ମା ନାମରେ ସେ ଏକ ଉଚ୍ଚାଙ୍ଗ ନିରବଚ୍ଛିନ୍ନ ସମାଲୋଚନାର ଧାରା ହିତୈଷିଣୀରେ ସୃଷ୍ଟି କରିଥିଲେ । ତାଙ୍କର ମନନଶୀଳ ହୃଦୟ, ବହୁ ଶାସ୍ତ୍ର ପଠନ, ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ବୌଦ୍ଧିକ ରସଚର୍ଯ୍ୟା ଓଡ଼ିଆ କବିତା ଓ ସମାଲୋଚନାର ଧାରାକୁ ସ୍ପନ୍ଦିତ କରିଛି । ତାଙ୍କର ଆଜୀବନ ସାଧନାକୁ ସମ୍ମାନ ଜଣାଇ ଗୋପାଳ ପ୍ରହରାଜ କୁହନ୍ତି,

''କଟକର ଶ୍ରୀଯୁକ୍ତ ଶଶିଭୂଷଣ ରାୟ ଓ ଦେବଗଡର ବୃନ୍ଦାବନ ବାବୁଙ୍କ ପରି ଅବିଚ୍ଛିନ୍ନ ଧାରାରେ ନିଷ୍ଠାପର ସାହିତ୍ୟ ସେବା ଆମ ଭିତରେ ଅତିଅଳ୍ପ ବ୍ୟକ୍ତିଙ୍କର ମୁଁ ଦେଖୁଛି । ଏ ଶ୍ରେଣୀର ସାହିତ୍ୟ ସେବକ ମାନେ ସାହିତ୍ୟ କାନନରେ ଭ୍ରମଣ କରି ଯାହା ମହନୀୟ ଆଦରଣୀୟ ଓ ସ୍ପୃହଣୀୟ ଫଳ ଆହରଣ କରନ୍ତି, ସେ ଗୁଡିକ ପଚାଇ ସଢ଼ାଇ ଫିଙ୍ଗି ନ ଦେଇ ଦେଶକୁ ସମାଜକୁ, ଜାତିକୁ ସେଥିରେ ଭାଗିଦାର କରନ୍ତି ।'' *(୧୦୪)*

ବୃନ୍ଦାବନ ଥିଲେ ହିତୈଷିଣୀର ଅନ୍ୟତମ ପ୍ରଧାନ ଲେଖକ । ସେ ପ୍ରତ୍ୟକ୍ଷ ସଂପାଦନାରେ ଅଂଶ ଗ୍ରହଣ କରି ନଥିଲେ ମଧ୍ୟ ଦୀନବଂଧୁ ଗଡନାୟକଙ୍କ ସମୟରେ ସାହିତ୍ୟ ସମାଲୋଚନାର ଭାର ଗ୍ରହଣ କରିଥିଲେ ଏବଂ ବିଭିନ୍ନ ସ୍ଥଳରେ ସଂପାଦକଙ୍କୁ ସାହାଯ୍ୟ କରୁଥିଲେ । ବାମଣ୍ଡାର ଆଦର୍ଶମୟ ପୃଷ୍ଠଭୂମିରେ ଶ୍ରୀ ଶର୍ମାଙ୍କର ପ୍ରାରମ୍ଭିକ ସାରସ୍ୱତ ଜୀବନ ବିକଶିତ । ଏ ପ୍ରେକ୍ଷାପଟରେ ହିତୈଷିଣୀରେ (୧୯୦୬) ତାଙ୍କର ଆଦ୍ୟ କାବ୍ୟାର୍ଘ୍ୟକୁ ଗ୍ରହଣ କରାଯାଇପାରେ ।

''ଆଶାପ୍ରଦ ନବବର୍ଷ ଦିଅହେ ନବୀନ ହର୍ଷ
ମାତନ୍ତୁ ଉତ୍କଳ ପୁତ୍ରଗଣ
ସ୍ୱଦେଶ ଉନ୍ନତି ପାଇଁ ନବରାଗେ ଗୀତ ଗାଇ
କରନ୍ତୁ ସାର୍ଥକ ନିଜ ଜନ୍ମ ।'' *(୧୦୫)*

ଶ୍ରୀ ଶର୍ମାଙ୍କ ପ୍ରଥମ ଗଦ୍ୟ ରଚନା ମନନଶୀଳ ପ୍ରବନ୍ଧ ରୂପେ ୧୯୦୬ରେ ହିତୈଷିଣୀରେ ପ୍ରକାଶଲଭେ''ଅପରିଣାମଦର୍ଶୀ'' ଶୀର୍ଷକରେ । *(୧୦୬)* ପରେ ପରେ ତାଙ୍କର ପୁସ୍ତକ ଓ ପତ୍ରିକା ସମାଲୋଚନା ସହିତ ଅନେକ ମୌଳିକ ପ୍ରବନ୍ଧ ହିତୈଷିଣୀରେ ପ୍ରକାଶ ଲଭି ତାଙ୍କୁ ଜଣେ ଶ୍ରେଷ୍ଠ ସମାଲୋଚକର ସମ୍ମାନ ଦିଏ । ମାସିକ ସାହିତ୍ୟ ସମାଲୋଚନା ଶୀର୍ଷକରେ ମୁକୁର, ଉତ୍କଳ ସାହିତ୍ୟ ପ୍ରଭୃତି ପତ୍ରିକାର ସୃଜନାତ୍ମକ ସମାଲୋଚନା କରାଯାଉଥିଲା । ଏ ଆଲୋଚନାର ଭାର ବୃନ୍ଦାବନ ଗ୍ରହଣ କରିଥିଲେ । ''ଅସାମୟିକ ଚିନ୍ତା'' ଶୀର୍ଷକରେ ସଂକ୍ଷିପ୍ତ ମନନଶୀଳ ଚିନ୍ତାଦ୍ୟୋତକ ଲେଖା ହିତୈଷିଣୀରେ (୧୯୨୦) ପ୍ରକାଶ ଲଭିଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଏ ବିକ୍ଷିପ୍ତ ଚିନ୍ତା ସମୂହ ସହକାରରେ 'ସାହିତ୍ୟ ସେବକର ଚିନ୍ତାଧାରା' ଶୀର୍ଷକରେ ପ୍ରକାଶ ପାଇଥିଲା । ୧୯୩୯ରେ ଏହା 'ଶତଚିନ୍ତା' ରୂପେ ପୁସ୍ତକାକାରେ ପ୍ରକାଶ ଲଭିଥିଲା ।

ଏ ସମସ୍ତ ବ୍ୟତିରେକେ ହିତୈଷିଣୀରେ ପ୍ରକାଶିତ ନିମ୍ନ ପ୍ରବନ୍ଧ ଗୁଡିକ ବୃନ୍ଦାବନଙ୍କ ଉଚ୍ଚାଙ୍ଗ ଚିନ୍ତାଧାରାର ସର୍ବଶ୍ରେଷ୍ଠ ପରିପ୍ରକାଶ । ହିତୈଷିଣୀ ୫.୧୨.୦୮ ରୁ ୨.୧.୦୯ ପର୍ଯ୍ୟନ୍ତ ହସ୍ତିତତ୍ତ୍ୱ, ୧୬.୧.୦୯ ରେ ବହୁଜନପୂର୍ଣ୍ଣ ସ୍ଥାନ ଅସ୍ୱାସ୍ଥ୍ୟକର, ୯.୨.୦୯ରେ ଫକୀର

ମୋହନଙ୍କ ବୌଦ୍ଧାବତାର କାବ୍ୟର ଆଲୋଚନା, ୫.୨.୧୦ ଓ ୧୯.୨.୧୦ରେ ଉତ୍କଳ ଚିତ୍ର, ୨୬.୩.୧୦ରେ ନାଟକ, ୧୧.୬.୧୦ରେ ଜଳକର୍ଷନ, ୨୨.୧୦.୧୦ଓ ୨୯.୧୦.୧୦ରେ ଉତ୍କଳୀୟ ଶିଳ୍ପ କଳା, ୫.୧୧.୧୦ରେ କବିବର ଉପେନ୍ଦ୍ରଭଞ୍ଜ, ୨୬.୧୧.୧୦ରେ ଗଙ୍ଗାଜଳ, ୨.୧୧.୧୨ରେ ଫକୀରମୋହନଙ୍କ ପୂଜାଫୁଲ ର ଆଲୋଚନା, ୪.୧.୧୩ ରେ ଗତ ୧୧.୧.୧୩ ରେ ସ୍ୱର୍ଗୀୟ ମଧୁସୂଦନ ରାଓ, ୩୧.୫.୧୩ ରେ ଅରଣ୍ୟ ବିଦ୍ୟାଳୟ, ୨୮.୧୬.୧୩ ରେ ଆମେରିକାର ବର୍ତ୍ତମାନ କାଳର ଶ୍ରେଷ୍ଠ କବି ଜୋୟାକିନ ମିଲର୍, ୧୨.୭.୧୩ ରେ ଇତର ବିଶେଷ ୧୮.୪.୧୪ରେ ହରିଚନ୍ଦନ ଜଗଦ୍ଦେବଙ୍କ 'ତପୋବନ'ର ସମାଲୋଚନା, ୨୦.୬.୧୪ରେ ଲକ୍ଷ୍ମୀର ସମାଲୋଚନା, ୧.୮.୧୪ରେ ଚିନ୍ତାମଣି ମହାନ୍ତିଙ୍କ 'ଉତ୍କଳ କମଳା' ର ସମାଲୋଚନା, ୨୬.୨.୧୦ରେ ଉତ୍କଳ ସାହିତ୍ୟରେ ପ୍ରକାଶିତ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଅଚ୍ୟୁତାନନ୍ଦ ଦାସଙ୍କ ଜୀବନ ଚରିତର ସମାଲୋଚନା, ୬.୨.୧୫ରେ କବି ସମାଦର, ୨୦.୩.୧୫ରେ ଏ କି ଛଳନା, ୫.୬.୧୫ରେ ଉତ୍କଳ ଚିନ୍ତା, ୩.୭.୧୫ରେ ଐତିହାସିକ ଆଲୋଚନା, ୩୧.୭.୧୫ରେ ଉତ୍କଳ ଲକ୍ଷ୍ମୀ ସମାଲୋଚନା, ୨୪.୧.୨୦ରେ ବ୍ୟବସାୟ ବାଣିଜ୍ୟ ଉତ୍କଳ ଯୁବକର କର୍ତ୍ତବ୍ୟ, ୧୨.୭.୧୯ରେ ଜ୍ଞାନାନ୍ୱେଷଣ, ୧୪.୬.୧୯ରେ ପ୍ରକୃତ ଗୁଣୀର ଆଦର କେଉଁଠାରେ ୨୧.୬.୧୯ରେ ଏଣୁ ତେଣୁ, ୮.୫.୨୦ରେ ବରୋଦା ଲାଇବ୍ରେରୀ, ୧୪.୮.୨୦ରେ ଓଡ଼ିଆର ମସ୍ତିଷ୍କ ଚାଳନା ୬.୫.୨୨ରେ ଓଡ଼ିଆ ଉଦାରତା, ୧୩.୫.୨୨ରେ ଓଡ଼ିଆ ଜାତି ପ୍ରତି କବି ମଧୁସୂଦନଙ୍କର ଧାରଣା, ୧.୭.୨୨ରେ କବି ଫକୀର ମୋହନଙ୍କର ଓଡ଼ିଆ ଜାତି ପ୍ରତି ଆସ୍ଥା, ୨୨.୪.୨୨ ରେ କବି ରାଧାନାଥଙ୍କର ଆଶାବାଣୀ, ୧୧.୧୧.୨୨ରେ ଯୌବନ କାଳ ଶ୍ରେଷ୍ଠ ସମୟ ପ୍ରଭୃତି ପ୍ରବନ୍ଧ ସମାଲୋଚନା ପ୍ରକାଶିତ ।

ଶ୍ରୀ ଶର୍ମାଙ୍କର ସାରସ୍ୱତ ଭିତ୍ତି ତିନୋଟି ସ୍ତମ୍ଭ ଉପରେ ପ୍ରତିଷ୍ଠିତ । ପ୍ରଥମତଃ ଓଡ଼ିଆତ୍ୱ ତଥା ମୌଳିକ ଓଡ଼ିଆ ସାହିତ୍ୟର ପ୍ରଚାର । ଦ୍ୱିତୀୟତଃ ଓଡିଆର ଐତିହ୍ୟ ତଥା ପୁରାତତ୍ତ୍ୱ ପ୍ରଖ୍ୟାପନ ଓ ତୃତୀୟତଃ ଅନ୍ୟ ସାହିତ୍ୟର ସାର ସଂଗ୍ରହ ଏବଂ ଓଡ଼ିଆ ପୃଷ୍ଠଭୂମିରେ ପରିବେଷଣ । ଏହି ତିନୋଟି ବିଷୟ ପ୍ରତି ସଚେତନ ଥାଇ ସାହିତ୍ୟ ସୃଷ୍ଟି କରୁଥିଲେ ମଧ ସବୁବେଳେ ଏ ସାରସ୍ୱତ ପୁରୁଷ ଆଧୁନିକ ଓଡ଼ିଆ ସାହିତ୍ୟର ଦୁଃସ୍ଥତା ପ୍ରତି ସଂବେଦନଶୀଳ ହୋଇ ଉଠିଥିଲେ ।

ବିଦ୍ୟାରତ୍ନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବୃନ୍ଦାବନଙ୍କ ସାହିତ୍ୟିକ ଜୀବନ ଗଢ଼ିଉଠିଥିଲା । ଛାତ୍ର ସମିତିର ପ୍ରତିଟି ସଭାରେ ଉପସ୍ଥିତ ରହି ବିଦ୍ୟାରତ୍ନ ଛାତ୍ର ମାନଙ୍କ ରଚନା ସଂଶୋଧନ କରୁଥିଲେ । ଅନ୍ୟ ସାରସ୍ୱତ ସାଧକଙ୍କ ପରି ବୃନ୍ଦାବନଙ୍କ ସାଧନା ମଧ କବିତା ସୃଷ୍ଟିରୁ ଉପରିତ

ହୋଇଥିଲା । ଓଡ଼ିଆତ୍ୱର ମୁଗ୍ଧ ଚେତନାରେ ପ୍ରବୋଧିତ କବି ପ୍ରାଣ ଦିବ୍ୟ ଭାବର ସଂଧାନ ଲଭିଛି । ଏ ଦିବ୍ୟଭାବ ଗାଁ ସରହଦ ଡେଇଁ ଓଡ଼ିଶା, ଭାରତ ଦେଇ ଭୂମାରେ ବିଚରଣ କରିଛି; ଯେଉଁଠି ମାନବବାଦର ଅକପଟ ବିନ୍ୟାସ ସୃଷ୍ଟିକୁ ଅମୃତମୟ କରି ତୋଳିଛି । ଏପରି ଏକ ଉଚ୍ଚକିତ ଦିବ୍ୟଭାବ ନିଷ୍ଠୁର ସମାଲୋଚକର ପ୍ରାଣକୁ ମରମୀ କବିତାଟିଏ କରି ଗଢ଼ି ତୋଳିଛି । ଏ ପ୍ରସଙ୍ଗରେ ବୃନ୍ଦାବନଙ୍କ କାବ୍ୟ ଆବେଦନକୁ ସ୍ମରଣ କରାଯାଇପାରେ ଯାହା ସ୍ପଷ୍ଟ ହୁଏ ତାଙ୍କର ଅଜସ୍ର ସୃଷ୍ଟିରେ । ହିତୈଷିଣୀ ୧୩.୧.୦୬ରେ ନବବର୍ଷ, ୪.୧.୦୮ରେ ବର୍ଷା ବିଦାୟ ୭.୧୧.୦୮ରେ ନବାବ ସିରାଜଦ୍ଦୌଲ୍ଲାଙ୍କ ଗୁରୁଦକ୍ଷିଣା, ୨୮.୧୧.୦୮ରେ ଧନବାନ କୃପଣ ପ୍ରତି ସଦାଶୟ ଦରିଦ୍ରର ଉକ୍ତି, ୩୦.୧.୦୯ରେ ଶ୍ରୀପଞ୍ଚମୀ, ଅଜ୍ଞାନୀ, ୨୭.୨.୦୯ରେ ପରିଣାମଚିନ୍ତା, ୬.୩.୦୯ରେ ମାନ୍ୟବର କବି ଫକୀର ମୋହନ ସେନାପତି , ୨.୧୦.୦୯ରେ ବାଲ୍ୟକାଳ, ୯.୧୦.୦୯ରେ ତ୍ରିବେଣୀ ତଟରେ ଉତ୍କଳୀୟ କାର୍ଯ୍ୟ, ୧୬.୧୦.୦୯ରେ କିପାଁ ଲୋଡୁ ଶାନ୍ତି, ୧୮.୧୨.୦୯ରେ କିପାଁ ଲୋଡୁ ଶାନ୍ତି , ୧୪, ୫.୧୦ରେ ମଦାଳସା ପରିଣୟ, (ଧାରବାହିକ) ୧୯.୧୦.୧୦ରେ ଢଗାଇ ମାଧାଇ ଚିତ୍ରଦର୍ଶନେ, ୫.୧୦.୧୨ରେ ଭଗବାନ ଶଙ୍କରାଚାର୍ଯ୍ୟ ବିରଚିତ କୌପୀନ ପଞ୍ଚକର ଛାୟା ବଳୟନେ ଲିଖିତ କବିତା, ୧୪, ୪.୧୩ ରେ କାହିଁ ମୋ ଈଶ୍ୱର, ୧୭.୧.୧୪ରେ ସାଧୁର କାତରୋକ୍ତି, ୭.୨.୧୪ରେ ଛଅବର୍ଷ ତପସ୍ୟାନ୍ତେ ଗୌତମ, ୨୧.୩.୧୪ରେ ମେରୀ ମ୍ୟାଗ ଡେଲିନ ଯୁଡିୟାର, ୨୭.୬.୧୪ରେ ପ୍ରାର୍ଥନା, ୧୨.୧୨.୧୪ରେ ପ୍ରାର୍ଥନା, ୧୬.୧.୧୫ରେ ମୋ କଳ୍ପନା, ୧୭.୪.୧୫ରେ ଦୁଃଖ, ଏକି ତୋର କର୍ମ ୧୫.୫.୧୫ରେ କବି ଗଙ୍ଗାଧର, ୭.୮.୧୫ରେ ଯଥାର୍ଥ ଆକାଂକ୍ଷା ୧୬.୧୦.୧୫ରେ ଅଛି ସେହିକାଳ, ୧.୬.୧୮ରେ ଦରିଦ୍ର ଓ ଅଂଧ, ୧୪.୯.୧୮ରେ ଉଭଟ କବିତା, ଭକ୍ତି ୧୨.୪.୧୯ରେ ବନ୍ଦୀ ଆରତି, ୨୬.୪.୧୯ରେ ତୁଳସୀ ଦାସଙ୍କ ଭକ୍ତି, ୧୨.୭.୧୯ରେ ନଦୀତୀରସ୍ଥ ତରୁବର ଓ କୋକିଳ, ୧୬.୮.୧୯ରେ ଆମେ ଓଡ଼ିଆ, ୨୦.୩.୨୦ରେ ଶେଷଦଶା, ୨୬.୩.୨୦ରେ ଶୋଇଥା ଓଡ଼ିଆ, ୩.୪.୨୦ରେ କୃଷକ ଭାଇ, ୨୪.୪.୨୦ରେ ଶିକ୍ଷିତ ଓଡ଼ିଆ ପ୍ରଭୃତି କବିତା ପ୍ରକାଶିତ ।

ଏତଦ୍ ବ୍ୟତୀତ ହିତୈଷିଣୀ ୧୮.୦୯.୧୯୦୮ରେ ତାଙ୍କର 'ବିରାଟ ଗମନ' ନାଟକର କିଛି ଅଂଶ ଏବଂ ୫.୧୦.୧୨ ସଂଖ୍ୟାରେ ବିଚିତ୍ର ମିଳନ, ଐତିହାସିକ ଗଳ୍ପ ପ୍ରକାଶିତ ।

ଦେବଗଡ ଗ୍ରନ୍ଥାଗାରର ପରିଚାଳନା ଦାୟିତ୍ୱ ଗ୍ରହଣ କରି ସେ ଆଜୀବନ ଅଧ୍ୟୟନ ଓ ସୃଜନ କର୍ମରେ ନିଜକୁ ନିମଗ୍ନ କରିଥିଲେ । ଉତ୍କଳ ସାହିତ୍ୟ, ସହକାର, ଚତୁରଙ୍ଗ, ଶଂଖ, ଉପହାର, ମୁକୁର, ସତ୍ୟବାଦୀ, ଭଞ୍ଜପ୍ରଦୀପ, ଏପରିକି ଝଙ୍କାରରେ ମଧ୍ୟ ତାଙ୍କର ଅନେକ ରଚନା ପ୍ରକାଶିତ । ବିକ୍ଷିପ୍ତ ପ୍ରକାଶିତ ରଚନାବଳୀ ମଧ୍ୟରୁ ଏ କୃତବିଦ୍ୟ ଲେଖକଙ୍କ ପ୍ରକୃଷ୍ଟ

ମୂଲ୍ୟାୟନ ଏ ଯାବତ୍ ହୋଇପାରିନାହିଁ । ଅକ୍ଷମ ଓଡ଼ିଆ, ଓଡ଼ିଆର ସାହିତ୍ୟସାଧନା, ଓଡ଼ିଶା ବାହାରେ ଓଡ଼ିଆ, ନୂତନ ପ୍ରଦେଶରେ ଓଡ଼ିଆଙ୍କ କର୍ତ୍ତବ୍ୟ, ଓଡ଼ିଆର ଅନ୍ନ ସମସ୍ୟା, ଓଡ଼ିଶା ବାହାରେ ଓଡ଼ିଆର କୃଷି, ଓଡ଼ିଆ ଦେଶ ତଥା ଓଡ଼ିଆ ଜାତିର ପୁରାତତ୍ତ୍ୱ, ଭୋଟ ଦେଶେ ଉତ୍କଳ ପ୍ରଭାବ ପ୍ରଭୃତି କାଳଜୟୀ ପ୍ରବନ୍ଧର ରଚକ ବୃନ୍ଦାବନ ନାଥ ଶର୍ମା । ସେ ନିଜର ଦେଶ ଓ ଜାତିପ୍ରତି ବିଶ୍ୱସ୍ତ ରହି ନିଜ କୃତିକୁ ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ପାଇଁ ଉସର୍ଗୀ ଦେଇଛନ୍ତି ।

## ୧୦: ଲୋଚନ ପ୍ରସାଦ ପାଣ୍ଡେୟ(୧୮୮୬-୧୯୫୯) :

ଲୋଚନ ପ୍ରସାଦ ପାଣ୍ଡେୟ ହିନ୍ଦି ସାହିତ୍ୟର ଜଣେ ବିଦଗ୍ଧ କବି ଓ ଧୂରୀଣ ପ୍ରବକ୍ତା । ତାଙ୍କର ଓଡ଼ିଆ ସାହତ୍ୟକୁ ଅବଦାନ ଗୁଣାତ୍ମକ ତଥା ପରିମାଣାତ୍ମକ ଦୃଷ୍ଟିରୁ ନ୍ୟୁନ ନୁହେଁ । ଫକୀର ମୋହନ, ରାଧାନାଥ, ଗଙ୍ଗାଧର, ନନ୍ଦକିଶୋର, ମଧୁସୂଦନ ରାଓ, ସଚ୍ଚିଦାନନ୍ଦ ଦେବ ପ୍ରମୁଖଙ୍କ ସହିତ ତାଙ୍କର ପତ୍ର ସଂପର୍କ ରହିଥିଲା । ସେ ଓଡ଼ିଆରେ କେବଳ କାବ୍ୟ କବିତା ରଚନାରେ ନିମଗ୍ନ ରହି ନାହାଁନ୍ତି ବରଂ କାଳଜୟୀ ସୃଷ୍ଟି ସମୂହକୁ ହିନ୍ଦୀ ଭାଷାରେ ଅନୁବାଦ ତଥା ଆଲୋଚନା କରି ଏ ଭାଷାର ପୁଷ୍ଟଳତା ପ୍ରମାଣ କରିଛନ୍ତି । ୧୯୧୦ ବେଳକୁ ଜଷ୍ଟିସ୍ ଶାରଦା ଚରଣ ମିତ୍ର ଏକ ଲିପି ବିସ୍ତାର ପରିଷଦ ଗଠନ କରି "ଦେବନାଗର" ନାମରେ ଏକ ପତ୍ରିକା ପ୍ରକାଶ କରନ୍ତି । ଯେଉଁଠି ଭାରତର ସମସ୍ତ ପ୍ରାନ୍ତର ଲେଖା ଦେବନାଗରୀ ଲିପିରେ ମୁଦ୍ରିତ ହେଉଥିଲା । ପାଣ୍ଡେୟଙ୍କ ଓଡ଼ିଆ ଭାଷାର ରଚନା ପ୍ରାୟତଃ ଏ ପତ୍ରିକାରେ ପ୍ରକାଶ ପାଉଥିଲା । *(୧୦୬)*

କଲ୍ୟାଣ ଜୁଲାଇ -୧୯୩୦ ରାମାୟଣାଙ୍କରେ ପାଣ୍ଡେୟ ହିନ୍ଦିଭାଷାରେ ଦାଣ୍ଡିରାମାୟଣର ପ୍ରଥମ ପ୍ରାମାଣିକ ଆଲୋଚନା କରିଥିଲେ । ୧୯୦୬ ବେଳକୁ ବିହାରର ଆରା ଜିଲ୍ଲାରୁ ପ୍ରକାଶିତ ଏକ ପତ୍ରିକାରେ ସେ ଗଙ୍ଗାଧରଙ୍କ 'କୀଚକବଧ'ର କିଛି ଅଂଶ ହିନ୍ଦି ରେ ଅନୁବାଦ କରିଥିଲେ । ତାଙ୍କ ଭାଇ ମୂରଲୀ ଧର ଓ ମୁକୁଟ ଧର ପାଣ୍ଡେୟ ଫକୀରମୋହନଙ୍କ ଉପନ୍ୟାସକୁ ହିନ୍ଦି ରେ ଅନୁବାବ କରିଥିଲେ ।

କବିତା କୁସୁମ (୧୯୦୬), ମହାନଦୀ (୧୯୧୫) ପଲାସୀଯୁଦ୍ଧ (ଅପୂର୍ଣ୍ଣ), ସତ୍ୟହରିଶ୍ଚନ୍ଦ୍ର ଓ ସୀତା ବନବାସ କାବ୍ୟ ତାଙ୍କର ବଳିଷ୍ଠ ପ୍ରତିଭାର ପ୍ରମାଣଦିଏ । ହିତୈଷିଣୀ ସହିତ ପାଣ୍ଡେୟଙ୍କ ଗଭୀର ସଂପର୍କ ଥିଲା । ତାଙ୍କର ଓଡ଼ିଆ ଭାଷା ପ୍ରୀତିରେ ମୁଗ୍ଧ ହୋଇ ସଚ୍ଚିଦାନନ୍ଦ ଦେବ ୧୯୧୧-ଜୁଲାଇ ୧୦ରେ ଏକ ବିରାଟ ପଣ୍ଡିତ ସଭାରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇ "କାବ୍ୟ ବିନୋଦ" ଉପାଧି ପ୍ରଦାନ କରିଥିଲେ ।

ସାହିତ୍ୟ ସାଧନା ପାଣ୍ଡେୟଙ୍କ ମଜ୍ଜାଗତ ଥିଲା । କାବ୍ୟ ଦେବୀଙ୍କ ନିରାଜନା ପାଇଁ ତାଙ୍କର କବି ପ୍ରାଣ ସତତ ଉନ୍ମୁଖ ଥିଲା ।

''କି ଅପୂର୍ବ ସୁଖ ଆହା ସାହିତ୍ୟ ସେବନେ
ବାଗ୍ଦେବୀର ଆରାଧନ
କରେ ଯେହୁ ପୁଣ୍ୟଜନ
ସ୍ୱର୍ଗର ଦେବତା ସେହି ଏ ମର ଭୁବନେ
କଳ୍ପନା ତରୀରେ ବସି
ମନେ ମୃଦୁମୃଦୁ ହସି
ପ୍ରାତଃ ବାୟୁ ରୂପେ ଭ୍ରମେ ବିଚାର ସାଗରେ
ନବ ଭାବ ନବ ଚିତ୍ର
ରମ୍ୟଦ୍ୱୀପ ସୁପବିତ୍ର
ଦରଶନ କରେ ସେହି ପୁଲକ ଅନ୍ତରେ ।'' *(୧୦୮)*

ହିତୈଷିଣୀରେ ପାଣ୍ଡେୟଙ୍କ ଅନେକ ରଚନା ପ୍ରକାଶିତ । ସାହିତ୍ୟ ସେବା (୧୦.୬.୧୧), ଦେବଦୂର୍ଗ (୧୫.୭.୧୧) ମହାନଦୀ (୬.୧.୧୨ରୁ ୧୫.୬.୧୨), ଶୋକ ତର୍ପଣ (୨.୩.୧୨) ପ୍ରାର୍ଥନା (୯.୩.୧୨) ସ୍ନେହୋପହାର (ମଧୁରାଓଙ୍କ ସାକ୍ଷତରେ କବିତା)( ୨୯.୬.୧୨) ବସନ୍ତ ନିବାସ (୬.୭.୧୨) ସାହିତ୍ୟର ଉପେକ୍ଷା ( ୨୮.୯.୧୨) ହରିଶ୍ଚନ୍ଦ୍ର କାବ୍ୟ (୧୬.୧୧.୧୨) ପ୍ରାର୍ଥନା (୨୦.୧୧.୧୨), ସ୍ୱାଧୀନତାରେ ଦାସତା (୭.୩.୧୪) ୰ ପଣ୍ଡିତ ବୈକୁଣ୍ଠ ନାଥ ପୁଜାରୀ (୨୫.୪.୧୪) ଦଳିତ କୁସୁମ (୧୭.୪.୧୫) ପ୍ରଭୃତି କବିତା ହିତୈଷିଣୀରେ ପ୍ରକାଶ ଲଭି ତାଙ୍କୁ ଓଡ଼ିଆ ପାଠକଙ୍କ ନିକଟରେ ପରିଚିତ କରିଥିଲା ।

ହିତୈଷିଣୀ ୮.୭.୧୧ ସଂଖ୍ୟାରେ ତାଙ୍କର କବିତା କୁସୁମର ଆଲୋଚନା କରୁଣାକର ସାହୁ କରିଥିଲେ । ହିତୈଷିଣୀରେ କବି ଭୂଷଣ ସ୍ୱପ୍ନେଶ୍ୱର ଦାଶ ପାଣ୍ଡେୟଙ୍କ ପ୍ରତି କବିତାରେ ଲେଖିଥିଲେ-

''x x x x x x x x
କିଏ ଦେଲା ତବ ନାମ ଲୋଚନ ପ୍ରସାଦ
ମୋ ମତରେ ନୋହିଲାତ ତବ ଗୁଣ ଭଳି
ବାସ୍ତବିକ କିନ୍ତୁ ତୁମ୍ଭେ ହୃଦୟ ପ୍ରସାଦ
ପ୍ରସାଦ ରତ୍ନ ତୁମ୍ଭର ହୃଦେ ଦିଶେ ଝଳି ।'' *(୧୦୯)*

''ଉତ୍କଳ ଭାଷାନୁରାଗୀ ଲେଖକ' ଶୀର୍ଷକ ଅଭିମତରେ ପାଣ୍ଡେୟଙ୍କ କବିତା କୁସୁମର ଉଚ୍ଚ ପ୍ରଶଂସା କରି ବିଦ୍ୟାରତ୍ନ କହନ୍ତି ''x x x x କବିତା ଗୁଡିକ ଭାବପୂର୍ଣ୍ଣ ଏବଂ ଦୋଷ-ଶୂନ୍ୟ ବୋଲାଯାଇପାରେ । କବିତା ଗୁଡିକରୁ କବିଙ୍କର ଧର୍ମାନୁରାଗ ସ୍ୱଦେଶ, ସ୍ୱ ଭାଷା ପ୍ରୀତି, ପରଦୁଃଖ କାତରତା, ସଂସ୍କାର ପ୍ରିୟତା ପ୍ରଭୃତି ଗୁଣର ପରିଚୟ ମିଳେ ।'' *(୧୧୦)*

ପାଣ୍ଡେୟଙ୍କ କବିତାରେ ଆଧୁନିକ କାବ୍ୟଗୁଣ ପରିପୂର୍ଣ୍ଣ, ଜଣେ ଅଣଓଡ଼ିଆ ଲେଖକ ହିସାବରେ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଦାନ ଅପୂର୍ବ ଓ ଅତୁଳନୀୟ ।

## ୧୧: ଲକ୍ଷ୍ମୀ ନାରାୟଣ ସାହୁ (୧୮୯୦-୧୯୬୬) :

ଲକ୍ଷ୍ମୀ ନାରାୟଣ ସାହୁ ଏକାଧାରାରେ ଜଣେ ସମାଜସେବକ ଓ ସାହିତ୍ୟ ସାଧକ । ଓଡ଼ିଶାରେ ଜୈନଧର୍ମ ଓ ଦଣ୍ଡନାଟ ତାଙ୍କର ଦୁଇଟି ଅମୂଲ୍ୟ ଗବେଷଣାତ୍ମକ ଆଲୋଚନା । ତାଙ୍କର ଅନେକ ଗଳ୍ପିକା, କବିତା, ଓ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । 'ସହକାର' ସଂପାଦନା ସହିତ ସଂପୃକ୍ତି ତାଙ୍କର ସାରସ୍ୱତ ଜୀବନକୁ ଋଦ୍ଧିମନ୍ତ କରିଥିଲା ।

ଲକ୍ଷ୍ମୀନାରାୟଣଙ୍କ ପ୍ରାରମ୍ଭିକ ସାରସ୍ୱତଚର୍ଯ୍ୟା ହିତୈଷିଣୀ ଦ୍ୱାରା ସୁନିୟନ୍ତ୍ରିତ । ତାଙ୍କର ଅନେକ କବିତା, ନାଟକ ଓ ପ୍ରବନ୍ଧ ହିତୈଷିଣୀରେ ପ୍ରକାଶିତ । ହିତୈଷିଣୀ ୧୫.୧୨.୧୬ରେ ଧାରାବାହିକ ଭାବେ ବୁଦ୍ଧ ଦେବ ନାଟକ ପ୍ରକାଶିତ । ୨୬.୧.୧୮ରେ ସାନ୍ତ୍ୱନା, ୨୨.୪.୨୨ରେ ନାରୀଜାତିର ଅଧୋଗତି ପାଇଁ ଆମର ଦୁର୍ଦ୍ଦଶା, ୨୨.୫.୨୨ରେ ଜନବୃଦ୍ଧି, ୮.୭.୨୨ରେ ଚୋର, ୧୫.୭.୨୨ରେ ପିପାସା ଓ ପ୍ରାୟଶ୍ଚିତ, ୨.୧୦.୨୨ରେ ବୃନ୍ଦାବନ ନାଥଶର୍ମାଙ୍କ ଦୁଃଖ, ୨୫.୧୧.୨୨ରେ ପତିବ୍ରତା, ୧୭.୨.୨୩ରେ ସତୀ, ତ୍ୟାଗ ପ୍ରଭୃତି ରଚନା ପ୍ରକାଶିତ । ୧୯୧୮ ହିତୈଷିଣୀର ଅନେକ ସଂଖ୍ୟାରେ ତାଙ୍କ ପତ୍ରବଲ୍ଲୀ ଶୀର୍ଷକରେ ପତ୍ରାକାରେ ଉପାଦେୟ ଲେଖା ପ୍ରକାଶିତ । ଏତଦ୍ ବ୍ୟତୀତ ଅନେକ ରଚନା ତାଙ୍କର ହିତୈଷିଣୀରେ ପ୍ରକାଶିତ ।

ହିତୈଷିଣୀର ଅନ୍ତିମ ପର୍ଯ୍ୟାୟରେ ପ୍ରତିଟି ସଂଖ୍ୟା ଲକ୍ଷ୍ମୀନାରାୟଣଙ୍କ ରଚନାରେ ଭାସ୍ୱର ।

## ୧୨: ହରିହର ମହାପାତ୍ର (୧୮୮୫-୧୯୬୧) :

କରୁଣାତ୍ମକ ପୃଷ୍ଠଭୂମିରେ ସୁମଧୁର କାବ୍ୟ ରାଣୀର ହୁଏ ଶୁଚିଶୁଭ୍ର ପ୍ରତିଷ୍ଠା । ଉତ୍କଳ ସାରସ୍ୱତ ଗଗନର କାବ୍ୟତାରା ସୁଡ଼ଳଦେବଙ୍କ ତିରୋଧାନରେ ହରିହର ମହାପାତ୍ରଙ୍କ କିଶୋର ପ୍ରାଣ ବ୍ୟଥାକ୍ତ ହୋଇ ଉଠିଥିଲା । ଏ ବ୍ୟଥା ଜନ୍ମଦେଲା କରୁଣ ଆବେଗମୟ ପଂକ୍ତିକୁ

''ଆହେ ସୁଢ଼ଳ ଦେବ ଦଣ୍ଡଧାରୀ
ଉତ୍କଳ ନୟନୁ ବହଇ ବାରି
ଚାଲିଗଲ ଦେବ ସ୍ୱର୍ଗ ପଥରେ
ନ ଚାହିଁଲ ଆମ୍ଭ କଷ୍ଟକୁ ଥରେ
ପିତା ପ୍ରାୟ ଥିଲ ପାଳି

ନିଷ୍ଟିତେ ବୈକୁଣ୍ଠ ଧାମେ ବିରାଜିଲ
ଶୋକେ ମରୁଅଙ୍କୁ ଭାଜି ।'' *(୧୧୧)*

ଏ ପ୍ରାଥମିକ ଉଚ୍ଚାରଣ ପରବର୍ତ୍ତୀ ପର୍ଯ୍ୟାୟରେ ଆହୁରି ଦୃପ୍ତ ଓ ରସଘନ ହୋଇଛି । ଏ ପ୍ରତିଭା ନିଜର ଉଚ୍ଚାଙ୍ଗ ଅନୁଭୂତିକୁ ନିମ୍ନ ସଂକଳନ ମାଧ୍ୟମରେ ପରିବେଷଣ କରିଛି । ବିବିଧ ସଂଗୀତ (୧୯୦୭), ହେମ କମଳିନୀ (୧୯୧୧) କୁମାର କଣ୍ଠାଭରଣ (୧୯୧୨) ବିସ୍ମୃତିର ପରିଣାମ (୧୯୧୨), କଲ୍ୟାଣ କୁସୁମ (୧୯୧୩) ପ୍ରତିଭା ମୁକୁର (୧୯୧୯) ନୈବେଦ୍ୟ, ଶାନ୍ତି ଭିକ୍ଷା (୧୯୩୩) ବିଚିତ୍ରା ଭାରତୀ (୧୯୩୩) ଖଣ୍ଡାଧାର, ଭରତ (ଅପ୍ରକାଶିତ କାବ୍ୟ) ପ୍ରଭୃତି କାବ୍ୟ କବିତା ହରିହରଙ୍କ କାବ୍ୟ ସାଧନାକୁ ପ୍ରତିଫଳିତ କରେ । ମରୁରାଜ ବିଜୟ (୧୯୧୮) ହରିହରଙ୍କର ଏକମାତ୍ର ନାଟକ ।

ହରିହର ରାଧାନାଥ ଯୁଗୀୟ ଅନ୍ୟତମ ମୌଳିକ କାବ୍ୟସ୍ୱର । ଆଧୁନିକ କାବ୍ୟ ବିଭବକୁ ସେ ସର୍ବାନ୍ତଃକରଣରେ ଆଦରି ନେଇଥିଲେ । ତାଙ୍କର କାବ୍ୟ-ପ୍ରତିଭା ସର୍ବତୋ ଭାବେ ହିତୈଷିଣୀ ଦ୍ୱାରା ବିକଶିତ । ଦେବଗଡ ଆଲୋଚନା ସଭା, ଛାତ୍ର ସମିତି ପ୍ରଭୃତିର ସାରସ୍ୱତ ବାତାବରଣ ଦ୍ୱାରା ସୃଷ୍ଟ ଏ କାବ୍ୟ ପ୍ରତିଭା ବାମଣ୍ଡାର ସାହିତ୍ୟିକ ଅଭିରୁଚିରେ ଲାଳିତ ପାଳିତ ଏବଂ ପରିବର୍ଦ୍ଧିତ । ଭଞ୍ଜୀୟ କାବ୍ୟାଦର୍ଶରୁ ଓହୋରି ଯାଇ କବିତାକୁ ଏକ ନୂତନ ପରିପାଟୀ ପ୍ରଦାନରେ ରାଧାନାଥଙ୍କ ଅନନ୍ୟ ପ୍ରୟାସକୁ ଯେଉଁ ତରୁଣ କବି ଗୋଷ୍ଠୀ ନିର୍ବିବାଦରେ ସମର୍ଥନ କରିଗଲେ, ସେ ଭିତରେ କବି ହରିହର ମହାପାତ୍ର ଅନ୍ୟତମ ।

ହରିହରଙ୍କ 'ହେମ କମଳିନୀ' କାବ୍ୟ ହିତୈଷିଣୀ ୬.୨.୧୯୦୯ରୁ ଧାରାବାହିକ ପ୍ରକାଶିତ ହୋଇ ୧୯୧୧ରେ ପୁସ୍ତକାକାରେ ପ୍ରକାଶିତ ହୁଏ । ଏ କାବ୍ୟଟି କବି ୧୯୦୮ ପୂର୍ବରୁ ରଚନା କରି ରାଧାନାଥଙ୍କ ମତାମତ ଚାହିଁଥିଲେ । ରାଧାନାଥ ହେମ କମଳିନୀକୁ ହରିହର ବାବୁଙ୍କର ରଚନାର କ୍ରୋମୋତ୍କର୍ଷର ପରିଚାୟକ ରୂପେ ଅଭିହିତ କରିଥିଲେ । *(୧୧୨)* ଭକ୍ତକବି ମଧୁସୂଦନ ଏହାର ସୁରୁଚି, ସରସତା ଓ ଲିପି କୌଶଳର ପ୍ରଶଂସା କରନ୍ତି । *(୧୧୩)* ରାଧାନାଥଙ୍କ ଠାରୁ ପ୍ରଶଂସା ସୂଚକ ବାଣୀ ଶୁଣିବା ପରେ କବି ଏହାକୁ ହିତୈଷିଣୀରେ ପ୍ରକାଶ କରିଥିଲେ । ଅପୂର୍ବ ପ୍ରକୃତି ଚିତ୍ରଣରେ କାବ୍ୟଟି ଝଙ୍କୃତ ।

ହରିହରଙ୍କ ଅନେକ ଉତ୍କୃଷ୍ଟ କବିତା ହିତୈଷିଣୀରେ ପ୍ରକାଶିତ । ପ୍ରକୃତିର ବିଭିନ୍ନ ଅଙ୍ଗକୁ ନିମିତ୍ତ କରି ଶାନ୍ତି ବାସନା ଶୀର୍ଷକରେ ସେ ପ୍ରକୃତି ଅନ୍ତରାଳରେ ଶାନ୍ତି-ନିକେତନ ଆକାଂକ୍ଷା କରିଛନ୍ତି । ଏ କବିତା ଗୁଡିକ ପରବର୍ତ୍ତୀ ପର୍ଯ୍ୟାୟରେ ନୂତନ ଶୀର୍ଷକରେ 'ଶାନ୍ତି ଭିକ୍ଷା' ପୁସ୍ତକରେ ସ୍ଥାନିତ ହୋଇଛି ।

ହିତୈଷିଣୀ ତା ୧୮.୯.୧୯୦୯ରେ ଶାନ୍ତିବାସନା (୧)(ପୁସ୍ତକରେ ମୟୂରପ୍ରତି), ୨୫.୯.୧୯୦୯ରେ ଶାନ୍ତିବାସନା (୨)(ପୁସ୍ତକରେ ନଳିନୀ ପ୍ରତି) ୨.୧୦.୧୯୦୯ ରେ

ଶାନ୍ତିବାସନା (୩) (ପୁସ୍ତକରେ ସମୁଦ୍ର ଦର୍ଶନେ) ୯.୧୦.୧୯୦୯ ରେ ଶାନ୍ତି ବାସନା (୪) (ପୁସ୍ତକରେ ସମୁଦ୍ର ପ୍ରତି-୧) ୧୬.୧୦.୧୯୦୯ ରେ ଶାନ୍ତି ବାସନା (୫)(ପୁସ୍ତକରେ ସମୁଦ୍ର ପ୍ରତି-୨) ୩୦.୧୦.୧୯୦୯ରେ ଶାନ୍ତି ବାସନା (୬) (ପୁସ୍ତକରେ ବ୍ରାହ୍ମୀନଦୀ ପ୍ରତି-୧) ୬.୧୧.୧୯୦୯ରେ ଶାନ୍ତି ବାସନା (୭)(ପୁସ୍ତକରେ ବ୍ରାହ୍ମୀନଦୀ ପ୍ରତି-୨) ୧୩.୧୧.୧୯୦୯ରେ ଶାନ୍ତି ବାସନା (୮) (ପୁସ୍ତକରେ ବ୍ରାହ୍ମୀନଦୀ ପ୍ରତି-୩) ୩୧.୧୨-୧୦ରେ ଶାନ୍ତି ବାସନା (୧୦) (ପୁସ୍ତକରେ କୋକିଳ ପ୍ରତି) ୧.୪.୧୧ରେ ଶାନ୍ତି ବାସନା (୧୧) (ପୁସ୍ତକରେ ବାସନ୍ତୀ ଅମାବାସ୍ୟା) ପ୍ରକାଶିତ ହୋଇ ଅପୂର୍ବ ପାଠକୀୟତା ଅର୍ଜନ କରିଥିଲା । ଏ କବିତା ଗୁଡିକରେ କବିଙ୍କ ଅନଶ୍ୱର ଲିପ୍ସା ବେଶ୍ ରୋମାଞ୍ଚକର । ପ୍ରକୃତି ପ୍ରତି କବିଙ୍କର ଦୃଷ୍ଟିଭଙ୍ଗୀ ଓ ଶାନ୍ତି ଯାଚଞ୍ଚା ଅତୁଳନୀୟ ।

ମୟୂରପ୍ରତି "ମହାପ୍ରେମେ କେକି ! ତୁହି ଯେଉଁ ବ୍ରତଚାରୀ :

ସେ ମହାବିଭବେ କେହ୍ନେ ହେବି ଅଧିକାରୀ ।

କ୍ଷୁଦ୍ରବୃତି କାରାବାସେ ରୁଦ୍ଧମୋର ମନ

କାହିଁଗଲେ ଲଭିବି ମୁଁ ଶାନ୍ତି-ନିକେତନ ।" *(୧୧୪)*

ନଳିନୀ ପ୍ରତି-"ଏ ଭବ ସାଗରେ ମୋର ପଙ୍କିଳ ଜୀବନ

କାହିଁଗଲେ ଲଭିବି ମୁଁ ଶାନ୍ତି-ନିକେତନ ।" *(୧୧୫)*

ହରିହର ମହାପାତ୍ରଙ୍କ ଶାନ୍ତିବାସନାକୁ ଉପଲକ୍ଷ୍ୟ କରି ବୃନ୍ଦାବନ ନାଥ ଶର୍ମା ହିତୈଷିଣୀର 'କିପାଁ ଲୋଡୁ ଶାନ୍ତି' ଶୀର୍ଷକ କବିତା ରଚନା କରନ୍ତି-

"କି ଉଦ୍ଦେଶେ, କି କାରଣେ ଅଶାନ୍ତି ମାନବ

ଲୋଡୁରେ ଶାନ୍ତି ବାସନା ! ବିସର୍ଜି ବିଭବ

କାମ କ୍ରୋଧ ହିଂସା ଗର୍ବ ବନ୍ଧୁ ସଦାମନେ

ନ ଦେଖୁ ଅନିତ୍ୟଭାବ ଅପୂର୍ଣ୍ଣ ଜୀବନେ

x x x x x x x x

କାମ କ୍ରୋଧ ହିଂସା ଅହଂଭାବ ବନ୍ଧୁମନେ

ତୁ କିରେ ଆଶ୍ରିବୁ କେବେ ଶାନ୍ତି ନିକେତନେ ।" *(୧୧୬)*

ଏ ସମସ୍ତ କବିତା ବ୍ୟତୀତ ହିତୈଷିଣୀ ୨୩.୧୦.୧୯୦୯ ରେ ମକ୍ଷିକା ପ୍ରତି, ୧୯.୩.୧୦ରେ ବସନ୍ତ ନିବାସ, ୩୦.୬.୧୦ ଓ ୩.୯.୧୦ରେ ବିସ୍ମୃତିର ପରିଣାମ, ୩.୧୨.୧୦ରେ ରବି ବର୍ମାଙ୍କ ଅଜବିଳାପ ଚିତ୍ରପ୍ରତି (ଶାନ୍ତିଭିକ୍ଷା ପୁସ୍ତକରେ ଭବିତବ୍ୟର

ବିଚିତ୍ରତା) ୨୩.୧୨.୧୯୧୧ରେ ଅଭିଷେକୋତ୍ସବ ଉପଲକ୍ଷେ, ୨୯.୬.୧୨ରେ ପ୍ରାବୃଟ କୋକିଳ, ୨୫.୧୦.୧୩ ରେ ଶ୍ରଦ୍ଧା ସମ୍ଭାଷଣ, ୬.୭.୧୮ରେ ସାକାର ଉପାସନାରେ ବିରାଟ ସତ୍ତା, ୧୦.୮.୧୮ରେ ସାକାର ଉପାସନାରେ ବିରାଟ ସତ୍ତା କବିତାର ଖେଦୋକ୍ତି ପ୍ରଭୃତି କବିତା ପ୍ରକାଶିତ ।

ହରିହର ମହାପାତ୍ର ଜଣେ ଆୟୁର୍ବେଦ ଚିକିତ୍ସକ । ୧୯୧୮ରେ ବାମଣ୍ଡାରେ ସମରଜ୍ୱର (Influenza) ଉତ୍କଟ ରୂପେ ବ୍ୟାପିଥିଲା । ଏ ଦୁଃସମୟରେ ଜଣେ ଦେଶ ପ୍ରେମୀ କବିରାଜ ରୂପେ ସେ ରୋଗୀଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କ ସେବା ଯୋଗୁଁ ସେ ରାଜାଙ୍କ ଦ୍ୱାରା ପୁରସ୍କୃତ ହୋଇଥିଲେ । *(୧୧୭)* ଏ ସବୁ ପୃଷ୍ଠଭୂମିକୁ ଆଧାର କରି ସେ 'ମରୁରାଜ ବିଜୟ' ନାଟକ ଓ 'ପ୍ରତିଭା ମୁକୁର' କାବ୍ୟ ରଚନା କରିଥିଲେ । ହିତୈଷିଣୀ ୨୩.୯.୧୯୦୯ରୁ ଆୟୁର୍ବେଦ ଉପରେ ତାଙ୍କର ଏକ ଉଚ୍ଚକୋଟୀର ନିବନ୍ଧ କ୍ରମଶାଃକାରେ ପ୍ରକାଶ ଲଭିଥିଲା । ୧୯୧୦ ହିତୈଷିଣୀରେ 'ବସନ୍ତ ନିବାସ' ଉପରେ ଧାରାବାହିକ ପ୍ରବନ୍ଧ ପ୍ରକାଶିତ ।

ପ୍ରକୃତି ବର୍ଣ୍ଣନାରୁ ଉଦ୍‌ଭୁତ ତାଙ୍କ କବିତା ଜୀବନର ବହୁମୁଖୀନତାକୁ ପ୍ରକାଶ କରିଛି । ଜାତୀୟ-ଚେତନା ଓ ଉତ୍କଳୀୟ ପ୍ରୀତିରେ ତାଙ୍କ କବିତା ରସସିକ୍ତ । ରାଧାନାଥ ଯୁଗୀୟ ଏକ ପ୍ରାଣବାନ, ସମର୍ଥ ଓ ସତ୍ୟନିଷ୍ଠ କାବ୍ୟସ୍ୱର ରୂପେ ହରିହର ମହାପାତ୍ରଙ୍କ କାବ୍ୟ ଅବଦାନକୁ ଗ୍ରହଣ କରାଯାଇପାରେ । (୧୧୮)

## ୧୩ : ଲିଙ୍ଗରାଜ ପାଣିଗ୍ରାହୀ (୧୮୯୪-୧୯୫୭) :

ଲିଙ୍ଗରାଜ ପାଣିଗ୍ରାହୀ ଜଣେ ଜୀବନବାଦୀ କବି । ତାଙ୍କର ଜୀବନକାଳ ସର୍ଜନାତ୍ମକ ସାହିତ୍ୟ ସୃଷ୍ଟି ପାଇଁ ଉତ୍ସର୍ଗୀକୃତ । ଜୀବନ ପ୍ରତି, ଜାତିପ୍ରତି ଏବଂ ମାଟି ପ୍ରତି ତାଙ୍କ ସ୍ୱର ସମର୍ପିତ । କେବଳ ତୁଚ୍ଛା ଆଦର୍ଶବାଦ ନୁହେଁ ବରଂ କଳାତ୍ମକ ଉତ୍କର୍ଷତାକୁ ମଧ ତାଙ୍କର ସୃଷ୍ଟି ବରଣ କରି ନେଇଛି । ହିତୈଷିଣୀର ସଂପାଦନାରେ ଦୀର୍ଘଦିନ ସେ ସହାୟତା କରିଥିଲେ । ହିତୈଷିଣୀ ଅନ୍ତରାଳରେ ତାଙ୍କର ସୃଷ୍ଟିକର୍ମ ସୁନିୟନ୍ତ୍ରିତ ହୋଇଥିଲା । ସେ ଏକାଧାରାରେ ଥିଲେ କବି, କଳାକାର, ନାଟ୍ୟକାର ଏବଂ ବ୍ୟଙ୍ଗ ରଚକ । ସେ ଯାହା କହିବାକୁ ଚାହୁଁଥିଲେ ତାହା ସ୍ପଷ୍ଟ, ନିର୍ଭୀକ ଭାବେ ପରିବେଷଣ କରୁଥିଲେ । ପରାଧୀନ ଗଡଜାତ ବାସିନ୍ଦା ହୋଇ ନିଷ୍ପେଷିତ ମାନବର ଆଶା-ଆକାଂକ୍ଷାକୁ ନିର୍ଦ୍ଦିଷ୍ଟ ରୂପଦେବାରେ ତାଙ୍କର ସାରସ୍ୱତ କର୍ମ ଅଭିପ୍ରେତ । ବ୍ୟଙ୍ଗ ଛଳରେ ଶାସକର କୁଶାସନକୁ ସମାଲୋଚନା କରିବାକୁ ସେ ପଛାଇ ନଥିଲେ ।

ଲିଙ୍ଗରାଜ ହିତୈଷିଣୀର ଜଣେ ପ୍ରଧାନ କବି । ୧୯୧୧ରୁ ଶେଷ ପର୍ଯ୍ୟନ୍ତ ହିତୈଷିଣୀର ଅନେକ ସଂଖ୍ୟାରେ ତାଙ୍କର ରଚନା ପ୍ରକାଶିତ । ''ଶୀତାଗମେ କୌଣସି ପୁଷ୍ପପ୍ରତି'' ହିତୈଷିଣୀରେ ତାଙ୍କର ପ୍ରଥମ କବିତା । ଏ କବିତା ଏକ ବିରାଟ ସମ୍ଭାବନାର ସୂଚନା ଦିଏ ।

"ସୁମନ ! ଦେଖିଥିଲି ମୁଁ ଉପବନେ
ପ୍ରଫୁଲ୍ଲ ମନ ତୋର ବୃନ୍ତ ଆସନେ
ହରଷେ ହସ ହସ ଥିଲା ବଦନ
ଏକେତ ସୌମ୍ୟ ମୂର୍ତ୍ତି ଶୋଭା ସଦନ
ତୋ ଦେହୁଁ ଗନ୍ଧବହ ସୁଗନ୍ଧ ବହି"
ସୁଗନ୍ଧ ମୟ କରୁଥିଲା ଏ ମହୀ (୧୧୯)

ପ୍ରଥମ କବିତାରୁ ସଂସାର ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ବାସ୍ତବ ମୁଖୀ ହୋଇଛି ।

ହୋଇଲେ ଜରାରୂପ ଶିଶିରାଗମ
ମଳିନ ହେବି ସିନା ତୋହରି ସମ
ଆତ୍ମୀୟ ଜନ ମୋର ଯେତେକ ଥିବେ
ଅଳି ପରାଏ ମୋତେ ସର୍ବେ ତେଜିବେ
ଜାଣିଲି ଅଚିର ଏ ଜୀବ ଯୌବନ
କେହି ନୁହନ୍ତି କାର ଆତ୍ମୀୟ ଜନ ।" (୧୨୦)

ଏ ସ୍ୱରର ବଳିଷ୍ଠ ପ୍ରକାଶ ହିତୈଷିଣୀରେ ପ୍ରକାଶିତ ନିମ୍ନ କବିତାରୁ ମିଳିଥାଏ । ଉଷା (୨.୧୨.୧୧), କୌଣସି ବାଳ ବିଧବା ଦର୍ଶନେ (୧୩.୧.୧୨), ଗନ୍ଧର୍ବ ପୁରେ ସ୍ୱପୁତ୍ର ଦର୍ଶନେ (୧୦.୨.୧୨), ଉଦ୍‌ଯୋଗ (୨.୩.୧୨) ନିଦ୍ରା (୯.୩.୧୨), ଭାରତୀ (୧୧.୫.୧୨), ବ୍ରାହ୍ମୀତଟେ (୧.୬.୧୨), କୌଣସି ବିଳାସୀ ଯୁବକ ପ୍ରତି (୧୫.୬.୧୨), ବର୍ଷା କାଳୀନ ନଦୀ ପ୍ରତି (୧୭.୮.୧୨) ଲକ୍ଷ୍ମୀ (୧୪.୯.୧୨), ଜନନୀ (୨୮.୯.୧୨) ମୃତ ପତି ପାର୍ଶ୍ୱବର୍ତ୍ତୀନୀ ଉତ୍ତରା (୨୦.୧୨.୧୨) ବୁଢ଼ାପର୍ବତ (୭.୧୨.୧୨) ନୌକା ରୋହଣେ ବ୍ରାହ୍ମୀଗର୍ଭେ (୧୧.୧.୧୩), ବସନ୍ତ ଆଗମନେ (୮.୨.୧୩) ଦୁର୍ବଳ ମାନବ ଉଦ୍ଦେଶ୍ୟେ ପ୍ରାର୍ଥନା (୧.୩.୧୩), କାଳ (୧୭.୫.୧୩) ଆତ୍ମାଭିମାନୀ ପ୍ରତି (୨୧.୬.୧୩), ଜାଉଳତା ପ୍ରତି (୨.୮.୧୩) ଶ୍ମଶାନ ଶ୍ରେଷ୍ଠ କୁଣ୍ଡ (୬.୯.୧୩), ଯୌବନ (୪.୧୦.୧୩), ବନ୍ଧୁଶୂନ୍ୟ ଉତ୍ସବ କ୍ଷେତ୍ର (୨୩.୮.୧୩), ଦୁଃଖ ବିନା ସୁଖ ନାହିଁ (୮.୧୧.୧୩) ପୂର୍ଣ୍ଣଚନ୍ଦ୍ର (୧୭.୧.୧୪), ଜାଣିଲି ହେ ପ୍ରଭୁ (୭.୨.୧୪) ନବ ଯୁବରାଜଙ୍କ ପ୍ରତି (୭.୩.୧୪), ସଂସାରକ୍ଷେତ୍ର (୪.୭.୧୪), ଏହି କି ସାଧନା (୧୮.୭.୧୪) କ୍ଷଣପ୍ରଭା (୨୪.୮.୧୪), ପର୍ବତ ଭ୍ରମଣେ (୨୮.୧୧.୧୪), ନିରୁପାୟେ-ଅଭିମନ୍ୟୁ (୨୭.୩.୧୫), କୌଣସି ବିହଙ୍ଗ ପ୍ରତି (୨୨.୫.୧୫) ଦୁର୍ଭାବନା (୧୦.୭.୧୫), ନବୀନ ବର୍ଷ (୧୦.୯.୧୭) ସୁଖର ବସନ୍ତ କାଳ ଦୁଃଖ, ସୁଖର ସମତା (୨୫.୫.୧୮), ମର୍ତ୍ତ୍ୟର ପ୍ରବାସେ ସର୍ବ ପ୍ରଥମ ଦିବସ (୧.୬.୧୮) ଅଭିଳାଷ (୨୪.୮.୧୮, ୩୧.୮.୧୮,

୧୪.୯.୧୮) କାକ ଓ କୋକିଳ (୨୧.୯.୧୮), ଖେଦ (୨୮.୯.୧୮.) ହିତୈଷିଣୀର ନବବର୍ଷ (୨୬.୧୦.୧୮), ବନ୍ଦିନୀ ସୀତା (୭.୧୨.୧୮) ମୋର କଥା (୧୧.୧.୧୯) ନାନ୍ୟଗତିଃ (୨୨.୩.୧୯) ଶ୍ୱାନ ଓ ମୃଚ୍ଛ (୫.୪.୧୯), ଦୁର୍ଭିକ୍ଷକାଳ (୧୦.୫.୧୯), ଆମୂଳ ଠାକରା (୨୧.୬.୧୯) ଆୟଚିଏ (୧୯.୭.୧୯) କମଳିନୀ (୨.୮.୧୯) ବ୍ରାହ୍ମୀ କାବ୍ୟ (୧୬.୮.୧୯, ୩୦.୮.୧୯) ବିଷାଦ ବାଣୀ (୯.୧୧.୧୯,) ଅର୍ଜୁନ ଓ ଉର୍ବଶୀ (୧୫.୧୧.୧୯) ଅର୍ଥଲୋଲୁପର ଚୈତନ୍ୟୋଦୟ (୩୧.୧.୨୦) ପାଗଳର ପାଛଶାଳା ଅନ୍ୱେଷଣ (୭.୨.୨୦), ସୁଖର ବସନ୍ତ କାଳ (୨.୪.୨୦), ଦିଅ (୮.୫.୨୦), ଉଚିତ (୨୨.୫.୨୦) ଆଗକୁହା ଭାଇ (୨୯.୫.୨୦) ଉଭୟର ଜିଗୀଷା ନିରୀହର ସର୍ବନାଶ (୧୨.୬.୨୦) ରୋଗଶଯ୍ୟାରେ (୪.୨.୨୦), ସାଧାରଣତଃ (୪.୯.୨୦), ମଙ୍ଗଳ ସଙ୍ଗୀତ (୬.୫.୨୨), ବାଦଶାହୀ-ପ୍ରଶ୍ନ (୧.୭.୨୨), କୁକୁର ପାରେକି ଛାଡ଼ି (୧୫.୭.୨୨ରୁ ୨୧.୧୦.୨୨) ନ୍ୟାୟର ସେବକ (୨୯.୭.୨୨), ପେଟୁ ଜନାର୍ଦ୍ଦନର ସ୍ୱପ୍ନ (୪.୧୧.୨୨) ପ୍ରଭୃତି କାବ୍ୟକବିତା ହିତୈଷିଣୀରେ ପ୍ରକାଶ ପାଇଥିଲା । ଏ କବିତା ଗୁଡିକ ଲିଙ୍ଗରାଜଙ୍କ ବିଭିନ୍ନ ସଂକଳନରେ ପତ୍ରସ୍ଥ ହୋଇଥିଲା ।

ଲିଙ୍ଗରାଜଙ୍କ ସଂକଳନ ମଧ୍ୟରେ ପୁଷ୍ପାଞ୍ଜଳି (୧୯୧୫), କଳିକାଞ୍ଜଳି (୧୯୧୯), ନଡ଼ିଆ ପଇତା (୧୯୧୯), ବିଲୁଆଡି ପତ୍ର (୧୯୨୨), ଅମୃତେବିଷ (୧୯୨୪) ପ୍ରଭୃତି କବିତା ପୁସ୍ତକ ଓ ବାଣହରଣ (୧୯୨୬), ବସ୍ତ୍ରଦାନ (୧୯୨୭), କୃଷ୍ଣଜନ୍ମ ନାଟକ ପୁସ୍ତକ ପ୍ରଧାନ ।

ହିତୈଷିଣୀରେ ଲିଙ୍ଗରାଜଙ୍କ ଅନେକ ଗଦ୍ୟରଚନା ମଧ୍ୟ ପ୍ରକାଶିତ । ଏ ଭିତରୁ ଶିକ୍ଷା (୧୪.୧୨.୧୨) ସନ୍ତୋଷ (୧୬.୮.୧୩) ଭାଗବତ କୋଠି (୨୯.୧୧.୧୩) ଅପବ୍ୟୟର ଫଳ (୨୦.୧୨.୧୩) ବର୍ତ୍ତମାନ ଯୁଗ (୧୭.୧.୧୪) ଗଡଜାତ ଅଞ୍ଚଳରେ ଉଚଶିକ୍ଷାର ଅଭାବ କାହିଁକି ? (୧୫.୫.୨୦), ମାନହାନୀ (୨୨.୫.୨୦) ଲୋକାଚାର ସମନ୍ଧେ ବିବେକାନନ୍ଦଙ୍କ ଉକ୍ତି (୧୨.୪.୧୯) ମୁକ୍ତି ଓ ସ୍ୱାମୀ ବିବେକାନନ୍ଦ (୧୦.୫.୧୯) ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ତତ୍‌କାଳୀନ ସମୟ ତଥା ଯୁଗରୁଚି ସହିତ ତାଳ ଦେଇ ଚାଲିବାକୁ ଲିଙ୍ଗରାଜ ରାଧାନାଥୀ ଛନ୍ଦ ଏବଂ ଶୈଳୀ ସହିତ ସୃଷ୍ଟି କୌଶଳକୁ ଆହରଣ କରି ନିଜର କାବ୍ୟରୂପକୁ ପ୍ରକାଶ କରିଛନ୍ତି । କୁରୁଚି ଓ କୁସଂସ୍କାର ବିରୁଦ୍ଧରେ କବି ସ୍ୱର ଉତ୍ତୋଳନ କରିଛନ୍ତି । ଜୀବନ ପ୍ରତି ଏକ ଦାର୍ଶନିକ ଦୃଷ୍ଟିଭଙ୍ଗୀ ପରିବର୍ତ୍ତେ ଏକ ମମତାମୟୀ ସ୍ନିଗ୍ଧ ଚାହିଁଣୀରେ ଆବିଷ୍କାର କରିଛନ୍ତି ମଣିଷର ଦୁର୍ଗତିକୁ । ଅନେକତ୍ର କବି ଶ୍ଳେଷୋକ୍ତି ଓ ବ୍ୟଙ୍ଗ ସାହାଯ୍ୟରେ ଏ ସମାଜର ପ୍ରତ୍ୟେକ ସ୍ତରକୁ ଟନ ଟନ କରି ବିଶ୍ଳେଷଣ କରିଛନ୍ତି । ଏ ପ୍ରସଙ୍ଗରେ "ନକଲ ନବାସ" ଛଦ୍ମନାମରେ

ହିତୈଷିଣୀରେ ପ୍ରକାଶିତ କେତେକ କବିତା ବା 'ବିଜୁଆତି ପତ୍ର' ଓ 'ନଡ଼ିଆ ପଇତ୍ର' ସଂକଳନକୁ ସ୍ମରଣ କରାଯାଇପାରେ ।

ରାଧାନାଥ ଯୁଗୀୟ ଜଣେ ପ୍ରତିଶ୍ରୁତି ପୂର୍ଣ୍ଣ କାବ୍ୟରଥି ରୂପେ ଲିଙ୍ଗରାଜଙ୍କୁ ମୂଲ୍ୟାୟନ କରାଯାଇପାରେ । କାବ୍ୟଲିଖନର ସହଜାତ ପ୍ରବୃତ୍ତି ନେଇ ସେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆବିର୍ଭୂତ ହୋଇଥିଲେ ।

## ୧୪: ଲାଲା ରାମନାରାୟଣ ରାୟ (— - ୧୮୯୬) :

ବିଜୁଳି-ଇନ୍ଦ୍ରଧନୁ କଳହର ସୂତ୍ରପାତ କରିଥିବା ରାମନାରାୟଣ ରାୟଙ୍କ ସାରସ୍ୱତ କୃତିତ୍ୱର ଉପଯୁକ୍ତ ମୂଲ୍ୟାୟନ ହୋଇନାହିଁ । କବି ଉପେନ୍ଦ୍ରଭଞ୍ଜ ଆଲୋଚନା ରଚନା କରି ସେ ଓଡ଼ିଆ ସାହିତ୍ୟରେ ବିସ୍ଫୋରଣ ସୃଷ୍ଟି କରିଥିଲେ । ବିଜୁଳି-ଇନ୍ଦ୍ରଧନୁ କଳହ ସମୟରେ ଭଞ୍ଜ ସାହିତ୍ୟକୁ ନେଇ ତାଙ୍କର ଅନେକ ରଚନା ହିତୈଷିଣୀରେ ପ୍ରକାଶ ପାଇଥିଲା । ପ୍ରଭାରେ ପ୍ରକାଶିତ 'କବି ଉପେନ୍ଦ୍ରଭଞ୍ଜ' ଆଲୋଚନାର ପ୍ରତିବାଦ ଉତ୍କଳ ଦୀପିକାରେ ଗୋଲକଧନ୍ଦା କରିଥିଲେ । ତାର ପ୍ରତ୍ୟୁତ୍ତର ହିତୈଷିଣୀ ପୃଷ୍ଠାରେ ଦେଇଥିଲେ ରାମ ନାରାୟଣ । ପରେ ପରେ ବିଜୁଳିରେ ମଧ ଭଞ୍ଜ ବିରୋଧୀ ଅନେକ ଆଲୋଚନା ତାଙ୍କର ପ୍ରକାଶ ପାଇଥିବାର ଜଣାପଡେ । ଭଞ୍ଜୀୟ ଆଲୋଚନା ସମୟେ ସେ ଯେଉଁ ସମାଲୋଚନାର ଧାରା ପିଟାଇଲେ ତା ଉପରେ ଗଢ଼ିଉଠିଲା ଆଧୁନିକ ସମାଲୋଚନା ସାହିତ୍ୟ ।

ହିତୈଷିଣୀରେ ତାଙ୍କର 'ମିତ୍ରାକ୍ଷର' ଓ 'ଦେଶୀୟ ଭାଷା' ଦୁଇଟି ଉପାଦେୟ ଆଲୋଚନା ପ୍ରକାଶ ପାଇଥିଲା । ଏତଦ୍ ବ୍ୟତୀତ ସୁଢ଼ଳ ଦେବଙ୍କ ରଚିତ ଚିତ୍ରୋତ୍ପଳା କାବ୍ୟର ସମାଲୋଚନା ତାଙ୍କର ପାଣ୍ଡିତ୍ୟ ଓ ମନନଶୀଳ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରେ । ଚିତ୍ରୋତ୍ପଳା ସମାଲୋଚନାରେ ରାମନାରାୟଣଙ୍କ ନିରପେକ୍ଷ ମୂଲ୍ୟାୟନ ପାଠକୀୟ ସଂବେଦନା ଆକର୍ଷଣ କରିଛି । ଭଞ୍ଜୀୟ ଦୋଷ ଦର୍ଶନରେ କୃତବିଦ୍ୟ ରାମନାରାୟଣ ଆଧୁନିକ ସାହିତ୍ୟର ପ୍ରବକ୍ତା ସୁଢ଼ଳଦେବଙ୍କ କେବଳ ପ୍ରଶଂସା କରିନାହାଁନ୍ତି ବରଂ କାବ୍ୟର ଦୋଷଗୁଣ ପ୍ରଦର୍ଶନ କରିଛନ୍ତି । ମାତୃ ସାହିତ୍ୟ ବନ୍ଦନାରେ ରାଜକବି ସୁଢ଼ଳ ଦେବଙ୍କ କୃତିତ୍ୱକୁ ରାମନାରାୟଣ ସ୍ୱାଗତ କରିଛନ୍ତି । ଅନ୍ୟପକ୍ଷରେ କାବ୍ୟର ସ୍ଥାନେ ସ୍ଥାନେ ଥିବା କ୍ଲିଷ୍ଟତା, ପ୍ରସାଦଗୁଣର ଖର୍ବତା, ଅଯଥା ଶବ୍ଦ ବିନ୍ୟାସକୁ ସେ ସମାଲୋଚନା କରିଛନ୍ତି । *(୧୨୧)*

'ମିତ୍ରାକ୍ଷର' ପ୍ରବନ୍ଧରେ ମିତ୍ରାକ୍ଷରକୁ ପୂର୍ଣ୍ଣମିତ୍ରାକ୍ଷର, ପୂର୍ଣ୍ଣମିତ୍ରାକ୍ଷରାଭାସ, ଅପୂର୍ଣ୍ଣ ମିତ୍ରାକ୍ଷର, ଅପୂର୍ଣ୍ଣ ମିତ୍ରାକ୍ଷରାଭାସ ରୂପେ ଚାରିଭାଗରେ ବିଭକ୍ତ କରାଯାଇଛି । ଅନ୍ତ୍ୟବର୍ଣ୍ଣ ଓ ଉପାନ୍ତ୍ୟ ସ୍ୱରର ସଂପୂର୍ଣ୍ଣ ସମତା ରକ୍ଷିତ ହେଲେ ପୂର୍ଣ୍ଣ ମିତ୍ରାକ୍ଷର ହୁଏ ବୋଲି ସେ ଘୋଷଣା କରିଛନ୍ତି । *(୧୨୨)* ଶ୍ରୀ ସମାଲୋଚକ ବାମଣ୍ଡା ମିତ୍ରାକ୍ଷରର ସମାଲୋଚନାରେ ରାମ ନାରାୟଣଙ୍କ ମତକୁ ଆଗ୍ରାହ୍ୟ କରିଛନ୍ତି । *(୧୨୩)*

'ଦେଶୀୟ ଭାଷା' ରାମ ନାରାୟଣଙ୍କ ଏକ ଦୀର୍ଘ ପ୍ରବନ୍ଧ । ଏହା କ୍ରମଶଃ ଭାବେ ହିତୈଷିଣୀର ୪.୯.୧୮୯୪ ରୁ ଆରମ୍ଭ ହୋଇ ୧୮.୯.୯୪ ରେ ସମାପ୍ତ ହୋଇଛି । ଏଥିରେ ଦେଶୀୟ ଭାଷାର ଉତ୍ପତ୍ତି ଓ କ୍ରମ ବିକାଶର ସବିଶେଷ ଆଲୋଚନା କରାଯାଇଛି ।

ଲାଲା ରାମନାରାୟଣ ରାୟ କଟକ ରେଭେନ୍ସା ବାଳିକା ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥାଇ ଜୁନ-୨୨-୧୮୯୬ ରାତ୍ର ୨ଟାରେ ଇହଧାମ ତ୍ୟାଗ କଲେ । *(୧୨୪)* ତାଙ୍କରି ମୃତ୍ୟୁରେ ତାଙ୍କର ସାରସ୍ୱତ କୃତିତ୍ୱର ସ୍ମୃତିଚାରଣ କରିଛି ହିତେଷିଣୀ । ତାଙ୍କ ମୃତ୍ୟୁ ଉପଲକ୍ଷେ ସୁସାହିତ୍ୟିକ ଭାଗିରଥି ରଥ ହିତୈଷିଣୀ (୨୨.୬.୧୮୮୯) ରେ ଗାଇ ଉଠିଥିଲେ-

"କି କୁ ଯୋଗେ ଉତ୍କଳର ଘୋଟିଲା ରଜନୀ
ଲାଲା ରାମ ନାରାୟଣ ତେଜିଲେ ଅବନୀ
ଅକାଳେ ଉତ୍କଳ ସର୍ଗୁ ଲେଖକ କମଳ
ନିର୍ବିବେକ-କାଳ-କରୀ କଲାରେ କବଳ ।"

ରାମ ନାରାୟଣ ଜଣେ ଉପଯୁକ୍ତ ଶିକ୍ଷକ ଓ ନିରପେକ୍ଷ ସମାଲୋଚକ ଥିଲେ । ତାଙ୍କର 'ଶକ୍ତି' ପ୍ରବନ୍ଧ ମଧୁରାଓଙ୍କ ପ୍ରବନ୍ଧମାଳା ତୁଲ୍ୟ ଉଚ୍ଚକୋଟୀର ପ୍ରବନ୍ଧ । ସେ ଗୋଟିଏ ଅମିତ୍ରାକ୍ଷର କାବ୍ୟ ରଚନା କରିଥିଲେ । *(୧୨୫)*

ଲାଲା ରାମନାରାୟଣଙ୍କ କୃତିର ସାମଗ୍ରିକ ଅଧ୍ୟୟନ ଫଳରେ ତାଙ୍କ ପ୍ରତିଭାର ପ୍ରକୃଷ୍ଟ ମୂଲ୍ୟାୟନ କରାଯାଇ ପାରିବ ।

## ୧୫: ସୁଲୋଚନା ଦେଈ (୧୮୯୫-୧୯୪୭) :

ବିଂଶ ଶତାବ୍ଦୀର ପ୍ରଥମ ପାଦରେ ବିଶେଷ ସର୍ଜନାତ୍ମକ ପ୍ରତିଭା ନେଇ ସୁଲୋଚନା ଦେଈଙ୍କ ଆବିର୍ଭାବ ଘଟେ । ସାହିତ୍ୟିକ ପିତା ଦୀନବନ୍ଧୁ ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ ଶୈଶବ ସାହିତ୍ୟିକ ଅଭିରୁଚିରେ ଗଢ଼ିଉଠେ । ହିତୈଷିଣୀର ଗଦା ଗଦା ପ୍ରାଚୀନ ସଂଖ୍ୟା,ଓଡ଼ିଆ, ବଙ୍ଗଳା, ଇଂରାଜୀ, ସଂସ୍କୃତ ପୁସ୍ତକର ସ୍ତୂପ, ଉତ୍କଳ ସାହିତ୍ୟ, ଉତ୍କଳ ଦୀପିକା, ଉତ୍କଳ ମଧୁପର ବାଲିଘର ଭିତରେ ସୁଲୋଚନାଙ୍କ ଶୈଶବ ସ୍ୱପ୍ନିଳ ହୋଇ ଉଠିଥିଲା । ଏମିତି ଏକ ପୃଷ୍ଠଭୂମି ଏ ନାରୀ କବିଙ୍କର ସୃଷ୍ଟିକୁ କରିଥିଲା ସ୍ୱାଭାବିକ ଓ ଆବେଗପୂର୍ଣ୍ଣ । ପିତୃ ଗୃହର ସ୍ନେହ, ଶାଶୁଘରର ଲଞ୍ଛନା ଏବଂ ଅପରିଣତ ବୟସର ବୈଧବ୍ୟ ଯନ୍ତ୍ରଣା ତାଙ୍କର କବିତ୍ୱକୁ ପ୍ରଭାବିତ କରିଥିଲା । କରୁଣାତ୍ମକ ପ୍ରେକ୍ଷାପଟରେ ଦୁଃଖ ଓ ହତାଶାର ବାଣୀ ଆଧ୍ୟାତ୍ମିକତା ଆଡକୁ ଦୃଷ୍ଟି ଫେରାଇଛି । ପ୍ରକୃତିର ପ୍ରତିଟି ସୌନ୍ଦର୍ଯ୍ୟ ଅନ୍ତରାଳରେ ବିଷାଦର ଏକ ଘନଛାୟା ତାଙ୍କର ଦୃଷ୍ଟିଭଙ୍ଗୀକୁ ଦାର୍ଶନିକ ସୁଲଭ କରି ଗଢ଼ିଛି । ପ୍ରତିଟି କବିତା ଜୀବନ ବୈଚିତ୍ର୍ୟରେ ପରିପୂର୍ଣ୍ଣ । ସେ ଜଣେ ନାଟ୍ୟକାର ଓ ପ୍ରାବନ୍ଧିକ ମଧ୍ୟ । କିନ୍ତୁ କବିତ୍ୱର ପ୍ରସିଦ୍ଧି ତାଙ୍କର ନାଟ୍ୟ ପ୍ରତିଭା ବା ପ୍ରାବନ୍ଧିକ କୃତିତ୍ୱକୁ ଘୋଡାଇ ପକାଇଛି । ତାଙ୍କର ପ୍ରାଣବାନ କବିତାର ଧାରା ଓଡ଼ିଆ ସାହିତ୍ୟକୁ ସୁରଭିଯୁକ୍ତ ଓ ଆହ୍ଲାଦିତ କରିଅଛି ।

ସୁଲୋଚନାଙ୍କର କୃତି ମଧ୍ୟରେ ''ଅବକାଶ ମଞ୍ଜରୀ (ଗଦ୍ୟପଦ୍ୟ ସଂକଳନ ୧୯୧୪), ପଦ୍ମିନୀ (କାବ୍ୟ-୧୯୨୭) ତିର ବିକାଶ (ଗଦ୍ୟପଦ୍ୟ ସଂକଳନ-୧୯୨୭), ସାବିତ୍ରୀ (ନାଟକ ୧୯୨୮) ବଣମଲ୍ଲୀ (କବିତା-୧୯୩୧), ଦମୟନ୍ତୀ (ଗଦ୍ୟ-୧୯୩୦) ସେକ୍ସପିଅର (ସେକ୍ସପିଅରଙ୍କ ପାଞ୍ଚଟି ନାଟକର ସଂକ୍ଷିପ୍ତ ଗଳ୍ପାନୁବାଦ-୧୯୩୩), ସଂସାରଚିତ୍ର (ନାଟକ-ଅପ୍ରକାଶିତ ସଂପ୍ରତି ଗ୍ରନ୍ଥାବଳୀରେ ପତ୍ରସ୍ଥ) ପ୍ରଭୃତି ପ୍ରଧାନ ।

ସୁଲୋଚନାଙ୍କ କବିତାରେ କରୁଣ ସ୍ୱର ସୁରକ୍ଷିତ । ବିଭୁପ୍ରେମ ଓ ଆଧ୍ୟାତ୍ମିକ ଚେତନା ଏ ଗୁଡିକର ମୂଳମନ୍ତ୍ର । ତାଙ୍କର ସୃଷ୍ଟି ପ୍ରବଣ ସତ୍ତାଟି ସର୍ବତୋଭାବେ ଆଶା, ନିରାଶା, ସ୍ୱପ୍ନ ଓ ବାସ୍ତବତାର ଦ୍ୱନ୍ଦ୍ୱାତ୍ମକ ପରିବେଶ ଦ୍ୱାରା ଆନ୍ଦୋଳିତ । ତାଙ୍କର କରୁଣତା ମଧ୍ୟରେ ଭୂମାର ଅମୃତ ଅନ୍ୱେଷଣ ଓ ଶାଶ୍ୱତ ଚେତନା ସମାହିତ ।

ସୁଲୋଚନାଙ୍କ ରଚନା ହିତୈଷିଣୀର ୧୯୧୧ ପରବର୍ତ୍ତୀ ପ୍ରତିଟି ସଂଖ୍ୟାରେ ପ୍ରକାଶିତ । ୭.୧.୧୧ ସଂଖ୍ୟାର 'ଦୟା' ତାଙ୍କର ପ୍ରଥମ ପ୍ରକାଶିତ କବିତାର ମାନ୍ୟତା ଦାବୀକରେ ।

''ବିତର ବିମଳ ପ୍ରଭା ଅୟି, ସ୍ମିତାନନେ ?
ପ୍ରକାଶେ ଚପଳା ସତ୍ୟ ଶ୍ୟାମଳ ଜଳଦେ,
ମାତ୍ର ଅଳ୍ପ କ୍ଷଣସ୍ଥାୟୀ ତାର ତୀକ୍ଷ୍ଣ ଜ୍ୟୋତିଃ
କିନ୍ତୁ ତବ ସମୁଜ୍ଜ୍ୱଳ ତନୁ-ଜାତ-କାନ୍ତି ।'' *(୧୨୬)*

ଏ ଦୃପ୍ତସ୍ୱର ଆହୁରି ରସଘନ ହୋଇଛି ପରବର୍ତ୍ତୀ ପର୍ଯ୍ୟାୟରେ । କବିତାର ଏକ ପୁଲକିତ ବ୍ୟାପ୍ତି ସୁଲୋଚନାଙ୍କ କବିତାକୁ ସର୍ବଜନୀନ ରସ ଆବେଦନକ୍ଷମ କରିଛି । ହିତୈଷିଣୀରେ ତାଙ୍କର ନିମ୍ନ ରଚନା ଗୁଡିକ ପ୍ରକାଶିତ । ମାନବର ସ୍ୱଭାବ (୨୧.୧.୧୧), ଈଶ୍ୱର ପ୍ରତି ଅନୁରାଗ (୧୯.୪.୧୧) ଜୟ ଜଗଦୀଶ ବୋଲରେ ବଦନ (୨୨.୪.୧୧) ବର୍ଷା (୧.୭.୧୧), ମାତା (ଗଦ୍ୟ-୨୯.୭.୧୧), ସରସ୍ୱତୀ ସ୍ତବ (୫.୮.୧୧), ନଦୀପ୍ରତି (୧୯.୮.୧୧) ବାମାହିତାର୍ଥୀର ଆଶା (୨୬.୮.୧୧) କି ଦେଇ ପୂଜିବି (୨.୯.୧୧) ନୀତି ବାକ୍ୟ, କନ୍ୟାପ୍ରତି ମାତାର ୨ୟ ଉପଦେଶ (୯.୯.୧୧), ଉପବନ (୨୮.୧୦.୧୧), ଅଶାନ୍ତ ମନପ୍ରତି (୨.୧୨.୧୧), ଜାତୀୟ ସଙ୍ଗୀତ (୧୩.୧.୧୨, ୨୦.୧.୧୨), ବୁଢ଼ାରଜା (୨.୩.୧୨), ଉତ୍କଳୀୟମାନଙ୍କ ପ୍ରତି (୧୬.୩.୧୨) ବୃଷ୍ଟି ବିହୁର ଉକ୍ତି (୨୨.୬.୧୨), ସମୟ ଓ ଜୀବନ (୨୯.୬.୧୨) ସତୀ ଜୟମତୀ (ଅନୁବାଦ ୬.୭.୧୨), ବସନ୍ତ କୋକିଳ ପ୍ରତି (୧୫.୨.୧୩) ପତଙ୍ଗ ପ୍ରତି (୬.୯.୧୩), ଶରତ (୨୭.୯.୧୩), ଶିଶୁର ହାସ୍ୟ (୩.୮.୧୩) ଗୋଟିଏ ଚିତ୍ର (୨୨.୧୧.୧୩) ଶରତ ପ୍ରଭାତେ (୧୧.୧.୧୪) ବାଲ୍ୟଭୂମି (୨୭.୬.୧୪), ସୂର୍ଯ୍ୟୋଦୟ (୪.୭.୧୪), ବର୍ଷାଋତୁ (୮.୮.୧୪), ଅଶୋକ ବନରେ ସୀତା (୨୪.୮.୧୪) ଦମୟନ୍ତୀ (୧୨.୯.୧୪) ଆଶା

(୩୧.୧୦.୧୪) ନବବର୍ଷ (୨.୧.୧୫) ଶ୍ରୀମତୀ ମୃଣାଳିନୀ ଦେବୀ, ମଳୟାନିଳ (୬.୩.୧୫) ପଦ୍ମ (୧୪.୮.୧୫)ସାବିତ୍ରୀ (୧.୧୨.୧୭) ମୃତ୍ୟୁ (୮.୧୨.୧୭), ଉତ୍କଳରେ ଧନକୁରଲା (୨୮.୧୨.୧୮) ବୁଢ଼ାଗଛ (୧୯.୭.୧୯), ଅତୃପ୍ତି (୯.୮.୧୯) କିଏ ତୁ (୨୩.୮.୧୯) ବିଧବା ଦଶା (୬.୧୨.୧୯) ବିଧବାର ଆଶା (୧୩.୧୨.୧୯)ପ୍ରଭାତେ, ଅନାଥିନୀ (୧୪.୨.୨୦) ଗୃହସ୍ଥାଶ୍ରମ (୧୭.୬.୨୦) ହିନ୍ଦୁନାରୀର ଶିକ୍ଷା (୧୭୭.୨୦) ପଦ୍ମିନୀ (୨୪.୬.୨୦ ରୁ କ୍ରମାଶାଃକାରେ ପ୍ରକାଶିତ) ଗୃହିଣୀର କର୍ତ୍ତବ୍ୟ (୭.୮.୨୦, ୧୪.୮.୨୦) ପତିଭକ୍ତି (୪.୯.୨୦) ମଙ୍ଗଳ ଗୀତିକା (୬.୫.୨୨) ଫୁଲର ଭାଗ୍ୟ (୨୭.୫.୨୨), ନାରୀ ଜାତିର ଅଧିକାର (୧.୭.୨୨) ନାରୀଜାତି (୯.୧୨.୨୨) ଇତ୍ୟାଦି ।

ସୁଲୋଚନାଙ୍କର ରଚନା ସମକାଳୀନ ସାହିତ୍ୟ ସାଧକଙ୍କୁ ଆକୃଷ୍ଟ କରିଥିଲା । ତାଙ୍କର ଅବକାଶ ମଞ୍ଜରୀର ସୃଷ୍ଟି କୌଶଳ ଓ ରଚନାଗତ ଚମତ୍କାରିତାକୁ ଗଙ୍ଗାଧର, ଚିନ୍ତାମଣି, ଶଶିଭୂଷଣ ରାୟ ପ୍ରମୁଖ ଭୂୟସି ପ୍ରଶଂସା କରିଥିଲେ । *(୧୨୭)* ଭାରତୀୟ ପରଂପରା ଉପରେ ସୁଲୋଚନାଙ୍କ କାବ୍ୟ ସୌଧ ପ୍ରତିଷ୍ଠିତ । ରାଧାନାଥ ଯୁଗୀୟ ସାହିତ୍ୟ ପାଶ୍ଚାତ୍ୟ ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥିଲେ ହେଁ ଭାରତୀୟ ପାରଂପରିକ ବିଶ୍ୱାସବୋଧକୁ ସମୂଳେ ଧ୍ୱଂସ କରିପାରିନଥିଲା । ଏପରିକି ଭାବଧାରାର କଳାତ୍ମକ ସମୀକରଣ ସୁଲୋଚନା ଦେଈଙ୍କ କାବ୍ୟ କୃତିକୁ ସମୁଜ୍ଜଳ କରିଛି । ଅସହାୟ ଜୀବନଚର୍ଯ୍ୟା ମଧ୍ୟରେ ସେ ଯେଉଁ ଦିବ୍ୟାନନ୍ଦ ଲଭିଥିଲେ ତାହା ବ୍ୟଥାର ସଂଘାତ ମଧ୍ୟରେ ଅନୁରଣିତ କରାଏ ଅସୀମର ସ୍ୱର, ଆଶା ବାଦର ଝଙ୍କାର ।

## ୧୬: ଦିବ୍ୟରାଜ ସିଂହ (୧୮୯୩-୧୯୮୨) :

କବିତା ଲେଖିବାର ଅପରିସୀମ ଆଗ୍ରହ ଏବଂ ଜୀବନ ପ୍ରତି ଏକ ସିଗ୍ଧ ଦୃଷ୍ଟିଭଙ୍ଗୀ ହିଁ ଦିବ୍ୟରାଜ ସିଂହଙ୍କର ସମ୍ବଳ । ରାଧାନାଥ ଥିଲେ ତାଙ୍କର ଆଦର୍ଶ ଓ ବାମଣ୍ଡାର ସାରସ୍ୱତ ପରଂପରା ଥିଲା ତାଙ୍କର ପ୍ରେରଣା ପୀଠ । ରାଧାନାଥଙ୍କୁ ଆଦର୍ଶ ମାନି ନେଇଥିଲେ ମଧ ସଜ୍ଞାନ ଚିତ୍ତରେ ସେ ଉପଧାକୁ ଉପେକ୍ଷା କରିଥିଲେ । ଉପଧା ଏକ ଅଯଥା ଅଳଙ୍କରଣ ରୂପେ ବାମଣ୍ଡା ଆଲୋଚନାସଭାରେ ଆଲୋଚିତ ହୋଇଥିଲା । ଏଣୁ ସେ ଘୋଷଣା କରନ୍ତି, "ଆଧୁନିକ ସାହିତ୍ୟ କ୍ଷେତ୍ରରେ ଉପାଧା ପ୍ରତି ସାଧାରଣଙ୍କ ଆଦର ନ୍ୟୂନତା ଉପଲବ୍ଧି କରି ଉପଧାପତି ମୁଁ ସମୁଚିତ ଦୃଷ୍ଟି ଦେଇନାହିଁ" *(୧୨୮)*

ସାହିତ୍ୟ ସେବାକୁ ସେ ଜୀବନର ଅମୂଲ୍ୟ ସଂପଦ ରୂପେ ମନେ କରିଛନ୍ତି । ସୃଜନ କର୍ମରେ ଲିପ୍ତ ରହି ନିଜକୁ ଧନ୍ୟ ମନେ କରିଛନ୍ତି ।

"କି ଅମୂଲ୍ୟ ସୁଖ ଆହା ସାହିତ୍ୟ ସେବନେ

କି ଅବା ଉପମା ତାର ଏ ମର ଭୁବନେ
ଭାଗ୍ୟଦେବୀ ପ୍ରସାଦରେ
ଲଭିଥାନ୍ତି ଯେଉଁ ନରେ
ଅମର୍ତ୍ତ୍ୟ ଇପ୍ସିତ ସେହି ସ୍ୱର୍ଗୀୟ ରତନେ
ଧନ୍ୟ ସେହୁ ଧନ୍ୟ ତାଙ୍କ ସାଧନା ଜୀବନେ ।'' *(୧୨୯)*

ଦିବ୍ୟରାଜଙ୍କର ଏକମାତ୍ର ପ୍ରକାଶିତ କବିତା ପୁସ୍ତକ ବିକାଶ (୧୯୧୬) । ହିତୈଷିଣୀରେ ପ୍ରକାଶିତ ତେରଗୋଟି କବିତାର ଏହା ସମାହାର । ଏ କବିତା ଗୁଡିକରେ ପ୍ରକୃତି ପ୍ରାଣତା ଓ ଜାତୀୟ ଚେତନା ସମ ପରିମାଣରେ ସନ୍ନିବିଷ୍ଟ । କବିଙ୍କର ଜାତୀୟବୋଧ ସ୍ୱର ଅତି ନିବିଡ ଓ ବହୁ ବର୍ଣ୍ଣାଳୀରେ ବ୍ୟଞ୍ଜିତ । ପ୍ରେମ ଓ ପ୍ରଣୟର ଏକ ଇନ୍ଦ୍ରିୟକାତର ଚିତ୍ର ତାଙ୍କ କବିତାରେ ସହଜଲଭ୍ୟ । ଏ ପ୍ରଣୟର ସ୍ୱର କିନ୍ତୁ ପ୍ରକୃତି ଆଧାରିତ । ପ୍ରକୃତିର ଜୀବନ୍ତ ପ୍ରେମକୁ ସେ ପାର୍ଥିବ ପ୍ରେମ ରୂପେ ପ୍ରକଟିତ କରିଛନ୍ତି । ପ୍ରକୃତିର ପ୍ରତିଟି ସୌନ୍ଦର୍ଯ୍ୟ କବିଙ୍କୁ ମନ୍ତ୍ରମୁଗ୍ଧ କରିଛି । ସାହିତ୍ୟକୁ ସେ ଉଦ୍ଦେଶ୍ୟ ମୂଳକ ଭାବେ ଜାତୀୟ ଚେତନାର ଉଉରଣ ପ୍ରତି ବ୍ୟବହାର କରିଛନ୍ତି । ଆଧ୍ୟାତ୍ମିକ ଚେତନା ତାଙ୍କର ଖୁବ୍ ଗଭୀର ଭାବେ ପ୍ରତିଫଳିତ ହୁଏ । ପ୍ରକୃତିର ପ୍ରତିଟି ଦୃଶ୍ୟସଜ୍ଜାରେ ଅଦୃଶ୍ୟ ପରମ ପୁରୁଷର ସତ୍ତାକୁ କବି ଅନୁଭବିଛନ୍ତି । ବାଳବିଧବାର ଯନ୍ତ୍ରଣାରେ କବି କାତର ହୋଇଛନ୍ତି । ମାନବବାଦୀ ପ୍ରାଣ ଲହୁଲୁହାଣ ହୋଇଛି ପ୍ରତିଟି ମଣିଷର ଦୁଃଖରେ । ସୀମିତ ସୃଷ୍ଟି ଭିତରେ ଏକ ପରିଚ୍ଛନ୍ନ କାବ୍ୟ ସ୍ୱରର ନିବିଡ ଅନୁରଣନ ସିଦ୍ଧ ହୋଇଅଛି ।

ଦିବ୍ୟରାଜଙ୍କ ସମସ୍ତ କବିତା ପ୍ରାୟ ହିତୈଷିଣୀରେ ପ୍ରକାଶିତ । ପଞ୍ଚମ ଜର୍ଜଙ୍କ ଅଭିଷେକ ଉପଲକ୍ଷେ (୧୬.୧୨.୧୧) ପ୍ରାର୍ଥନା (୨୦.୧.୧୨), ଉତ୍କଳ ବନ୍ଦନା (୧୦.୨.୧୨) ତଟିନୀ ପ୍ରତି (୧୮.୫.୧୨) ପ୍ରଭାତିକ ପ୍ରାର୍ଥନା (୮.୬.୧୨), ଆକାଶପ୍ରତି (୨୧.୧୨.୧୨) ପିଞ୍ଜରାବଦ୍ଧ ବିହଙ୍ଗର ଖେଦୋକ୍ତି (୧୧.୧.୧୩) ଲଭିବି କିପରି (୧.୨.୧୩), ବନପଥେ ସାବିତ୍ରୀ ସତ୍ୟବାନ (୧୪.୪.୧୩), ସ୍ୱପ୍ନ ଦର୍ଶନେ (୧୦.୫.୧୩) ଆତ୍ମସମର୍ପଣ (୯.୮.୧୩) ନୀରବେ (୪.୧୦.୧୩) ମୋ ଦେଶେ (୨୦.୮.୧୩) ବାମଣ୍ଡା ରାଜାଙ୍କ ପୌତ୍ରଲାଭ ଉପଲକ୍ଷେ (୭.୩.୧୪), ରତ୍ନାବଳୀ ନାଟିକା (୧୬.୯.୧୪) ଆଶା ପଥେ (୨୬.୯.୧୪) ଆବାହନ ସଙ୍ଗୀତ (୨୦.୧୨.୧୯) ପ୍ରଭୃତି ରଚନା ହିତେଷିଣୀ ପୃଷ୍ଠା ମଣ୍ଡନ କରିଥିଲା ।

ଏ ସମସ୍ତ କବିତାରୁ ଏକ ଦିବ୍ୟ ପ୍ରବଣ ସ୍ରଷ୍ଟାପଣ ଉଦ୍‌ଘାଟିତ ହୁଏ ।

## ୧୭: ଦୀନବନ୍ଧୁ ଗଡନାୟକ (୧୮୭୬-୧୯୩୨) :

ଉନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗର ପୃଷ୍ଠଭୂମିରେ ଦୀନବନ୍ଧୁଙ୍କର ସାରସ୍ୱତ କୃତି ହୋଇଛି ପୁଷ୍ଟ ଓ ବିକଶିତ । ହିତୈଷିଣୀର ସଂପାଦନା ଗ୍ରହଣ

ପୂର୍ବରୁ ଓ ପରେ ମଧ ଏଅ୍ଚେ ନାଙ୍କର ଅନେକ କୃତି ପ୍ରକାଶିତ । ଓଡ଼ିଆ ସାହିତ୍ୟର ଗତିପଥକୁ ନିରୀକ୍ଷଣ କରି ପ୍ରାଦେଶିକ ସାହି ୍ୟଧାରା ତୁଳନାରେ ତାର କୃଷ୍ଟି ନିର୍ବାଚନରେ ସଂପାଦକୀୟ ଟୀପଣୀ ବାଢ଼ିଛନ୍ତି । ଏ ବିଶାଳ ପତ୍ରିକାର ସଂପାଦନାରେ ବ୍ୟସ୍ତ ରହି ମଧ ସେ ଅନେକ କାଳଜୟୀ ସୃଷ୍ଟି ଓଡିଆ ସାହିତ୍ୟକୁ ଦାନ କରିଯାଇଛନ୍ତି ।

ଦୀନବନ୍ଧୁ ଏକାଧାରାରେ ଜଣେ ପ୍ରାବନ୍ଧିକ ଓ କବି । ଓଡ଼ିଆ, ବଙ୍ଗଳା, ଇଂରାଜୀ ଓ ସଂସ୍କୃତ ଭାଷାରେ ତାଙ୍କର ଅଗାଧ ପ୍ରବେଶ ଥିଲା । ଅନେକ ଶାସ୍ତ୍ର ପଠନ ଜନିତ ସେ ନିଜର ଧୀ ଓ ଧୀଷଣାକୁ ପରିବ୍ୟାପ୍ତ କରିପାରିଥିଲେ । ଫଳରେ ତାଙ୍କର ପ୍ରବନ୍ଧ ସମୂହର ଭାବ ଆବେଦନ ସୁଦୂର ପ୍ରସାରୀ ଏବଂ ନୀତିନିଷ୍ଠ ସରଣୀର ପ୍ରଚାରକ । ହିତୈଷିଣୀରେ ପ୍ରକାଶିତ ତାଙ୍କର ପ୍ରବନ୍ଧ ମଧରେ ମଥୁରା ପ୍ରସାଦ (ମୃତ ଭ୍ରାତାର ଜୀବନୀ-୮.୪.୧୮୯୬) ନାରୀ ନିର୍ଯ୍ୟାତନା (୪.୧୧.୧୮୯୬) ହୀତକଥା (୭.୭.୦୧) କର୍ତ୍ତବ୍ୟ ପାଳନ (୭.୫.୧୯୦୨) ସୁଖଲାଭ (୮.୧୦.୧୯୦୨), ଦୈବ ଓ ପୁରୁଷକାର ମଧରେ ଶ୍ରେଷ୍ଠ କିଏ (୨୭.୪.୧୯୦୩) ମାନବର ଭବିଷ୍ୟତ ଭଲମନ୍ଦ (୧୦.୨.୧୯୦୩) ଅବସ୍ଥା ଅନୁଯାୟୀ ବ୍ୟବସ୍ଥା (୧୬.୯.୦୫), ଜାତୀୟ ପତନ ସମ୍ବନ୍ଧେ ଦୁଇ ଚାରି କଥା (୭.୧୦.୦୫), ଜାଗ୍ରତ ଦେବତାର ଉପାସନା (୨୫.୧୧.୦୫) କର୍ତ୍ତାଗିରି (୩.୨.୧୯୦୬) କ୍ରମିକ ଉନ୍ନତି (୩.୩.୦୬) ବେଦୋକ୍ତ ଧର୍ମ (୧୪.୩.୦୬) ଉପାସକ କିଏ (୧୪.୩.୦୬), ପ୍ରାଥମିକ ଓ ମାଧମିକ ଶିକ୍ଷା (୧୨.୧୧.୧୦), ଶିଶୁଶିକ୍ଷା (୨୨.୭.୧୧), ବାଣୀପୂଜା (୩.୧.୧୪) ଜୀବନ ସମସ୍ୟା (୨.୨.୧୮ଏବଂ ପରବର୍ତ୍ତୀ ସଂଖ୍ୟା ମାନଙ୍କରେ) ସାମାଜିକ ଜୀବନ (୨.୩.୧୮, ୯.୩.୧୮) ଆଧୁନିକ ସଭ୍ୟତା (୬.୪.୧୮) ସିଂହଭୂମି ଓଡ଼ିଆ, ସମାଲୋଚନା ରୀତି (୧୪.୯.୧୮) ନୂତନ ପ୍ରଣାଳୀର ସମାଲୋଚନା (୨୧.୯.୧୮) ପ୍ରଭୃତି ପ୍ରଧାନ ।

ଦୀନବଂଧୁଙ୍କର ଅନେକ କବିତା ହିତୈଷିଣୀରେ ପ୍ରକାଶିତ । କବିତାରେ ଏ ସାଧକଙ୍କର ସାଧନାର ଭିତ୍ତିପଡେ । ହିତୈଷିଣୀରେ ଗୋଟିଏ ପ୍ରଶ୍ନ (୧୪.୯.୯୨), ଅଭାବ ବୋଧ (୨୦.୬.୧୯୦୦) ମନପ୍ରତି (୫.୯.୧୯୦୦),ଗୃହ (୬.୨.୦୧) ପର୍ବତ, ମହାପୁରୁଷ ଲକ୍ଷଣ (୬.୩.୦୧) ଆତ୍ମଚିନ୍ତା (୩୧.୭.୦୧), ପ୍ରାର୍ଥନା, ପ୍ରାଣପକ୍ଷୀ ପ୍ରତି (୨୧.୮.୦୧), ହୃଦୟ ବେଦନା (୧୧.୯.୦୧) ମୃତ ଭ୍ରାତା ପ୍ରତି (୧୮.୯.୦୧), ବିଜନେ ବିହଙ୍ଗ (୨.୧୦.୦୧), ଆଗତ ବନ୍ଧୁ (୧୬.୧୦.୦୧) ସଙ୍ଗୀତ (୩୦.୧୦.୦୧, ୧୭.୪.୦୨, ୩୦.୪.୦୨) ପ୍ରିୟ କିଏ ଧରାବାସେ (୧୪.୧.୦୩) ଧୂଳି (୨୮.୧.୦୩) ନିଦାଘ ପ୍ରତି (୬.୪.୧୦) ବସନ୍ତ (୨୬.୩.୧୦) ପ୍ରଭୃତି କବିତା ପ୍ରକାଶିତ । ଏ କବିତା ଗୁଡିକରେ ସ୍ୱଦେଶ ଓ ମାତୃଭୂମି ପ୍ରୀତିର ଅଖଣ୍ଡ ଉଚ୍ଚାରଣ ସହିତ ଜଗତ କଲ୍ୟାଣର ଆଭିମୁଖ୍ୟ ସନ୍ନିତ । କବିତାରେ ଆଦର୍ଶ ମାନବବାଦ ପ୍ରଚାରରେ କବିଙ୍କ ନିଷ୍ଠା ଉତ୍କୃତ । ହୃଦୟର କରୁଣ ଉଷ୍ମ ଆବେଗକୁ କାବ୍ୟ ଦୁକୂଳ ପିନ୍ଧାଇବାରେ ସେ ସିଦ୍ଧହସ୍ତ ।

ଦୀନବନ୍ଧୁଙ୍କ ସୃଷ୍ଟି ମାନବିକ ସଂବେଦନାରେ ରସାପ୍ଲୁତ ଏବଂ ମଣିଷ ସମାଜକୁ ପଦେ ଆଗେଇ ନେବାକୁ ଅଭିପ୍ରେତ ।

## ୧୮: ରତ୍ନାକର ଶର୍ମା : (୧୮୭୯- —) :

ରତ୍ନାକର ଶର୍ମା ହିତୈଷିଣୀ ପୃଷ୍ଠାର ଜଣେ ବହୁ ପ୍ରକାଶିତ କବି । ସାମାନ୍ୟ କେତୋଟି ପ୍ରବନ୍ଧ, ଗଳ୍ପ ଏବଂ ଭ୍ରମଣ କାହାଣୀ ବ୍ୟତୀତ ସେ ସର୍ବତୋଭାବେ କାବ୍ୟ ଦେବୀର ନିରାଜନା କରିଛନ୍ତି । ରାଧାନାଥ ଯୁଗୀୟ କାବ୍ୟ ଆଦର୍ଶକୁ ନିଜର ଆଭିମୁଖ୍ୟ ରୂପେ ବରଣ କରି ଏକ ସୁଦୃଶ୍ୟ କାବ୍ୟ ସୌଧ ଗଠନରେ ରତ୍ନାକର ସଫଳ ହୋଇଛନ୍ତି । ତାଙ୍କର ସୃଷ୍ଟି କୌଶଳ ଅନେକତ୍ର ରାଧାନାଥଙ୍କ କାବ୍ୟ ଦ୍ୱାରା ସୁନିୟଂତ୍ରୀତ । ତାଙ୍କର ହେମଲତା (୧୮୯୭) କାବ୍ୟ କେଦାର ଗୌରୀର ଅନୁସରଣରେ ଗଢ଼ି ଉଠିଛି । ରାଧାନାଥଙ୍କ ପାର୍ବତୀ ଉତ୍ତରାର୍ଦ୍ଧର ଗଦ୍ୟ ଭାଗକୁ ପାଥେୟ କରି ସେ 'ପାର୍ବତୀ' କାବ୍ୟ ରଚନା କରିଛନ୍ତି । ଏହା ହିତୈଷିଣୀ ୩୦/୨୦ ତା ୫.୪.୧୯୧୯ରୁ ଆରମ୍ଭ ହୋଇ ୩୦/୩୧ ତା ୫.୭.୧୯ ସଂଖ୍ୟାରେ ସମାପ୍ତ ହୋଇଛି । ଚିଲିକା କାବ୍ୟ ପ୍ରଭାବରେ କବିଙ୍କର 'ବପାଳିମାଳୀ' (୧୯୧୨) କାବ୍ୟ ଗଢ଼ିଉଠିଛି ।

ହେମଲତା କାବ୍ୟ ଧାରାବାହିକ ଭାବେ ହିତୈଷିଣୀ ୧୮.୭.୧୮୯୪ରୁ ୮.୮.୧୮୯୪ ସଂଖ୍ୟା ପର୍ଯ୍ୟନ୍ତ ପ୍ରକାଶିତ । ଏ କାବ୍ୟର ଉତ୍କର୍ଷତାକୁ ରାଧାନାଥ ସ୍ୱୀକାର କରନ୍ତି । "ହେମଲତା ବିୟୋଗାନ୍ତ କାବ୍ୟ । ଏହାର ରଚନାରେ କବି ସ୍ଥଳେ ସ୍ଥଳେ ଯେପରି ଶକ୍ତିମତ୍ତା ଏବଂ ଭାବୁକତା ଦେଖାଇ ଅଛନ୍ତି ତାହା ବାସ୍ତବ ପ୍ରଶଂସାର୍ହ । ରତ୍ନାକର ବାବୁଙ୍କର ଅନ୍ୟାନ୍ୟ ପଦ୍ୟ ପ୍ରବନ୍ଧ ମୁଁ ସମୟ ସମୟରେ ହିତୈଷିଣୀରେ ଦେଖି ବିଶେଷ ପ୍ରୀତିଲାଭ କରିଥିଲି ଏବଂ ତାହାଙ୍କୁ ଉତ୍କଳର ଉଦୀୟମାନ କବି ବୃନ୍ଦର ଅନ୍ତର୍ଭୁକ୍ତ ମଣିଥିଲି । ହେମଲତା ପାଠଦ୍ୱାରା ମୋହୋର ସେହି ଅନୁମାନ ଦୃଢ଼ୀଭୂତ ହୋଇଅଛି ।" *(୧୩୦)*

କବିଙ୍କର 'ନୀତିବାଣୀ' ହିତୈଷିଣୀ (୨୭.୨.୧୯୦୧)ରେ ପ୍ରକାଶିତ । ଏହା 'ନୀତି ଦର୍ପଣ' ରୂପେ ୧୯୦୧ ରେ ବାମଣ୍ଡା ସୁଡ଼ଳ ପ୍ରେସରେ ପୁସ୍ତକାକାରେ ପ୍ରକାଶିତ । ନୀତିଧର୍ମୀ କବିତା 'ନୀତିକୁସୁମ' ହିତୈଷିଣୀ ୧.୮.୧୯୦୦ ରେ ପ୍ରକାଶିତ । ଏ କବିତା ଗୁଡିକ ତତ୍କାଳୀନ ସମାଜରେ ନୈତିକ ମୂଲ୍ୟବୋଧ ପ୍ରତିଷ୍ଠାରେ ସଫଳ ହୋଇଛି ।

"ନ କଲେ ନକର ପଛେ ପର ଉପକାର
କିନ୍ତୁ କେବେ ନ ବାଞ୍ଛିବ ଅନିଷ୍ଟ କାହାର
କଲେ କର ପଛେ ମୌନ ବ୍ରତ ଆଚରଣ
ତଥାପି ନ କହ କେବେ ଅଳୀକ ବଚନ
ଅନାହାରେ ଗଲେ ଯାଉ ପଛେ ଏ ଜୀବନ
ଭ୍ରମେ ସୁଦ୍ଧା ନ କରିବ ପରସ୍ୱ ହରଣ ।" *(୧୩୧)*

କବିଙ୍କର 'ଅଜବିଳାପ' କାବ୍ୟ ସଂସ୍କୃତ ରଘୁବଂଶ କାବ୍ୟର ଅଷ୍ଟମ ସର୍ଗର ମାର୍ମିକ ଅନୁବାଦ । ଏହା ହିତୈଷିଣୀ ତା ୨୬.୯.୧୯୦୦ରୁ ଧାରାବାହିକ ପ୍ରକାଶିତ ହୋଇ ଦେ'ଙ୍କ ଉତ୍କଳ ପ୍ରେସ ବାଲେଶ୍ୱରରେ ପୁସ୍ତକ ରୂପେ ମୁଦ୍ରିତ ହୁଏ । ଏ ଅନୁବାଦକୁ ରାଧାନାଥ ଭୂୟସୀ ପ୍ରଶଂସା କରନ୍ତି । ଏହାର ସମାଲୋଚନା କରି ଦାମୋଦର କର ହିତୈଷିଣୀ ପୃଷ୍ଠାରେ ରତ୍ନାକରଙ୍କ କାବ୍ୟ ଅନୁବାଦ ପ୍ରକ୍ରିୟାର ପ୍ରାଞ୍ଜଳତାକୁ ସ୍ୱାଗତ କରିଛନ୍ତି । *(୧୩୨)*

ହିତୈଷିଣୀ ୯.୪.୧୯୧୦ରୁ କ୍ରମଶାଃକାରେ କବିଙ୍କର 'ଦୁଇ ସଙ୍ଗାତ' ଗାଥା କବିତା ପ୍ରକାଶିତ । ୧୯୧୦ରେ ଏହା ବାମଣ୍ଡା ପ୍ରେସରେ ପୁସ୍ତକାକାରେ ମୁଦ୍ରିତ ।

କବିଙ୍କର ଅନେକ ରଚନା ହିତୈଷିଣୀରେ ପ୍ରକାଶିତ । ସୂର୍ଯ୍ୟାସ୍ତ (୧୦.୫.୯୩) ମେଘର ପ୍ରତି (୧୬.୫.୯୩) ପ୍ରଭାତ (୫.୭.୯୩) ସକଳ-ଅନିତ୍ୟ (୯୯.୧୮୯୬) ନୀତିବାଣୀ (୨୨.୯.୯୭) ଗ୍ରୀଷ୍ମ (୧୮.୭.୧୯୦୦) ପଦ୍ମ ପ୍ରତି (୧୮.୭.୧୯୦୦) କୃଷକ ପ୍ରତି, କୋକିଳ ପ୍ରତି (୨୫.୭.୧୯୦୦) ସର୍ବେସ୍ୱାର୍ଥପର (୧୦.୧୦.୧୯୦୦) ନବ୍ୟ ବିଧବା ପ୍ରତି (୨୦.୨.୦୧) ସଂସାରର ଅନିତ୍ୟତା (୨୭.୨.୦୧) ନୀତି ସୁମନ (୧.୧.୧୯୦୨), ନୀତି କୁସୁମ (୫.୮.୧୯୦୩), ସୂର୍ଯ୍ୟପ୍ରତି (୨୧.୪.୧୯୦୬), ବୈଦେହୀ (୨୩.୧.୦୯) ଏବଂ ଅନ୍ୟାନ୍ୟ ଅନେକ କବିତା ହିତୈଷିଣୀରେ ପ୍ରକାଶିତ । ତାଙ୍କର କେତେକ ଭ୍ରମଣ ବିବରଣୀ ଓ ପ୍ରାଚୀନ କଥା ମଧ ହିତୈଷିଣୀରେ ପ୍ରକାଶିତ । ଏ ପ୍ରସଙ୍ଗରେ ବୀରବଲ୍ ଆକବର କଥା (୨୭.୮.୧୯୦୨), ଅଦ୍ଭୁତ ପ୍ରଭୁଭକ୍ତି (୨୪.୩.୦୬) ବମ୍ଭାଇ (୭.୧୧.୦୮), ମାନ୍ଦ୍ରାଜ (୨୧.୧୧.୦୮) କଲିକତା (୧୯.୧୨୦୮) ହାଇଦ୍ରାବାଦ (୨୮.୧୦.୧୧) ପ୍ରଭୃତି ରଚନାକୁ ସ୍ମରଣ କରାଯାଇପାରେ । ରତ୍ନାକରଙ୍କ ଅନେକ ପୁସ୍ତକର ସମାଲୋଚନା ମଧ ହିତୈଷିଣୀରେ ପ୍ରକାଶିତ ।

ରତ୍ନାକର ଜଣେ ସଫଳ ଶବ୍ଦ ଶିଳ୍ପୀ । ସାବଲୀଳ ଶବ୍ଦ ସଜ୍ଜା, ଅନନ୍ୟ ସଂଗୀତ ଧ୍ୱନି ଓ ମାଦକତା ପୂର୍ଣ୍ଣ ପରିପ୍ରକାଶ ହିଁ ତାଙ୍କର ବୈଶିଷ୍ଟ୍ୟ । ପୌରାଣିକ କଥା ବସ୍ତୁକୁ ସେ ଆଧୁନିକତାର ଦୁକୂଳ ପିନ୍ଧାଇଛନ୍ତି । ଅବବୋଧ ତାଙ୍କର ମାର୍ମିକ । ରୁଚି ସର୍ବଜନଗ୍ରାହ୍ୟ ମହତ । ପ୍ରକୃତି ପ୍ରାଣ କବି କବିତା ଛଳରେ ଜାତୀୟବୋଧ ପରିପ୍ରଚାର କରୁଥିଲେ । ସମାଜ ଜୀବନର ବିକାଶ ସାଧନ ହିଁ ତାଙ୍କର ପବିତ୍ର ଆଭିମୁଖ୍ୟ

## ୧୯: ଟଙ୍କଧର ଦାଶ (୧୮୮୯-୧୯୬୪) :

ଟଙ୍କଧର ଦାଶ ବାମଣ୍ଡାର ଜଣେ ପ୍ରସିଦ୍ଧ ଶିକ୍ଷାବିତ୍ । ସେ ବାମଣ୍ଡା ରାଜ୍ୟର ପ୍ରଥମ ମେଟ୍ରିକ୍ୟୁଲେଟ୍ (୧୯୧୦) । ରାଜ୍ୟରେ ଶିକ୍ଷା କ୍ଷେତ୍ରରେ ସେ ଦକ୍ଷତାର ସହିତ କାର୍ଯ୍ୟ କରି ଥିଲେ । ତାଙ୍କର ଅନେକ କବିତା ଓ ପ୍ରଭାବଶାଳୀ ପ୍ରବନ୍ଧ ହିତୈଷିଣୀରେ ପ୍ରକାଶ ଲଭିଥିଲା । ସାହିତ୍ୟ ଓ ସଂସ୍କୃତିର ଜଣେ ପଥ ପ୍ରଦର୍ଶକ ହିସାବରେ ଆଦର୍ଶବାଦୀ ରଚନାର ସେ ଥିଲେ

ପକ୍ଷପାତି । ତାଙ୍କର ରଚନା ମାଧମରେ ଶିକ୍ଷା କ୍ଷେତ୍ରରୁ କୁସଂସ୍କାର ଦୂରୀକରଣ ହିଁ ଥିଲା ପ୍ରଧାନ ଲକ୍ଷ୍ୟ । ତାଙ୍କ ପ୍ରବନ୍ଧ ଓ ଆଲୋଚନାରେ ତଥ୍ୟ ଓ ତତ୍ତ୍ୱ ପରିବେଷଣରେ ମୌଳିକ ଦୃଷ୍ଟିଭଙ୍ଗୀ ପ୍ରକାଶିତ । ଜ୍ଞାନର ଗଭୀରତା ଓ ଭାଷା ଶୈଳୀର ସ୍ୱତନ୍ତ୍ରତା ତାଙ୍କର ରଚନାକୁ ଆକର୍ଷଣୀୟ କରିତୋଳେ । ତାଙ୍କର 'ଶିକ୍ଷା' ପ୍ରବଂଧ ହିତୈଷିଣୀ ୮.୫.୨୦ରୁ କ୍ରମଶାଃକାରେ ୬.୧.୨୩ ସଂଖ୍ୟା ପର୍ଯ୍ୟନ୍ତ ପ୍ରକାଶିତ । ଏ ପ୍ରବନ୍ଧରେ ଶିକ୍ଷାର ପ୍ରତ୍ନତାତ୍ତ୍ୱିକ ବିଶ୍ଳେଷଣ ସହ ଉତ୍କୃଷ୍ଟ ଶିକ୍ଷା ପଦ୍ଧତି ସଂପର୍କରେ ଆଲୋକପାତ କରାଯାଇଛି ।

ଟଙ୍କଧର ଦାଶ ବାମଣ୍ଡା ଛାତ୍ର ସମିତର ସଂପାଦକ ରୂପେ ଅନେକ ବର୍ଷ କାର୍ଯ୍ୟ ନିର୍ବାହ କରିଥିଲେ । ବାମଣ୍ଡା ଆଲୋଚନା ସଭାରେ ମଧ ସେ ସକ୍ରୀୟ ଅଂଶ ଗ୍ରହଣ କରୁଥିଲେ । ତାଙ୍କର ରଚନା ମଧରେ ହିତୈଷିଣୀରେ ପ୍ରକାଶିତ ନବବର୍ଷ, ନୀତିବଚନ (୧.୧.୧୦) ଉନ୍ନତି (୨୨.୧.୧୦, ୫.୨.୧୦) ଆତ୍ମସମର୍ପଣ (୧୨.୨.୧୦), ଆହ୍ୱାନ (୫.୩.୧୦) ଅଭିନୟ (୨.୪.୧୦) କୌଣସି ବନ୍ଧୁର ଅକାଳ ଶୟନ ଦର୍ଶନେ (୨୪.୮.୧୨) ଅଶାନ୍ତି (୧୪.୯.୧୨)ବଡିଶରେ ମତ୍ସ୍ୟଦର୍ଶନେ (୫.୧୦.୧୨), ବସନ୍ତ ଆଗମନ (୨୩.୨.୧୮), ସଚ୍ଚିଦାନନ୍ଦଙ୍କ ଶ୍ରାଦ୍ଧସଭାରେ ପଠିତ ପ୍ରବନ୍ଧ (୨୨.୩.୧୯) ପ୍ରଭୃତି ପ୍ରଧାନ । ତାଙ୍କର ଅନେକ ରଚନା ପାଣ୍ଡୁଲିପ ଆକାରରେ ଅପ୍ରକାଶିତ ଭାବେ ରହିଥିଲା । *(୧୩୩)*

ଟଙ୍କଧର ଦାଶଙ୍କ କବିତା ମିତ୍ରାକ୍ଷର ଓ ଅମିତ୍ରାକ୍ଷର ଉଭୟ ଛନ୍ଦରେ ବେଶ୍ ସାବଲୀଳ ।

''ଜଳସ୍ଥଳ ଅନ୍ତରୀକ୍ଷ ପବିତ୍ର ମଧୁର
ସୌନ୍ଦର୍ଯ୍ୟ-ବିଳାସ-କ୍ଷେତ୍ର ହୋଇ ଅଛି ଆଜ
ଋତୁରାଟ ବସନ୍ତର ଶୁଭ୍ର ଆଗମନେ
ପଞ୍ଜରା ଭେଦୀ ଶୀତର କଠୋର ଶାସନ
ନିର୍ବାପିତ, ଅନାଗତ ନିଦାଘ ଦୁର୍ଦ୍ଦଶା;
ପ୍ରକୃତି ମଧୁର-ହାସ୍ୟ-ଛଳେ-ପ୍ରକାଶିତ
ହୃଦୟାନନ୍ଦ ପ୍ରସାରି-ନୟନ ରଞ୍ଜନ-
ଗନ୍ଧଭରା-ନାନା ରଙ୍ଗ-କୁସୁମ ପଲ୍ଲବେ ।'' *(୧୩୪)*

ତାଙ୍କର ପ୍ରବନ୍ଧ ସମାଜ ସଂସ୍କାରର ଆଭିମୁଖ୍ୟ ପ୍ରକାଶ କରେ । ଇତଃସ୍ତତଃ ପ୍ରକାଶିତ ରଚନା ଏବଂ ଅପ୍ରକାଶିତ ରାଶି ରାଶି କୃତି ମଧରେ ଟଙ୍କଧର ଦାଶଙ୍କ ସାରସ୍ୱତ ମୂଲ୍ୟାୟନ ଏକ ସଂବେଦନଶୀଳ ଆଲୋଚକର ଅପେକ୍ଷା ରଖେ । ତାଙ୍କର ଶିକ୍ଷା ସଂପର୍କିତ ପ୍ରବନ୍ଧ ସମୂହ ପ୍ରଜ୍ଞାବାନ ଲେଖକର ଅପୂର୍ବ ସ୍ୱାକ୍ଷର ବହନ କରେ ।

## ୨୦: ରାଜୀବ ଲୋଚନ ଦେବ (୧୮୮୩-୧୯୪୩) :

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଷଷ୍ଠ ପୁତ୍ର ରାଜୀବ ଲୋଚନ ଦେବ ଜଣେ ନୀରବ କବି । ପିତା ଓ ଜ୍ୟେଷ୍ଠ ଭ୍ରାତା ସଚ୍ଚିଦାନନ୍ଦ ଓ ବଳଭଦ୍ରଙ୍କ ସାରସ୍ୱତ ସାଧନା ତାଙ୍କୁ ପ୍ରବୋଧିତ କରିଥିଲା । ବାମଣ୍ଡାର ସାରସ୍ୱତ ପୃଷ୍ଠଭୂମିରେ ତାଙ୍କର କାବ୍ୟ ପ୍ରାଣ ଉନ୍ମୁଖ ହୋଇ ଉଠିଥିଲା ପ୍ରକୃତିର ରସପାନରେ । ଉଦାତ୍ତ କଣ୍ଠରେ ସେ ପ୍ରକୃତିର ଜୟଗାନ କରିଥିଲେ । ପାରିଜାତ (୧୯୧୪) ତାଙ୍କର ଏକମାତ୍ର ପ୍ରକାଶିତ କବିତା ପୁସ୍ତକ । ଏ ପୁସ୍ତକ ଅଧ୍ୟୟନ କରି ଫକୀର ମୋହନ ଭୂୟସି ପ୍ରଶଂସା କରିଛନ୍ତି । *(୧୩୫)* ପାରିଜାତ ଏକ କ୍ଷୁଦ୍ର ପୁସ୍ତକ । ଏଥିରେ କବିଙ୍କ ସ୍ୱରଚିତ ଏଗାରଟି କବିତା ପତ୍ରସ୍ଥ ହୋଇଛି । ଏ ଗୁଡିକ ମଧ୍ୟରୁ କିଛି ପୂର୍ବରୁ ହିତୈଷିଣୀରେ ପ୍ରକାଶିତ ।

ହିତୈଷିଣୀ ପୃଷ୍ଠାରେ କବିଙ୍କର ଭରତିଆ (୨୫.୯.୦୯) ପ୍ରଧାନ ପାଟ ପ୍ରପାତ ପ୍ରତି (୨.୧୦.୦୯) ମାଲ୍ୟଗିରି ପ୍ରତି (୯.୧୦.୦୯) ମେଘ ପ୍ରତି (୧୬.୧୦.୦୯) ପବନ ପ୍ରତି (୨୩.୧୦.୦୯) ଚପଳା ପ୍ରତି (୩୦.୧୦.୦୯) ଚିତ୍ର ପ୍ରତି (୯.୧୨.୧୧), ସନ୍ଧ୍ୟା (୬.୧.୧୨) ବସନ୍ତ (୧୦.୨.୧୨), ପୌର୍ଣ୍ଣମାସୀ ଚନ୍ଦ୍ର (୧୩.୪.୧୨) ଲକ୍ଷ୍ମଣଙ୍କ କିଷ୍କିନ୍ଧ୍ୟା ଗମନ (୨୪.୮.୧୨) ଧ୍ୟାନମଗ୍ନ ବ୍ୟାସଦେବ (୯.୧୧.୧୨) ପ୍ରଭୃତି କବିତା ପ୍ରକାଶିତ । ଅନୁବାଦିତ କବିତା 'ଘଡି ଓ ମନୁଷ୍ୟ', ଓ 'ପୂର୍ଣ୍ଣଚନ୍ଦ୍ର ଓ ପ୍ରଦୀପ' ହିତୈଷିଣୀ ୩୧.୭.୧୫ ସଂଖ୍ୟାରେ ପ୍ରକାଶିତ ।

ରାଜପୁତ୍ର ହୋଇ ମଧ୍ୟ ବିଜ୍ଞାପନ ସର୍ବସ୍ୱ ସମାଜର ବହୁଦୂରରେ ସେ ପ୍ରକୃତିର ଅନଶ୍ୱର ଶୋଭାର ଆତ୍ମିକ ସଂପଦକୁ କାବ୍ୟଶ୍ରୀ ମଣ୍ଡିତ କରୁଥିଲେ । 'ହରିଶ୍ଚନ୍ଦ୍ର' ତାଙ୍କର ଏକ ପ୍ରଧାନ କାବ୍ୟ । ଏହାର କିଛି ଅଂଶ 'ଉପହାର (୧୯୩୫) ପତ୍ରିକାରେ ପ୍ରକାଶିତ । ଉପହାରରେ ତାଙ୍କର ମାତୃଭୂମି (୧୯୩୯) ଓ ପ୍ରକୃତି (୧୯୪୦) କବିତା ପ୍ରକାଶିତ ।

ରାଜୀବଲୋଚନ ଦେବଙ୍କ ସୀମିତ ସୃଷ୍ଟି ଭିତରେ ଏକ ମୌଳିକ ପ୍ରକୃତି ପ୍ରେମିକର ଭାବ ଆବେଦନ ସୁସ୍ପଷ୍ଟ । ପ୍ରକୃତି ଭିତରେ ଜଂଜାଳ ଗ୍ରସ୍ତ ଜୀବନର ଶାନ୍ତି ନିକେତନ ଅନ୍ୱେଷଣ କରିଛନ୍ତି କବି ।

## ଅନ୍ୟାନ୍ୟ ସାଧକ :

ନବୀନ ଓ ପ୍ରବୀଣ  ଉଭୟ ଗୋଷ୍ଠୀର ସାଧକଙ୍କ ରଚନାରେ ହିତୈଷିଣୀ ପରିପୁଷ୍ଟ । କେତେକ ବିଶିଷ୍ଟ ସାହିତ୍ୟିକ ହିତୈଷିଣୀରେ ନିୟମିତ ଲେଖୁ ନଥିଲେ ମଧ୍ୟ ତାଙ୍କର ଶୁଭାଶିଷ ହିତୈଷିଣୀକୁ ଉଚିତ୍ ଦିଗଦର୍ଶନ ଦେଉଥିଲା । ବାମଣ୍ଡା ଦରବାରର ସାରସ୍ୱତ ଆଲୋଚନାକୁ ଏମାନେ ନିୟନ୍ତ୍ରିତ କରୁଥିଲେ । ନୈପଥ୍ୟରେ ରହି ଏମାନେ ମଧ୍ୟ ହିତୈଷିଣୀ ପ୍ରକାଶନକୁ ତ୍ୱରାନ୍ୱିତ କରୁଥିଲେ ।ଏ ସମସ୍ତ ସାଧକଙ୍କ ସାରସ୍ୱତ ସ୍ୱରୂପ ବିଶ୍ଳେଷଣ ସର୍ବାଦୌ କର୍ତ୍ତବ୍ୟ ।

ଡିଗିରିଆ ନିବାସୀ ଭୁବନେଶ୍ୱର ବଡପଣ୍ଡା (୧୮୨୨-୧୯୧୨) ସମକାଳୀନ ଓଡ଼ିଶାର ଜଣେ ପ୍ରସିଦ୍ଧ ପଣ୍ଡିତ । ସେ ସାର୍ ସୁଡ଼ଲଦେବ, ସାମନ୍ତ ଚନ୍ଦ୍ରଶେଖର ପ୍ରମୁଖଙ୍କ ଗୁରୁ । ଆନନ୍ଦ ଦାମୋଦର ଚମ୍ପୁ (୧୮୮୨), ବାମଣ୍ଡା ରାଜବଂଶାନୁଚରିତ ଚମ୍ପୂ, ଚିତ୍ରୋତ୍ପଳା ଚମ୍ପୁ ପ୍ରଭୃତି ଉତ୍କୃଷ୍ଟ ସଂସ୍କୃତ ଗ୍ରନ୍ଥ ବଡପଣ୍ଡାଙ୍କ କୃତିତ୍ୱ । ବାମଣ୍ଡାରାଜା ତାଙ୍କୁ 'ବକୁଳ କବି' ଓ ଡିଗିରିଆ ରାଜା ତାଙ୍କୁ 'ବଡପଣ୍ଡା' ଉପାଧି ପ୍ରଦାନ କରିଥିଲେ । ବାମଣ୍ଡାରେ ପ୍ରକାଶିତ ଅନେକ ସଂସ୍କୃତ ଗ୍ରନ୍ଥର ଶୁଦ୍ଧ ସଂସ୍କରଣର ସଂପାଦନା ଦାୟିତ୍ୱ ବଡପଣ୍ଡା ଗ୍ରହଣ କରିଥିଲେ । ସେ ହିତୈଷିଣୀର ନାନ୍ଦୀ ଶ୍ଲୋକ ରଚନା କରିଥିଲେ ।

ବିଜୟ ଚନ୍ଦ୍ର ମଜୁମଦାର ସମକାଳୀନ ଓଡ଼ିଶାର ଜଣେ ବିଶିଷ୍ଟ ସମାଲୋଚକ ତଥା ଐତିହାସିକ । ସେ ବାମଣ୍ଡା ଉଚ୍ଚବିଦ୍ୟାଳୟର ପ୍ରଥମ ପ୍ରଧାନ ଶିକ୍ଷକ । ସେ ବାମଣ୍ଡା ଆଲୋଚନା ସଭାରେ ଅଂଶ ଗ୍ରହଣ କରି ଅନେକ ବିଷୟରେ ଉଚ୍ଚକୋଟୀର ବକ୍ତୃତା ପ୍ରଦାନ କରିଥିଲେ । ହିତୈଷିଣୀର ସେ ଅନ୍ୟତମ ପ୍ରେରଣା ଦାତା । ହିତୈଷିଣୀରେ ତାଙ୍କର ବିପ୍ଳବ ଓ ସମାଲୋଚନା (୨୧.୧୨.୯୨)ପରଧର୍ମ (୧୦.୫.୧୮୯୩) ପରି ଉଚ୍ଚକୋଟୀର ପ୍ରବନ୍ଧ ପ୍ରକାଶିତ ।

ନାରାୟଣ ଚନ୍ଦ୍ରଦାସ (ମୃତ୍ୟୁ-୧୯୧୬) ଜଣେ ଅନାଲୋଚିତ ନାଟ୍ୟପ୍ରତିଭା । ସେ ମଧୁ ବାବୁ ତଥା ଗୋପାଳବଲ୍ଲଭ ଦାସଙ୍କ ସଂପର୍କୀୟ ଭାଇ । ସେ ବାମଣ୍ଡା ରାଜାଙ୍କ ଜଣେ ସମ୍ମାନସ୍ପଦ ପ୍ରଶାସନିକ ଅଧିକାରୀ । ରାଜାଙ୍କ ପରେ ତାଙ୍କର ସମ୍ମାନ ଥିଲା ସବୁଠାରୁ ଉଚ୍ଚରେ । ସେ କୁଚିଣ୍ଡାର ଏସ:ଡି:ଓ ରୂପେ ଅବସ୍ଥାପିତ ଥିଲେ । ରାମାୟଣ କଥାବସ୍ତୁକୁ ଆଧାର କରି ରାଜ ପାରିଧି, ଦଶରଥ ବିୟୋଗ, ସୀତା ହରଣ, ସୀତା ଉଦ୍ଧାର, ସୀତା ବର୍ଜନ, ସୀତା ଦେବୀଙ୍କ ପାତାଳ ପ୍ରବେଶ ପ୍ରଭୃତି ନାଟକ ରଚନା କରିଥିଲେ । ହିତୈଷିଣୀରେ ତାଙ୍କର ନାଟ୍ୟ ମଞ୍ଚାୟନର ଅନେକ ସଂବାଦ ପ୍ରକାଶିତ । ଏପରିକି ଶଶିଭୂଷଣ ରାୟ, ବୀରବିକ୍ରମ ଦେବ ପ୍ରମୁଖ ଏ ନାଟକ ମଞ୍ଚସ୍ଥ ଦେଖି ଭୂୟସୀ ପ୍ରଶଂସା କରିଥିଲେ । ନାରାୟଣଙ୍କ ନାଟକରେ ମାର୍ଜିତ ଓ ଉଚ୍ଚାଙ୍ଗ ରୁଚିର ସମାବେଶକୁ ଶଶିଭୂଷଣ ମୁକ୍ତ କଣ୍ଠରେ ପ୍ରଶଂସା କରିଛନ୍ତି । *(୧୩୬)*

ମଧୁସୂଦନ ମିଶ୍ର ତର୍କବାଚସ୍ପତି ବାମଣ୍ଡା ପଣ୍ଡିତ ସଭାର ଅନ୍ୟତମ ସଭ୍ୟ । ସେ ଗଦାଧର ପଦ୍ଧତି (୧୮୯୮), ସାହିତ୍ୟ ରତ୍ନାକର (୧୯୦୧) ଧ୍ୱନ୍ୟାଲୋକ (୧୯୦୧) ପ୍ରଭୃତି ସଂସ୍କୃତ ଗ୍ରନ୍ଥର୍ ସଂପାଦନା କରି ବାମଣ୍ଡା ରାଜାଙ୍କ ଆନୁକୂଲ୍ୟରେ ପ୍ରକାଶ କରିଥିଲେ । ସେ ହନୁମତ୍ ସନ୍ଦେଶମ୍, ତାରା ଶଶାଙ୍କ, ଲକ୍ଷ୍ମୀଶତକମ୍, ସୋମନାଥ ଶତକମ୍, ଅଭିନବାଷ୍ଟକଂ, ଉପବଚଂପୂ ପ୍ରଭୃତି ସଂସ୍କୃତ କାବ୍ୟ ରଚନା କରିଥିଲେ । ହିତୈଷିଣୀରେ ତାଙ୍କର ଜାତିର ସମାଲୋଚନା (୨୬.୬.୧୮୯୫) ଉତ୍କଳେ ଯାତ୍ରାଦଳ (୧୬.୯.୧୯୦୨) ବୃଥାଜାତି ବରାଟିକା (୮.୧୦.୧୯୦୨) ଅଭିନବାଷ୍ଟକଂ (୨୪.୬.୧୯୦୩) ପ୍ରଭୃତି ରଚନା ପ୍ରକାଶିତ ।

ଏତଦ୍ ବ୍ୟତୀତ ମଧୁରାଓ ଙ୍କ ସଙ୍ଗୀତ ମାଳ (କ) ସଚ୍ଚିଦାନନ୍ଦଙ୍କ ଚିତ୍ର (ଖ) ଓ ବୈଦିକ ପ୍ରକୃତି (ଗ) ପ୍ରଭୃତି ପୁସ୍ତକର ସମାଲୋଚନା ମଧୁସୂଦନ ହିତୈଷିଣୀରେ ଲେଖିଥିଲେ । *(୧୩୬)*

**କାଳୀ ଚରଣ ଦ୍ୱିବେଦୀ ବାମଣ୍ଡାର ଜଣେ ବିଶିଷ୍ଟ ପଣ୍ଡିତ । ୧୮୩୫ ମାଘ ମାସ ଶୁକ୍ଳ ପକ୍ଷ ଅଷ୍ଟମୀ ତିଥିରେ ଜନ୍ମିତ ଏ ପଣ୍ଡିତ ୧୯୨୧ମାଘ ଶୁକ୍ଳ ଅଷ୍ଟମୀରେ ଇହଧାମ ତ୍ୟାଗ କରନ୍ତି ।** ସଂସ୍କୃତ ସାହିତ୍ୟର ଅଗାଧ ବାରିଧିରେ ସନ୍ତରଣ ପଟୁ ପଣ୍ଡିତ କାଳୀଚରଣ ଉତ୍ତରାଧିକାର ସୂତ୍ରରେ ପାଇଥିଲେ ପାଣ୍ଡିତ୍ୟ । ଜନ୍ମସିଦ୍ଧ ସ୍ରଷ୍ଟା ସେ । ପିତା ପଣ୍ଡିତ ଗଙ୍ଗାଧର ଦିବେଦୀ ବ୍ରଜସୁନ୍ଦର ଦେବଙ୍କ ସମୟର ପଣ୍ଡିତ ଏବଂ ମାତା ରାହୀଦେବୀ । କାଳୀ ଚରଣ ୧୮୮୯ ବେଳକୁ ଓଡିଶା ପଣ୍ଡିତ ସଭାର ସଂପାଦକ ପଦ ମଣ୍ଡନ କରନ୍ତି (କାଳୀ ଚରଣ ଦ୍ୱିବେଦୀଙ୍କ ନାତି ଶ୍ରୀଯୁକ୍ତ ନିରଞ୍ଜନ ଦ୍ୱିବେଦୀଙ୍କ ସୌଜନ୍ୟରୁ ସଂଗ୍ରହ) ବାମଣ୍ଡା ମନ୍ଦିର ସମୂହର ମୁଖ୍ୟ ପୁରୋଧା ତଥା ରାଜା ସଚ୍ଚିଦାନନ୍ଦ ଦେବଙ୍କ ଶିକ୍ଷାଗୁରୁ ଥିଲେ । ରାଜକୁମାର ଉଚ୍ଚବିଦ୍ୟାଳୟରେ ଶିକ୍ଷକତା ମଧ କରୁଥିଲେ ।

କାଳୀ ଚରଣ ଦ୍ୱିବେଦୀଙ୍କ ହିତୈଷିଣୀ ସହିତ ସଂପର୍କ ଥିଲା ଅତି ନିବିଡ । ତାଙ୍କର ପାଣ୍ଡିତ୍ୟ ହିତୈଷିଣୀର ପାରଂପରିକ ଧାରା ଓ ରୁଚିବୋଧକୁ ନିୟଂତ୍ରୀତ କରୁଥିଲା । ତାଙ୍କର ବିଧବାର ଏକାଦଶୀ ସମୀକ୍ଷା (୧୪.୯.୧୮୯୨), ବୈଦେହୀଶ ବିଳାସ (୨୧.୯.୧୮୯୨) ରୁଚି ସଂସ୍କାର (୨୮.୯.୧୮୯୨) ପାଠ କରନ୍ତୁ (୧୭.୧୨.୧୯୦୪), ଦର୍ପଣର ଦର୍ପଣତ୍ୱ (୧୦.୨.୧୯୦୬) ପ୍ରଭୃତି ରଚନା ହିତୈଷିଣୀ ରେ ପ୍ରକାଶ ଲଭି ତାଙ୍କ ପ୍ରଜ୍ଞାର ଅଭିନବତ୍ୱ ପ୍ରକାଶ କରେ । ବୈଦେହୀଶ ବିଳାସ ଓ ରୁଚିସଂସ୍କାର ପ୍ରବନ୍ଧ ବିଜୁଳି-ଇନ୍ଦ୍ରଧନୁ କଳହ ପୃଷ୍ଠଭୂମିରେ ଭଞ୍ଜ କବିଙ୍କର ମହାନତା ପ୍ରଦର୍ଶନ କରିଛି ।

କାଳୀଚରଣ ସାର୍ ସୁଡ଼ଳ ଦେବଙ୍କ ନିର୍ଦ୍ଦେଶ କ୍ରମେ ଚଣ୍ଡୀର ଶୁଦ୍ଧ ସଂସ୍କରଣ (ଜଗନ୍ନାଥ ବଲ୍ଲଭ ପ୍ରେସ୧୯୮୯) ପ୍ରକାଶ କରିଥିଲେ । ଏଥିରେ ଦୀର୍ଘ ପୂଜା ବିଧାନ ସଂଯୋଜନା କାଳୀଚରଣଙ୍କ ପାଣ୍ଡିତ୍ୟର ସୂଚନା ଦିଏ । 'ନୀତିସାର' (୧୮୮୬) 'ନିଆଳୀ' ତାଙ୍କର ଦୁଇଟି ପ୍ରକାଶିତ ପୁସ୍ତକ । ନିତିସାରରେ ସଂସ୍କୃତ ସାହିତ୍ୟର ନୀତବାକ୍ୟ ସମୂହ ସଂଯୋଜିତ । ନିଆଳୀ ଏକ ସଂସ୍କୃତ କାବ୍ୟ । ଏଥିରେ ବାମଣ୍ଡାର ସୁଦୃଶ୍ୟ ବର୍ଣ୍ଣନା ସଂସ୍କୃତ ଓ ଓଡିଆ ଭାଷାରେ କରାଯାଇଛି ।

ଦାଶରଥି ରାଉତ ଓ ଜଗଦାନନ୍ଦ ଦାସ ବାମଣ୍ଡାରେ ଶିକ୍ଷକତା କରୁଥିଲେ । ୧୮୯୩ ବିଜୁଳି ଇନ୍ଦ୍ରଧନୁ କଳହ ସମୟରେ ଏମାନେ ବିଜୁଳି ପକ୍ଷରେ ସ୍ୱକୀୟ ଅଂଶ ଗ୍ରହଣ କରି ଥିଲେ । ଦାଶରଥିଙ୍କ ଲାଲା ରାମନାରାୟଣଙ୍କୁ ସମର୍ଥନ କରି ପ୍ରବନ୍ଧ (୧୩.୯.୯୩) ଓ ଜଗଦାନନ୍ଦ ଙ୍କ କଳିଭଙ୍ଗା ତବଲ ଚୌତିଶା (କବିତା ୧୧.୧୦୧୮୯୩) ଆକର୍ଷଣୀୟ ହୋଇ ପାରିଥିଲା । ଏତଦ୍‌ବ୍ୟତୀତ ଜଗଦାନନ୍ଦ ଦାସଙ୍କ କବିତା (୨୦.୬.୧୮୯୪) କନିକା ନୃପେନ୍ଦ୍ର

(୨୬.୮.୧୮୯୬) ପାରିଜାତ ମାଳା (୭.୧୦.୧୮୯୬) ବ୍ୟତୀତ ଶ୍ରୀ -ଜ ଛଦ୍ମନାମରେ କିଛି ରଚନା ହିତୈଷିଣୀରେ ପ୍ରକାଶିତ । ଏ ପ୍ରସଙ୍ଗରେ ଦାମୋଦର ପଟ୍ଟନାୟକଙ୍କ ଉପେନ୍ଦ୍ର କାବ୍ୟ (୧୩.୯.୧୮୯୩) ପ୍ରବନ୍ଧ ମଧ୍ୟ ସ୍ମରଣଯୋଗ୍ୟ ।

ନାଟ୍ୟକାର ବୀର ବିକ୍ରମଦେବ ହିତୈଷିଣୀର ଜଣେ ପ୍ରେରଣା ଦାତା । ତାଙ୍କର ବିଧବା ବିବାହ (୨୫.୩.୧୯୦୫) ସମାଲୋଚକ ପ୍ରତି (୧.୪.୧୯୦୫) ହିତୈଷିଣୀରେ ପ୍ରକାଶିତ । ବିଶିଷ୍ଟ ପ୍ରାବନ୍ଧିକ ଗୋପୀନାଥ ନନ୍ଦଶର୍ମାଙ୍କ ମତ୍ସେନ୍ଦ୍ରନାଥ ଓ ଗୋରକ୍ଷ ନାଥ ଆଲୋଚନା ହିତୈଷିଣୀ ୫.୩.୧୯୧୩ ସଂଖ୍ୟାରେ ପ୍ରକାଶିତ । ଭୋଳାନାଥ ସାମନ୍ତରାୟଙ୍କ ମହାଯାତ୍ରା ଓ କବି ରାଧାନାଥ ରାୟ (୧୮.୧୧.୯୬), ଭ୍ରମଣ ବୃତ୍ତାନ୍ତ (୨୦.୩.୧୯୦୧) ରମ୍ଭେଇ ଚିନିକଳ (୪.୩.୧୧), ମାତା ସମାଲୋଚନା (.୧୮.୯.୧୮୯୫) ତୁଳସୀ ସ୍ତବକ ଆଲୋଚନା (୧୩.୧୧.୯୫), ପ୍ରକୃତି ଆଲୋଚନା (୯.୯.୧୧) ପ୍ରଭୃତି ରଚନା ହିତୈଷିଣୀ ପୃଷ୍ଠା ମଣ୍ଡନ କରିଥିଲା । ଭଗବାନ ମେହେରଙ୍କ ହୀରାକୁଦ (୨୭.୬.୧୪) ନୀଳକଣ୍ଠ କବିଭୂଷଣଙ୍କ ପ୍ରଧାନ ପାଟ ନିର୍ଝରୀ ବର୍ଣ୍ଣନା (୧୩.୪.୧୨), ସ୍ୱପ୍ନେଶ୍ୱର ଦାଶଙ୍କ ପ୍ରବାଦ ସଂଗ୍ରହ (୨୪.୫.୧୩), ରାଘବ ମିଶ୍ରଙ୍କ ସେ ସିନା ଦରିଦ୍ର (୧୨.୮.୨୨) ମେହେର କବିଙ୍କ ପ୍ରତି (୧୯.୮.୨୨), ଶଙ୍କର ପ୍ରସାଦ ପାଢ଼ୀଙ୍କ ଭାଷା ଆବାହନ, ଦେହୀ ଓ ପ୍ରଦୀପ (୧୫.୨.୧୯) ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଭାରତ ନବ ଜାଗରଣ (୨୨.୨.୧୯) ବିରାଜ ମୋହନ ସେନାପତିଙ୍କ କୃଷିତତ୍ତ୍ୱ (୧୫.୩.୧୯) ଶ୍ୟାମସୁନ୍ଦର ନନ୍ଦଙ୍କ କବିତା (୨.୧୨.୧୮୯୬) ରଚନା ପଦ୍ଧତି (୫.୮.୯୬) କାମପାଳ ମିଶ୍ରଙ୍କ ନବମ ବର୍ଷୀୟ ହିନ୍ଦୁ ବିଧବା (୨୩.୧୨.୧୮୯୬) ସାଧୁଚରଣଙ୍କ ଆତ୍ମିକ କର୍ତ୍ତବ୍ୟ ଓ ଇନ୍ଦ୍ରିୟ ସଂଯମ (୧୪.୯.୧୮୯୨)ରେବା ରାୟଙ୍କ କମଳା (୧୯.୧୦.୧୮୯୨) ଶିଶୁ ହାସ୍ୟ (୨୯.୩.୯୩) କୃଷ୍ଣ ପ୍ରସାଦ ଚୌଧୁରୀଙ୍କ ପୃଥିବୀର ଭବିଷ୍ୟତ ଧର୍ମ, ଆଦର୍ଶ ମନୁଷ୍ୟ (୩୦.୧୦.୯୫), ଓଡ଼ିଆ ଭାଷାର ବର୍ତ୍ତମାନ ଲେଖକ ତାଲିକା (୧୨.୮.୧୯୯୬) ପ୍ରଭୃତି କୃତି ହିତୈଷିଣୀ ପୃଷ୍ଠାରେ ପ୍ରକାଶ ଲଭି ଓଡିଆ ସାହିତ୍ୟକୁ ପରିପୁଷ୍ଟ କରିଥିଲା । ନାରୀ କବି ଅନ୍ନପୂର୍ଣ୍ଣାଙ୍କ ଅନେକ କବିତା ହିତୈଷିଣୀରେ ପ୍ରକାଶିତ ।

ହିତୈଷିଣୀ ପ୍ରକାଶ ସମୟରେ ଅନେକ ନୂତନ ସାଧକ ଗଢ଼ି ଉଠିଥିଲେ । ସେମାନଙ୍କ ଏକାଧିକ ରଚନା ହିତୈଷିଣୀରେ ଉପଲବ୍ଧ । ଏ ସାଧକ ଗଣଙ୍କର ଉନ୍ମେଷ ବିକାଶ ଓ ବିଲୟ ହିତୈଷିଣୀ ସହିତ ସଂଘଟିତ ହୋଇଥିଲା । ହିତୈଷିଣୀ ବ୍ୟତୀତ ଅନ୍ୟ କୌଣସି ପତ୍ର ପତ୍ରିକାରେ ଏ ପର୍ଯ୍ୟାୟର ସାଧକଙ୍କ ରଚନା ପ୍ରାୟତଃ ଦୃଷ୍ଟିଗୋଚର ହୁଏ ନାହିଁ । ଏମାନଙ୍କର ହିତୈଷିଣୀରେ ପ୍ରକାଶିତ ରଚନାର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହେଲା ।

| | ନାମ | ହିତୈଷିଣୀ ସଂଖ୍ୟା | ରଚନାର ଶୀର୍ଷକ |
|---|---|---|---|
| ୧. | ରଘୁମଣି ଦେବ | ୧୬.୫.୧୮୯୩ | ପ୍ରଭାତ ବର୍ଣ୍ଣନା |
| ୨. | ରଘୁନାଥ ଶର୍ମା | ୩.୫.୯୩ | ଶରତ |
| ୩. | ବିଶ୍ୱନାଥ ପାଣିଗ୍ରାହୀ | ୨୦.୯.୯୩ | ବର୍ତ୍ତମାନ ଆନ୍ଦୋଳନ ସମ୍ବନ୍ଧେ ଦୁଇ ଚାରି କଥା । |
| ୪. | ଶ୍ରୀ ଶର୍ମା । | ୩୧.୫.୯୩ | ଜାତିଭେଦ |
| ୫. | ଆର୍ତ୍ତତ୍ରାଣ ଶତପଥି | ୨.୫.୯୪ | ବାଲ୍ୟାବସ୍ଥା |
| | | ୧.୧.୧୯୧୦ | ଉଭଟ କବିତା । |
| ୬. | ରସାନନ୍ଦ ପ୍ରଧାନ | ୧୧.୪.୧୯୦୦ | ବିଧବା ବିବାହ |
| | | ୬.୬.୧୯୦୦ | ତମାଖୁ |
| ୭. | ଅର୍ଜ୍ଜୁନ ଶର୍ମା | ୨୧.୧୦.୧୯୦୦ | ଭାବନା |
| | | ୨୭.୪.୧୯୧୦ | ଶରତ |
| ୮. | ଦୁର୍ଯ୍ୟୋଧନ ନାୟକ | ୧୯.୧୧.୧୯୦୨ | ବଣେଇ ରାଜାଙ୍କ ଆଗମନେ |
| | | ୧୩.୪.୧୯୦୩ | ବର୍ଷାକାଳୀନ ନିଶିଥ ଚିନ୍ତା, ବାଲ୍ୟବିବାହର ଅପକାରିତା |
| ୯. | ବୃନ୍ଦାବନ ନାୟକ | ୨୩.୯.୧୯୦୩ | ଶ୍ରୀରାମ ବନବାସ |
| | | ୨୮.୧୦.୧୧ | ସଦା ପ୍ରଶଂସା |
| | | ୧୮.୧୧.୧୧ | ଅନିତ୍ୟତା |
| | | ୯.୩.୧୨ | ଶୃଗାଳର ବିଚିତ୍ର ଶର୍ତ୍ତ |
| | | ୩୦.୮.୧୩ | ନିତିକୋଷ |
| | | ୧୭.୯.୧୭ | ଗିର୍ବାଣ୍ଣିତ ହସ୍ତୀପ୍ରତି |
| ୧୦. | ବନମାଳୀ ଗୁରୁ | ୧୬.୭.୦୪ | ପ୍ରାର୍ଥନା |
| | | ୩.୭.୦୪ | ପୁଷ୍ପ |
| | | ୩.୯.୦୪ | ବନ୍ଧୁପ୍ରତି |
| | | ୩୦.୯.୧୯୦୫ | ମହତ ବାକ୍ୟ |
| | | ୭.୧୦.୦୫ | ବଂଧୁତା, ପ୍ରେମ |
| | | ୪.୧୧.୦୫ | ବ୍ୟାକୁଳତା |
| | | ୧୮.୧୧.୦୫ | ଧର୍ମ |

| | | | |
|---|---|---|---|
| ୧୧. | କୃଷ୍ଣ ଚନ୍ଦ୍ର ନନ୍ଦ | ୧୬ ୧୨.୦୪ | ସୂଚୀ |
| ୧୨. | ବଳଭଦ୍ର ଶତପଥି | ୯.୯.୦୫ | ବାମଣ୍ଡାରେ ଶିକ୍ଷାବିସ୍ତାର |
| | | ୨୮.୪.୦୬ | କିର୍ତ୍ତୀ (କ୍ରମଶଃ ପ୍ରକାଶିତ) |
| | | ୧୦.୨.୧୨ | ଚିତ୍ର ଦର୍ଶନେ |
| | | ୨୨.୨.୧୭ | ବୀରବାଳା (କ୍ରମଶଃ ପ୍ରକାଶିତ) |
| | | ୧୯.୧.୧୮ | ଯମାଳୟେ ଚିତ୍ର ଦର୍ଶନେ |
| | | ୧୬.୨.୧୮ | ଓଲ |
| ୧୩- | ଦୟାନିଧି ପତି | ୧୭.୬.୧୯୦୫ | ବଡିମା |
| ୧୪. | କରୁଣା କର ସାହୁ | ୧୨.୧୧.୧୯୧୦ | ମନ୍ଦାକିନୀ ଦେବୀଙ୍କ ପରଲୋକ ଗମନ ସମ୍ବନ୍ଧେ |
| | | ୪.୧.୧୩ | ନୂତନ ବର୍ଷ ଆହ୍ୱାନ |
| | | ୧.୩.୧୩ | ଟୀକାୟତଙ୍କ ଶୁଭ ପରିଣୟ |
| | | ୩.୧.୧୪ | ନବବର୍ଷ ଆଗମନ |
| | | ୭.୩.୧୪ | ବାମଣ୍ଡା ରାଜାଙ୍କ ପୌତ୍ରଲାଭ ଉପଲକ୍ଷେ |
| | | ୨.୫.୧୪ | ନବୀନ ଯୁବରାଜଙ୍କ ଆଗମନ ଉପଲକ୍ଷେ |
| | | ୪.୯.୧୫ | ଈଶ୍ୱର ପ୍ରାର୍ଥନା |
| | | ୨୫.୯.୧୫ | ଉତ୍କଳ ପ୍ରକୃତି |
| ୧୫. | ମିଲୁ ଚରଣ ପ୍ରଧାନ | ୧୪.୧.୧୯୦୩ | ଅଭିଷେକୋତ୍ସବ, ନବବର୍ଷ |
| | | ୪.୨.୦୩ | ପ୍ରାର୍ଥନା,ଚିତ୍ତ ପ୍ରତି |
| | | ୧୫.୪.୦୩ | ସୃଷ୍ଟି ରହସ୍ୟ |
| | | ୧୪.୫.୦୩ | ଶମନ ପ୍ରତି |
| | | ୨୮.୫.୧୦ | ହେଲିର ଧୂମକେତୁ |
| | | ୨.୭.୧୦ | ବର୍ଷା କାଳ ବର୍ଣ୍ଣନା |
| | | ୧୨.୧୧.୧୦ | ବାମଣ୍ଡା ଦ୍ୱିତୀୟ ରାଜକୁମାରୀଙ୍କ ସ୍ୱର୍ଗାରୋହଣରେ । |
| ୧୬. | ସତ୍ୟବାଦୀ ପ୍ରଧାନ | ୫.୩.୧୦ | ବାମଣ୍ଡା ଶିକ୍ଷା ସଂପର୍କରେ |
| | | ୨୯.୧୦.୧୦ | ବାଳିକା ଶିକ୍ଷା (କ୍ରମଶଃ ପ୍ରକାଶିତ) |

| | | | |
|---|---|---|---|
| | | ୨.୫.୧୪ | ଆଗମନୋତ୍ସବ |
| ୧୭. | ସତ୍ୟବାଦୀ ବେହେରା | ୧୯.୩.୧୦ | ଶିବ ଦର୍ଶନ ପ୍ରଭାତ |
| | | ୯.୭.୧୦ | ସୂର୍ଯ୍ୟାସ୍ତ |
| | | ୮.୨.୧୩ | ମାନବ ଜୀବନର ଦୁଃଖ ସମସ୍ୟା |
| | | ୧୫.୨.୧୩ | ଶ୍ରୀ ପଞ୍ଚମୀ |
| | | ୧.୩.୧୩ | ଈଶ୍ୱର ଅମୃତ |
| | | ୧୫.୩.୧୩ | ଈଶ୍ୱର ଅମୃତ |
| | | ୨୩.୮.୧୩ | ପ୍ରକୃତ ସୁଖ କେଉଁଠାରେ । |
| ୧୮. | ଚିନ୍ତାମଣି ମିଶ୍ର | ୨୯ ୧୦.୧୦ | ହିନ୍ଦୁ କାହାକୁ ବୋଲାଯାଏ |
| ୧୯. | କୁମୁଦ୍‌ବତୀ ଜେମା | ୧୬.୧୦.୦୯ | ଦୁରାଶା |
| ୨୦. | ଆର୍ତ୍ତତ୍ରାଣ ମିଶ୍ର | ୧୧.୧୨.୦୯ | ଶିକ୍ଷା, ଏହିଭିକ୍ଷା |
| | | ୨୯.୧.୧୦ | ଉଭଟ କବିତା |
| | | ୧୪.୯.୧୦ | ପାପ |
| | | ୨୯.୧୦.୧୦ | ସ୍ୱର୍ଗୀୟ ବାଦ୍ୟ |
| | | ୧୨.୧୧.୧୦ | ବାମଣ୍ଡା, ତାମ୍ବୂଳର ପ୍ରଚାର |
| | | ୧୨.୧୨.୧୦ | କାର୍ତ୍ତିକପୂର୍ଣ୍ଣିମା, ଉଭଟ କବିତା |
| | | ୭.୧.୧୧ | ଶୀତକାଳ |
| | | ୨୪.୬.୧୧ | ସ୍ତ୍ରୀ ଶିକ୍ଷା |
| ୨୧. | ଡମ୍ବରୁ ଦାଶ | ୧୧.୧୨.୦୯ | ବିଷ୍ଣୁ ପଦ |
| ୨୨. | ଆନନ୍ଦ ବେହେରା | ୨୬.୨.୧୦ | ବିଧବା ବିବାହ |
| ୨୩. | ବିଶ୍ୱନାଥ ଶତପଥି | ୧୧.୧୨.୦୯ | ନୀତିବଚନ |
| | | ୮.୧.୧୦ | ନୀତିବଚନ |
| ୨୪. | ବୈରାଗୀ ପଣ୍ଡା | ୪.୧.୧୩ | ଛାତ୍ରଜୀବନ |
| ୨୫ | କୃତାର୍ଥ ପ୍ରଧାନ | ୩୦.୧୧.୧୨ | କୌଣସି ମହାଦ୍ରୁମ ଦର୍ଶନେ<br>କୌଣସି ମଳିନ ପୁଷ୍ପ ଦର୍ଶନେ |
| | | ୧.୧୧.୧୩ | ଈର୍ଷା |
| ୨୬. | ସୁଦର୍ଶନ ମିଶ୍ର | ୩୧.୮.୧୨ | ସ୍ତ୍ରୀ ପୁରୁଷ ବିଚାର (କ୍ରମଶଃ) |
| | | ୨୪.୯.୧୭ | ଶିବସ୍ତବ |
| | | ୮.୧୨.୧୭ | ଦେବୀସ୍ତୁତି |

| | | | |
|---|---|---|---|
| | | ୧୫.୧୨.୧୭ | ରେଲ ଯାନ ପ୍ରତି |
| | | ୨୫୧୦.୧୯ | କଳାହାଣ୍ଡି ରାଜକୁମାର ଜନ୍ମୋପଲକ୍ଷେ |
| | | ୩୧.୧.୨୦ | ଦିବ୍ୟଶଙ୍କର ବିୟୋଗ ଉପଲକ୍ଷେ |
| | | ୬.୫.୨୨ | ମଙ୍ଗଳ ସଙ୍ଗୀତ |
| ୨୭. | ରମାକୁମାରୀ ଦେବୀ | ୧.୩.୧୩ | ଶୁଭ ପରିଣୟ |
| | | ୧୨.୭.୧୩ | କୋକିଳ |
| | | ୨୭.୯.୧୩ | ପ୍ରଧାନ ପାଟ ପ୍ରପାତ |
| ୨୮. | ମଦନ ମୋହନ ଗୁରୁ | ୨୩.୧୨.୧୧ | ଅଭିଷେକୋତ୍ସବ |
| ୨୯. | ଚକ୍ରଧର ସାହୁ | ୨୩.୧୨.୧୧ | ଅଭିଷେକୋତ୍ସବ |
| | | ୨୯.୬.୧୨ | ଶୁଷ୍କପର୍ଣ୍ଣ ଦର୍ଶନେ |
| | | ୭.୯.୧୨ | ବୃକ୍ଷ |
| | | ୨୧.୧୧.୧୨ | ନିର୍ଝରିଣୀ |
| | | ୨୮.୧୨.୧୨ | ସାହିତ୍ୟ |
| | | ୧୧.୧.୧୩ | ଶୀତ |
| | | ୨୫.୧.୧୩ | ପରିଶ୍ରମ |
| | | ୧୦.୫.୧୩ | ରାବଣ ସମୀପେ ଶୁକ ସାରଣର ଉକ୍ତି |
| | | ୯.୮.୧୩ | ଶିଶୁପ୍ରତି |
| | | ୨୩.୮.୧୩ | ଚିନ୍ତାର ଉପକରଣ,ସର୍ବଶୂନ୍ୟ |
| ୩୦. | କୃତ୍ତିବାସ ପଟ୍ଟନାୟକ | ୩୦.୧୨.୧୧ | ଦରବାର |
| ୩୧. | ଦାମୋଦର ମହାପାତ୍ର | ୨୩.୩.୧୨ | ପ୍ରଧାନ ପ୍ରପାତ ପ୍ରତି |
| | | ୧.୨.୧୩ | ପରିଶ୍ରମ |
| | | ୩.୫.୧୩ | ଗ୍ରୀଷ୍ମ |
| | | ୧୬.୮.୧୩ | ପ୍ରାର୍ଥନା |
| | | ୧୪.୧୧.୧୪ | ତୁମ୍ଭେ କି ସେ ଦୟାମୟ ହରି |
| | | ୨୩.୩.୧୮ | ସଚ୍ଚିଦାନନ୍ଦଙ୍କ ସ୍ମୃତି ଉଦ୍ଦେଶ୍ୟେ |
| | | ୪.୫.୧୮ | ଭବ ଦର୍ଶନେ |
| | | ୭.୨.୨୦ | ପ୍ରଜାବତ୍ସଳ ରାଜା ଦିବ୍ୟଶଙ୍କର |
| | | ୨୦.୫.୨୨ | ଶୁଭଗୀତ |
| ୩୨. | ବାଉଧର ପ୍ରଧାନ | ୩୦.୧୨.୧୧ | ପଞ୍ଚମ ଜର୍ଜଙ୍କ ଅଭିଷେକୋତ୍ସବ |

| | | | |
|---|---|---|---|
| ୩୩. | କରୁଣାକର ଗିରି | ୮.୨.୧୩ | ମାଧବ |
| ୩୪. | ଚକ୍ରଧର ପଟ୍ଟନାୟକ | ୨୨.୮.୧୪ | ଚନ୍ଦ୍ରଶେଖର |
| ୩୫. | ରବୀନ୍ଦ୍ର ଦେବ | ୧୯.୧.୧୮ | ବାରକୋଟ ଦୃଶ୍ୟ |
| | | ୧.୬.୧୮ | ଗ୍ରୀଷ୍ମ |
| | | ୨୪.୮.୧୮ | ହସ୍ତୀ ଓ ଶୃଗାଳ |
| | | ୧୪.୯୧୯ | ବର୍ଷା |
| | | ୨୩.୮.୧୯ | ଶରତ |
| ୩୬. | ବାଣେଶ୍ୱର ମହାନ୍ତି | ୨୬.୪.୧୩ | ଭିକ୍ଷା |
| | | ୭.୬.୧୩ | ଦିନକରେ ଘୋମନଗରୀ ସୃଷ୍ଟି ହୋଇନାହିଁ |
| | | ୭.୫.୧୩ | ପ୍ରଧାନ ପାଟ ପ୍ରପାତ |
| | | ୫.୬.୧୫ | ଦିନମଣି |
| | | ୧୨.୬.୧୫ | କାତରୋକ୍ତି |
| | | ୨୨.୧୨.୧୭ | ଆମ୍ନୋକ୍ତି |
| ୩୭. | ଭାଗୀରଥି ମହାପାତ୍ର | ୮.୭.୧୧ | ଭାବାଭିବ୍ୟକ୍ତି |
| ୩୮. | ଲଳିତ ମୋହନ ଦେବ | ୬.୭.୧୧ | ଏକତା |
| ୩୯. | ଦୟାନିଧି ପାଣିଗ୍ରାହୀ | ୧୭.୭.୨୦ | ବିଭୋ |
| | | ୧୪.୮.୨୦ | ବର୍ଷା |
| | | ୨୦.୫.୨୨ | ପୁଷ୍ପ |
| | | ୨୭.୫.୨୨ | ଶ୍ମଶାନ |
| | | ୮.୭.୨୨ | ପ୍ରାନ୍ତର ପଥିକ |
| | | ୫.୮.୨୨ | କମଳିନୀ ଓ କେତକୀ |
| | | ୧୧.୧୧.୨୨ | ନିକୁଞ୍ଜ |
| | | ୧୬.୧୨.୨୨ | ସୂର୍ଯ୍ୟମୁଖୀ |
| | | ୨୪.୨.୨୩ | ପିଞ୍ଜରାବଦ୍ଧ ଶୁକ (କ୍ରମଶଃ) |
| ୪୦. | ବେଣୁଧର ନନ୍ଦ | ୨୧.୯.୧୮ | ନବବର୍ଷ |
| | | ୨୪.୧.୨୦ | ଶୋକଗୀତି |
| | | ୨୦.୫.୨୨ | ଶୁଭଗୀତି |
| | | ୩.୨.୨୩ | ବସନ୍ତ ପଞ୍ଚମୀ |

| | | | |
|---|---|---|---|
| ୪୧. | ଅର୍ଜ୍ଜୁନ ଗଡତିଆ | ୭.୧.୧୧ | ସ୍ୱାଗତ |
| | | ୧୬.୨.୧୮ | ବିବେକ |
| ୪୨. | ନାରାୟଣ ଚନ୍ଦ୍ର ନାୟକ | ୧୨.୮.୧୧ | ଗୃହସ୍ଥାଶ୍ରମ |
| ୪୩. | ଦ୍ୱାରିକା ନନ୍ଦ | ୫.୬.୨୦ | ଭଜନ |
| ୪୪. | ରାମ ନାରାୟଣ ଦ୍ୱିବେଦୀ | ୧୭.୯.୧୭ | ଯତ୍‌କିଞ୍ଚିତ |
| | | ୨୭.୧୨.୧୯ | ଶାନ୍ତି ଗୀତିକା |
| ୪୫. | ଶଶିଭୂଷଣ ଦେବ | ୯.୧୧.୧୨ | ବାରଣାସୀ |
| | | ୧୬.୧୧.୧୨ | ମାତୃଶକ୍ତି |

ତାଲିକା ପ୍ରଦତ୍ତ ସାରସ୍ୱତ ସେବୀ ମଧ୍ୟରୁ କେତେକଙ୍କ ବାମଣ୍ଡା ପ୍ରକାଶିତ 'ଉପହାର' ପତ୍ରିକାରେ ରଚନା ପ୍ରକାଶ ପାଇଥିବାର ଦେଖାଯାଏ । ନଚେତ ଏମାନଙ୍କୁ ମୁଖ୍ୟତଃ ହିତୈଷିଣୀର ଲେଖକ ରୂପେ ସମ୍ମାନ ପ୍ରଦର୍ଶନ କରାଯାଇପାରେ । କୌଣସି ସ୍ୱତନ୍ତ୍ର ଆଭିମୁଖ୍ୟ ବା ବିଶିଷ୍ଟ ଶିଳ୍ପ କୌଶଳର ଅଭାବ ହିଁ ଏ ସମସ୍ତ ରଚନାରେ ପରିଦୃଷ୍ଟ । ସମକାଳୀନ ସାରସ୍ୱତ ଧାରାକୁ ନିଜସ୍ୱ ଶକ୍ତିରେ ଯୋଗଦାନ ହିଁ ଏମାନଙ୍କ ବୈଶିଷ୍ଟ୍ୟ । ଏମିତି ଅନେକ ସ୍ରଷ୍ଟାଙ୍କୁ ହିତୈଷିଣୀ ପୃଷ୍ଠାରୁ ଆବିଷ୍କାର କରାଯାଇପାରେ ।

ହିତୈଷିଣୀରେ ପ୍ରକାଶିତ ରଚନା ଗୁଡିକର ସ୍ୱରୂପ ବିଶ୍ଳେଷଣ ଏକ କଷ୍ଟକର ବ୍ୟାପାର । ପ୍ରଥମତଃ ହିତୈଷିଣୀରେ ଅନେକ ଲେଖକଙ୍କର ପ୍ରାରମ୍ଭିକ କାଳର ରଚନା ପ୍ରକାଶିତ । ତାଙ୍କର କ୍ରମ ବିବର୍ତ୍ତନର ଚିତ୍ର ପ୍ରଦାନରେ ଏହା ଅସମର୍ଥ । ଏଥିରୁ କେବଳ ଉନ୍ମେଷ କାଳୀନ ପ୍ରତିଶ୍ରୁତିକୁ ଅନୁମାନ କରାଯାଇପାରେ । ଦ୍ୱିତୀୟତଃ ହିତୈଷିଣୀ ଏକ ସମ୍ବାଦ ପତ୍ର ହୋଇଥିବାରୁ ଗଣ ଶିକ୍ଷା, ସମାଜ ସଂସ୍କାର ସହିତ ସମାଜର ହୀତ ସାଧନ ହିଁ ଏହାର ମୌଳିକ ଲକ୍ଷ୍ୟ । ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ଦିଗରେ ଏହା ଆଂଶିକ ଉଦାସୀନ । ତୃତୀୟତଃ ହିତୈଷିଣୀର ଅନେକ ମୂଲ୍ୟବାନ ସଂଖ୍ୟା ନଷ୍ଟ ତଥା ଦୁଷ୍ପ୍ରାପ୍ୟ ଯୋଗୁଁ ନିଷ୍କର୍ଷ ପ୍ରଦାନ କରିବା ଏକାନ୍ତ ଭାବେ ଦୋଷ ଶୂନ୍ୟ ହୋଇ ନ ପାରେ । ଏ ତିନୋଟି ବିଷୟକୁ ଗୁରୁତ୍ୱ ପ୍ରଦାନ କରି ଆମେ ନିମ୍ନ ପରିଣତିକୁ ଗ୍ରହଣ କରିପାରିବା । (କ) ହିତୈଷିଣୀର କବିତା ରାଧାନାଥ ସୃଷ୍ଟି କୌଶଳକୁ ପରିପୁଷ୍ଟ କରି ଆଧୁନିକ ରସଚର୍ଯ୍ୟାକୁ ଆଦରି ନେଇଛି । (ଖ) ହିତୈଷିଣୀ ପ୍ରକାଶିତ ପ୍ରବନ୍ଧ, ଆଲୋଚନା, ବାଦାନୁବାଦ ମଧ୍ୟରେ ଏକ ନୂତନ ଆଲୋଚନା ରୀତିର ଓଡ଼ିଆ ସାହିତ୍ୟରେ ଭିତ୍ତି ପତନ ଘଟିଛି । (ଗ) ହିତୈଷିଣୀରେ ପ୍ରକାଶିତ ଗଳ୍ପ ଓ ଭ୍ରମଣ କାହାଣୀ ଏକ ଆଦି ସାହିତ୍ୟର ସୂଚନା ପ୍ରଦାନ କରିଛି ସିନା ଏମାନଙ୍କର ଗୁଣାତ୍ମକ ମାନ ଅତି ସାଧାରଣ ସ୍ତରର । ଗଳ୍ପ ଗୁଡିକ କାହାଣୀର

ଲକ୍ଷ୍ମଣରେଖା ଡେଇଁବାକୁ ସର୍ବଦୌ ଅସମର୍ଥ । ମନୋରଞ୍ଜନ ଓ ନୀତିଶିକ୍ଷା ପ୍ରଦାନ ଏମାନଙ୍କର ଲକ୍ଷ୍ୟ ।

## (ଢ)ପୁସ୍ତକ ସମାଲୋଚନା :

ପୁସ୍ତକ ସମୀକ୍ଷା ପ୍ରସଙ୍ଗରେ ହିତୈଷିଣୀର ଅବଦାନ ସ୍ମରଣ ଯୋଗ୍ୟ । ଅନେକ ପ୍ରବୀଣ ଓ ନବୀନ ସାହିତ୍ୟିକଙ୍କର କୃତିର ବିଶ୍ଳେଷଣ ହିତୈଷିଣୀ ପୃଷ୍ଠାରେ ଦେଖାଯାଏ । ନବୀନ ସାହିତ୍ୟିକ ମାନଙ୍କୁ ଏହା କଦାଚ ନିରୁତ୍ସାହିତ କରିନାହିଁ । ବରଂ ଆଗକୁ ଆଗେଇ ଯିବାକୁ ପ୍ରେରଣା ପ୍ରଦାନ କରିଛି । ହସ୍ତଗତ ତଥ୍ୟ କ୍ରମରେ ହିତୈଷିଣୀରେ ପ୍ରକାଶିତ ପୁସ୍ତକ ସମାଲୋଚନାର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହେଲ ।

| | ହିତୈଷିଣୀ ସଂଖ୍ୟା | ବହିର ନାମ | ରଚକ | ସମୀକ୍ଷକ |
|---|---|---|---|---|
| ୧. | ୧୪.୮.୧୮୮୯ | ଚନ୍ଦ୍ରଭାଗା | ରାଧାନାଥ ରାୟ | ଶ୍ରୀ ବାମଣ୍ଡା |
| ୨. | ୧୦.୨.୧୮୯୨ | ଗୋଧନରକ୍ଷା | ନୀଳମଣି ବିଦ୍ୟାରତ୍ନ | ଗଣେଶ୍ୱର ପଟ୍ଟନାୟକ |
| ୩. | ୧୦.୨.୧୯୮୨ | ବିଷବୈରୀ | ନୀଳମଣି ବିଦ୍ୟାରତ୍ନ | ,, |
| ୪. | ,, | ପାର୍ବତୀ | ରାଧାନାଥ ରାୟ | ନୀଳମଣି ବିଦ୍ୟାରତ୍ନ |
| ୫. | ୨.୩.୧୮୯୨ | ଉତ୍କଳପ୍ରଭାରେ ପ୍ରକାଶିତ | ଗୋବିନ୍ଦଚନ୍ଦ୍ର ମହାପାତ୍ର | ରାଧାନାଥ ରାୟ |
| | | ହିମାଚଳ ଓ ଦୃଶ୍ୟରାଜି | | – |
| ୬. | ୯.୩.୧୮୯୨ | ଗୋଧନରକ୍ଷା | ନୀଳମଣି ବିଦ୍ୟାରତ୍ନ | ରାଧାନାଥ ରାୟ |
| ୭. | ୨୩.୩.୧୮୯୨ | ଉତ୍କଳ ଭ୍ରମଣ | ଫକୀର ମୋହନ | – |
| ୮. | ୨୨.୩.୧୮୯୩ | ଅଂଶୁପା | ଦାମୋଦର ମିଶ୍ର | ରାଧାନାଥ ରାୟ |
| ୯. | ,, | କମଳା | ,, | ,, |
| ୧୦. | ୪.୧୦.୧୮୯୩ | ମୁଁ କାହାର | ,, | -- |
| ୧୧. | ୨୮.୩.୧୮୯୪ | ମାୟାଶବରୀ | ସଚ୍ଚିଦାନନ୍ଦ ଦେବ | -- |
| ୧୨. | ୪.୪.୧୮୯୪ | ଦୁର୍ଗାବତୀ | ଦାମୋଦର ମିଶ୍ର | ଚନ୍ଦ୍ରମୋହନ ମହାରଣା |
| ୧୩. | ୪.୭.୧୮୯୪ | ଅନଙ୍ଗ | ସଚ୍ଚିଦାନନ୍ଦ ଦେବ | – |
| ୧୪. | ୫.୧୨.୧୮୯୪ | ସୁମିତ୍ରା | ଦାମୋଦର ମିଶ୍ର | – |
| ୧୫. | ,, | ଭୀଷ୍ମ | ସଚ୍ଚିଦାନ ଦେବ | – |
| ୧୬. | ,, | ଚନ୍ଦ୍ରଦୂତ | ,, | – |
| ୧୭. | ୨.୧.୧୮୯୫ | ପାରିଜାତମାଳା | ସଂ ସଚ୍ଚିଦାନନ୍ଦ ଦେବ | – |
| ୧୮. | ୨୭.୨.୧୮୯୫ | ତମାଖୁର ଅପକାରିତା | ନୀଳମଣିବିଦ୍ୟାରତ୍ନ | ରାଧାନାଥରାୟ |

| | | | |
|---|---|---|---|
| ୧୯. ୩୧.୭.୧୮୯୫ | ମାତା | ଦାମୋଦର ମିଶ୍ର | କୃଷ୍ଣପ୍ରସାଦ ଚୌଧୁରୀ |
| ୨୦. ୧୮.୯.୧୮୯୫ | ମାତା | ,, | ଭୋଳାନାଥ ସାମନ୍ତରାୟ |
| ୨୧. ୨୩.୧୦୧୮୯୫ | ପ୍ରଧାନପାଟ | ,, | ଚିନ୍ତାମଣି ମହାନ୍ତି |
| ୨୨. ୧୩.୧୧୧୮୯୫ | ତୁଳସୀ ସ୍ତବକ | ରାଧାନାଥ ରାୟ | ଭୋଳାନାଥ ସାମନ୍ତରାୟ |
| ୨୩. ୨୦.୧୧.୧୮୯୫ | କବିତା ମଞ୍ଜରୀ | ଗୋପାଳ ବଲ୍ଲଭ ଦାସ | ଶ୍ରୀ ସମାଲୋଚକ |
| ୨୪. ୨୭.୫.୧୮୯୬ | ରାସ ରହସ୍ୟ | ସଚ୍ଚିଦାନନ୍ଦଦେବ | ଶ୍ରୀ ଭାଗିରଥି ରଥ |
| ୨୫. ୨୨.୭.୧୮୯୬ | ସଙ୍ଗୀତମାଳା | ମଧୁସୂଦନ ରାଓ | ମଧୁସୂଦନ ମିଶ୍ର |
| ୨୬. ୧୫.୭.୧୮୯୬ | ମହାଯାତ୍ରା | ରାଧାନାଥ ରାୟ | – |
| ୨୭. ୨.୯.୧୮୯୬ | ମହାଯାତ୍ରା | ,, | ଭାଗିରଥି ରଥ |
| ୨୮. ୩୦.୯.୧୮୯୬ | ପାରିଜାତମାଳା | ସୁଲକ୍ଷଣା ଦେବୀ | – |
| ୨୯. ୭.୧୦.୧୮୯୬ | ,, | ,, | ଜଗଦାନନ୍ଦ ଦାସ |
| ୩୦. ୨୮.୧୦.୧୮୯୬ | ରାଜନୀତି | ନୀଳମଣି ବିଦ୍ୟାରତ୍ନ | ଭାଗିରଥି ରଥ |
| ୩୧. ,, | ରାଜଧର୍ମ | ,, | ,, |
| ୩୨. ୧୧.୧୧.୧୮୯୬ | ଜିହ୍ୱାସୁଖ ଓ ଜୀବନ | ,, | ଶ୍ରୀ ଜ--ଦାସ |
| ୩୩. ,, | ନୂତନ ସଙ୍ଗୀତ | ମଧୁସୂଦନ ରାଓ | – |
| ୩୪. ୧୮.୧୧.୧୮୯୬ | ମହାଯାତ୍ରା | ରାଧାନାଥ ରାୟ | ଭୋଳାନାଥ ସାମନ୍ତରାୟ |
| ୩୫. ,, | ନୀତିବିଜ୍ଞାନ | ରାମକୃଷ୍ଣ ସାହୁ | – |
| ୩୬. ୯.୧୨.୧୮୯୬ | ଦାକ୍ଷିଣାତ୍ୟ ଭ୍ରମଣ | ଶଶିଭୂଷଣ ରାୟ | ଗଙ୍ଗାଧର ମେହେର |
| ୩୭. ୨୩.୧୨.୧୮୯୬ | ବାମଣ୍ଡା ଭୂଗୋଳ ପାଠ | ଜଗନ୍ନାଥ ପଟ୍ଟନାୟକ | – |
| ୩୮. ୩.୩.୧୮୯୭ | ରାଜଧର୍ମ | ନୀଳମଣି ବିଦ୍ୟାରତ୍ନ | – |
| ୩୯. ୧୬.୬.୧୮୯୭ | ଭିକ୍ଟୋରିଆ ଚରିତ | ,, | – |
| ୪୦.୨୯.୮.୧୯୦୦ . | କୁମାରୀ ଶିକ୍ଷା | ସଚ୍ଚିଦାନନ୍ଦ ଦେବ | – |
| ୪୧. ୩୦.୧.୧୯୦୧ | ଗୁଣାଦର୍ଶ | ବୁଦ୍ଧିନାଥ ଶର୍ମା | ଦାମୋଦର ମିଶ୍ର |
| ୪୨. ୨୬.୫.୧୯୦୧ | ଲେଖାବଳୀ | ରାଧାନାଥ ରାୟ | – |
| ୪୩. ୫.୬.୧୯୦୧ | ନିର୍ଝରିଣୀ | ନନ୍ଦ କିଶୋର ବଳ | – |
| ୪୪. ୧୨.୨.୧୯୦୨ | ଜୀବନ ଦର୍ପଣ | ବ୍ରଜବନ୍ଧୁ ମିଶ୍ର | – |
| ୪୫. ୮.୧୦.୧୯୦୨ | ସିନ୍ଧୁ ମନ୍ଥନ | ଦୀନବନ୍ଧୁ ପଟ୍ଟନାୟକ | – |
| ୪୬. ୧୮.୩.୧୯୦୩ | ଋତୁ ସଂହାର | ବଳଭଦ୍ର ଦେବ | – |
| ୪୭. ୮.୪.୧୯୦୩ | କୂଟନୀତି ପରାଗ | ବିଦ୍ୟାରତ୍ନ | – |
| ୪୮. ୨୨.୪.୧୯୦୩ | ଋତୁସଂହାର | ବଳଭଦ୍ରଦେବ | ସୋମନାଥ ଷଡ଼ଙ୍ଗୀ |

| | | | |
|---|---|---|---|
| ୪୯. ୨.୫.୧୯୦୩ | ହେମଲତା | ରତ୍ନାକର ଶର୍ମା | – |
| ୫୦. ୩.୬.୧୯୦୩ | ପରମାୟୁ ପ୍ରହରୀ | ନୀଳମଣି ବିଦ୍ୟାରତ୍ନ | – |
| ୫୧. ୧୩.୪.୧୯୦୪ | ଆର୍ଯ୍ୟମିତ୍ର | ବନମାଳି ଗୁରୁ | – |
| ୫୨. ୧୮.୬.୧୯୦୪ | ଆର୍ଯ୍ୟମିତ୍ର | ,, | ସୋମନାଥ ଶତପଥି |
| ୫୩. ୨୫.୨.୧୯୦୫ | ପଦ୍ମାବତୀ ପରିଣୟ | ଭାଗିରଥି ରଥ | ରାଧାନାଥ ରାୟ |
| ୫୪. ୯.୪.୧୯୦୫ | ହେମଲତା | ରତ୍ନାକର ଶର୍ମା | ଦାମୋଦର କର |
| ୫୫. ୧୫.୪.୧୯୦୫ | ଅଳବିଳାପ | ,, | – |
| ୫୬. ୧୨.୮.୧୯୦୫ | ,, | ,, | ଦାମୋଦର କର |
| ୫୭. ୨୩.୯.୧୯୦୫ | ସକଳ ଅନିତ୍ୟ | ,, | – |
| ୫୮ ୧୮.୧୧,୧୯୦୫ | ମନୋରମା (୧ମବର୍ଷ/୨ ଭାଗ,ବାରିପଦା) | | ବାଞ୍ଛାନିଧି ପଣ୍ଡା |
| ୫୯. ୧୦.୨.୧୯୦୬ | ଉତ୍କଳଦର୍ପଣ (ସଂବଲପୁର) | | କାଳୀଚରଣ ଦ୍ୱିବେଦୀ |
| ୬୦. ୧୬.୩.୧୯୦୬ | ପଦ୍ମାବତୀ ପରିଣୟ | ଭାଗରଥି ରଥ | – |
| ୬୧. ,, | ଅଳଙ୍କାର ମୀମାଂସା | ,, | – |
| ୬୨. ୧୮.୯.୧୯୦୯ | ପ୍ରେମ ସ୍ତବକ | ସଚ୍ଚିଦାନନ୍ଦ ଦେବ | – |
| ୬୩. ୨.୧୦.୧୯୦୯ | ପ୍ରେମ ସ୍ତବକ | | ସୋମନାଥ ଶତପଥି |
| ୬୪. ୧୨.୧୧.୧୯୧୦ | ଚିତ୍ର | ,, | ମଧୁସୂଦନ ମିଶ୍ର |
| ୬୫. ୨୬.୧୧.୧୯୧୦ | ତୀର୍ଥଯାତ୍ରା | ଶ୍ରୀବତ୍ସପଣ୍ଡା | ବୃନ୍ଦାବନ ନାଥଶର୍ମା |
| ୬୬. ୩.୧୨.୧୯୧୦ ଓ ୧୦.୧୨.୧୯୧୦ | ବୈଦିକ ପ୍ରକୃତି | ସଚ୍ଚିଦାନନ୍ଦ ଦେବ | ମଧୁସୂଦନ ମିଶ୍ର |
| ୬୭. ୮.୬.୧୯୧୧ | କବିତା କୁସୁମ | ଲୋଚନ ପ୍ରସାଦ ପାଣ୍ଡେୟ | କରୁଣାକର ସାହୁ |
| ୬୮. ୧୯.୮.୧୯୧୧ | ବୈଦିକପ୍ରକୃତି | ସଚ୍ଚିଦାନନ୍ଦ ଦେବ | ରାମବ୍ରହ୍ମ ସାହୁ |
| ୬୯. ୯.୯.୧୯୧୧ | ପ୍ରକୃତି | ,, | ଭୋଳାନାଥ ସାମନ୍ତରାୟ |
| ୭୦. ୮.୬.୧୯୧୨ | ମଦିରା ମହାତ୍ମ୍ୟ | ନୀଳମଣି ବିଦ୍ୟାରତ୍ନ | – |
| ୭୧. ୨୨.୬.୧୯୧୨ | ଚଟଣୀ ସଂଗ୍ରହ | ,, | – |
| ୭୨. ,, | ସମୁଦ୍ର ଯାତ୍ରା ବିଚାର | ,, | – |
| ୭୩. ୧୬.୮.୧୯୧୨ | ଚା ପାନ | ତ୍ରିପତି ଗାୟକରତ୍ନ | – |
| ୭୪. ୩୧.୮.୧୯୧୨ | ସମାଧିକ୍ଷେତ୍ର | ଚିନ୍ତାମଣି ମହାନ୍ତି | ନୀଳମଣି ବିଦ୍ୟାରତ୍ନ |
| ୭୫. ୨.୧୧.୧୯୧୨ | ପୂଜାଫୁଲ | ଫକୀରମୋହନ ସେନାପତି | ବୃନ୍ଦାବନ ନାଥଶର୍ମା |
| ୭୬. ୨୬.୪.୧୯୧୩ | ଶିଶୁ ଚିକିତ୍ସା | ନୀଳମଣି ବିଦ୍ୟାରତ୍ନ | କୃତ୍ତିବାସ ସାହିତ୍ୟ ଭୂଷଣ |
| ୭୭. ୧୦.୫.୧୯୧୩ | ବାଳିକା ବଂଧୁ | ନୀଳମଣି ବିଦ୍ୟାରତ୍ନ | – |

| | | | |
|---|---|---|---|
| ୭୮. ,, | ସମୟର ସଦ୍‌ବ୍ୟବହାର | ,, | କୃତିବାସ ସାହିତ୍ୟ ଭୂଷଣ |
| ୭୯. ୨୩.୮.୧୯୧୩ | ପରିଶ୍ରମ | ଦୀନବନ୍ଧୁ ଗଡନାୟକ | ନୀଳମଣି ବିଦ୍ୟାରତ୍ନ |
| ୮୦. ୬.୯.୧୯୧୩ | ଜୀବନତରଙ୍ଗ | ,, | ଗଙ୍ଗାଧର ମେହେର |
| ୮୧. ,, | ଧର୍ମକର୍ମ | ,, | – |
| ୮୨. ୧୫.୧୧.୧୯୧୩ | ସମୁଦ୍ର ଯାତ୍ରା ବିଚାର | ନୀଳମଣି ବିଦ୍ୟାରତ୍ନ | ଚିନ୍ତାମଣି ଶାସ୍ତ୍ରୀ |
| ୮୩ ,, | ଭୀଷ୍ମଶରଶଯ୍ୟା | ବ୍ରଜବନ୍ଧୁ ମିଶ୍ର | – |
| ୮୪. ୧୪.୨.୧୯୧୪ | ସର୍ପ ବିଷ ଚିକିତ୍ସା | ନୀଳମଣି ବିଦ୍ୟାରତ୍ନ | – |
| ୮୫. ,, | ମଦନ ବିନୋଦ ଧାତୁପୁଷ୍ଟିର ଉପାୟ | ତ୍ରିପତି ଗାୟକ ରତ୍ନ | – |
| ୮୬. ୪.୪.୧୯୧୪ | ସ୍ୱର୍ଗନରକ ବିଚାର | ନୀଳମଣି ବିଦ୍ୟାରତ୍ନ | – |
| ୮୭. ,, | ନାରୀଶିକ୍ଷା | ଦୀନବଂଧୁ ଗଡନାୟକ | ଗଙ୍ଗାଧର ମେହେର |
| ୮୮. ,, | ଅବକାଶ ମଞ୍ଜରୀ | ସୁଲୋଚନା ଦେଇ | ଚିନ୍ତାମଣି ମହାନ୍ତି<br>ଶଶିଭୂଷଣ ରାୟ |
| ୮୯. ୩୦.୫.୧୯୧୪ | ଶିରୋରୋଗ ଚକିତ୍ସା | ନୀଳମଣି ବିଦ୍ୟାରତ୍ନ | – |
| ୯୦. ,, | ବିବିଧ ଚିକିତ୍ସା | ,, | – |
| ୯୧. ୧୮.୭.୧୯୧୪ | ବନଜ ଖାଦ୍ୟ | ,, | – |
| ୯୨. ୧.୮.୧୯୧୪ | ଉତ୍କଳ କମଳା | ଚିନ୍ତାମଣି ମହାନ୍ତି | ବୃନ୍ଦାବନ ନାଥଶର୍ମା |
| ୯୩. ୧୨.୧୨.୧୯୧୪ | ସାତଦେବୀଙ୍କ ପାତାଳ ପ୍ରବେଶ | ନାରାୟଣ ଚନ୍ଦ୍ରଦାସ | ଶ୍ରୀ ସମାଲୋଚକ |
| ୯୪. ୨୬.୧୨.୧୯୧୪ | ବାଳିକା ସଖା | ନୀଳମଣି ବିଦ୍ୟାରତ୍ନ | – |
| ୯୫. ୨୩.୧.୧୯୧୫ | ପାରିଜାତ | ରାଜୀବ ଲୋଚନ ଦେବ | ଫକୀର ମୋହନ |
| ୯୬. ୧୩.୩.୧୯୧୫ | ସୁନାମୁଣ୍ଡ | ବଳଭଦ୍ର ଦେବ | ନୀଳମଣି ବିଦ୍ୟାରତ୍ନ |
| ୯୭. ୨୨.୫.୧୯୧୫ | ନୀତି ସୁଧାକର | ନୀଳମଣି ବିଦ୍ୟାରତ୍ନ | – |
| ୯୮. ୩୧.୭.୧୯୧୫ | ଭୀଷ୍ମଶରଶଯ୍ୟା | ବ୍ରଜବନ୍ଧୁ ମିଶ୍ର | – |
| ୯୯. ,, | ଜୀବନବନ୍ଧୁ | ନୀଳମଣି ବିଦ୍ୟାରତ୍ନ | – |
| ,, | – | ତ୍ରିପତି ଗାୟକ ରତ୍ନ | – |
| ୧୦୦. ,, | ଉତ୍କଳ ଲକ୍ଷ୍ମୀ | ଗଙ୍ଗାଧର ମେହେର | ବୃନ୍ଦାବନ ନାଥଶର୍ମା |
| ୧୦୧. ୨୭.୪.୧୯୧୮ | ରାମ ବିଳାପ | ଚନ୍ଦ୍ରଚୂଡାମଣି<br>ହରିଚନ୍ଦନ ଜଗଦେବ | ଲିଙ୍ଗରାଜ ପାଣିଗ୍ରାହୀ<br>– |
| ୧୦୨. ୨୨.୬.୧୯୧୮ | ଶିମଳା ଦର୍ଶନ | ଶ୍ରୀପତି ମିଶ୍ର | – |
| ୧୦୩. ୩.୮.୧୯୧୮ | ମହୋଦଧି | ଚିନ୍ତାମଣି ମହାନ୍ତି | ଲିଙ୍ଗରାଜ ପାଣିଗ୍ରାହୀ |
| ୧୦୪. ୧୪.୧.୧୯୧୯ | ବ୍ରାହ୍ମଣାନାଂ ସନ୍ଧ୍ୟାପଦ୍ଧତି | ଫକୀର ମୋହନ | ବାଳକୃଷ୍ଣ ଷଡଙ୍ଗୀ |

| | | | |
|---|---|---|---|
| ୧୦୫.୧୮.୧.୧୯୧୯ | ଅର୍ଘ୍ୟଥାଳୀ | ଗଙ୍ଗାଧର ମେହେର | – |
| ୧୦୬.୧.୨.୧୯୧୯ | ପ୍ରତିଲେଖ | ଚିନ୍ତାମଣି ମହାନ୍ତି | – |
| ୧୦୭.୧୫.୩.୧୯୧୯ | ମହେନ୍ଦ୍ର କାବ୍ୟ | ,, | – |
| ୧୦୮.୧୫.୬.୧୯୧୯ | ପତ୍ରପୁଷ୍ପ | ,, | – |
| ୧୦୯.୧୫.୧୧.୧୯୧୯ | କଳିକାଞ୍ଜଳି | ଲିଙ୍ଗରାଜ ପାଣିଗ୍ରାହୀ | ମୋହନଚନ୍ଦ୍ର ପାଣି |
| ୧୧୦.୨୯.୧୧.୧୯୧୯ | ଧନମାଳୀ | ମାଧବଚନ୍ଦ୍ର ମିଶ୍ର | ଲିଙ୍ଗରାଜ ପାଣିଗ୍ରାହୀ |
| ୧୧୧.୨୬.୮.୧୯୨୨ | ପାଶ୍ଚାତ୍ୟ ଭ୍ରମଣ | ସୁରଙ୍ଗୀ ଅଧୀଶ୍ୱର | – |
| ୧୧୨.୨.୧୨.୧୯୨୨ | ସଙ୍ଗୀତ କୁଞ୍ଜଲତା | ଭାଗିରଥି ଗୌନ୍ତିଆ | ଲିଙ୍ଗରାଜ ପାଣିଗ୍ରାହୀ |

ହିତୈଷିଣୀ ପ୍ରକାଶିତ ପୁସ୍ତକ ଆଲୋଚନାର ଏହା ଏକ ସ୍ୱୟଂ ସଂପୂର୍ଣ୍ଣ ତାଲିକା ନୁହେଁ ବରଂ ଏକ ମୋଟାମୋଟି ଚିତ୍ର । ଏଥିରୁ ହିତୈଷିଣୀର ସମୃଦ୍ଧ ସମାଲୋଚନା ଧାରାକୁ ଠାବ କରାଯାଇପାରେ । ହିତୈଷିଣୀ ୧୯୦୯ ଠାରୁ ପ୍ରତିମାସ "ମାସିକ ସାହିତ୍ୟ ଆଲୋଚନା" ଶୀର୍ଷକରେ ଉତ୍କଳ ସାହିତ୍ୟ, ମୁକୁର, ଆଶା, ପ୍ରଭୃତି ପ୍ରତିକାର ଗଠନମୂଳକ ସମାଲୋଚନା ପ୍ରକାଶ ପାଉଥିଲା । ବିଭିନ୍ନ ସମୟରେ ପ୍ରକାଶିତ ଅନ୍ୟାନ୍ୟ ପତ୍ରିକାର ଆବିର୍ଭାବକୁ ସ୍ୱାଗତ ଏବଂ ପତ୍ରିକା ପ୍ରକାଶନର ଉଚିତ ମାର୍ଗ ନିର୍ଦ୍ଦେଶ କରାଯାଉଥିଲା । ଏ ସମସ୍ତ ଅନ୍ତରାଳରେ ଏକ ସମୃଦ୍ଧ ସାହିତ୍ୟ ଗଠନ ସର୍ବୋପରି ମହତ୍ତର ସମାଜ ଗଠନର ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ରହିଥିଲା ।

## (ଚ) ହିତୈଷିଣୀ ପୃଷ୍ଠ ପୀଠିକାରେ ପ୍ରକାଶିତ ପତ୍ରିକା ସମୂହର ସ୍ୱରୂପ ବିଶ୍ଳେଷଣ :

ହିତୈଷିଣୀ ପ୍ରକାଶନ ସହିତ ପଶ୍ଚିମ ଓଡ଼ିଶାର ସାହିତ୍ୟ-ସଂସ୍କୃତିର ଧାରା ଶତଗୁଣିତ ହୋଇଥିଲା । ହିତୈଷିଣୀ ଅନ୍ତରାଳରେ ଯେମିତି ଶତାଧିକ କବି ଲେଖକ ସୃଷ୍ଟି ହେଲେ ସେମିତି ଅଜସ୍ର ପତ୍ରିକା ପ୍ରକାଶର ଉଦ୍ୟମ ମଧ୍ୟ ଦୃଷ୍ଟିଗୋଚର ହୁଏ । ଏ ମଧ୍ୟରୁ କିଛି ଉଦ୍ୟମ ସାର୍ଥକ ହୋଇଛି କିଛି ଉଦ୍ୟମ ଉନ୍ମେଷ ଲଭି ବିକଶିତ ହୋଇପାରିନାହିଁ, କିଛି ଅଳ୍ପାୟୁ ହୋଇଛି । ଏ ଉଦ୍ୟମ ସମୂହର ଭିତ୍ତିଭୂମି ଓ ପ୍ରକାଶନର ସାମଗ୍ରିକ ବିବରଣୀର ସୂକ୍ଷ୍ମ ପର୍ଯ୍ୟାଲୋଚନା ହିଁ ଏ ପ୍ରସଙ୍ଗରେ କର୍ତ୍ତବ୍ୟ ।

ହିତୈଷିଣୀ ସହିତ ବାମଣ୍ଡାରେ ଏକ ଉଚ୍ଚକୋଟୀର ସାରସ୍ୱତ ବାତାବରଣ ସୃଷ୍ଟି ଲଭି ବିଜୁଳି, ଆଲୋଚନା, ଉତ୍କଳ ମଧୁପ, ଉପହାର, ଶଂଖ ପରି ପତ୍ରିକାକୁ ଜନ୍ମ ଦେଇଥିଲା । ସଂବଲପୁରରୁ ଉତ୍କଳଦର୍ପଣ, ଉତ୍କଳ ସେବକ, ଓ ହୀରାଖଣ୍ଡ ପ୍ରକାଶ ଲଭିଥିଲା । ତାଳଚେରରୁ

ଗଡଜାତ ବାସିନୀ ସମ୍ବାଦ ପତ୍ରର ଆବିର୍ଭାବ ଘଟିଥିଲା । ଏ ପତ୍ରିକା ସମୂହ ପରୋକ୍ଷରେ ବା ପ୍ରତ୍ୟକ୍ଷ ଭାବେ ହିତୈଷିଣୀର ସୃଷ୍ଟି କୌଶଳ ଦ୍ୱାରା ପ୍ରଭାବିତ ।

## ୧ : ବିଜୁଳି :

ଲାଲା ରାମନାରାୟଣ ରାୟଙ୍କ "ଉତ୍କଳ ପ୍ରଭା" ରେ ପ୍ରକାଶିତ 'କବି ଉପେନ୍ଦ୍ରଭଞ୍ଜ' ଶୀର୍ଷକ ପ୍ରବନ୍ଧ ଉପରେ ଓଡ଼ିଆ ସାହିତ୍ୟରେ ବିତର୍କର ଝଡ଼ ସୃଷ୍ଟି ହୁଏ । ଫଳରେ ଦୀପିକା ଆନୁକୂଲ୍ୟରେ 'ଇନ୍ଦ୍ରଧନୁ'୧୮୯୩ ଅଗଷ୍ଟ-୧୬ ତାରିଖ କଟକରୁ ପ୍ରକାଶ ପାଏ । ଏହାକୁ ବିରୋଧ କରି ହିତୈଷିଣୀର ଆନୁକୂଲ୍ୟରେ 'ବିଜୁଳି' ୧୮୯୩ ସେପ୍ଟେମ୍ବର-୬ ତାରିଖ ବେଳକୁ ପ୍ରକାଶ ପାଇଲା *(୧୩୮)* ଅକ୍ଟୋବର ୧୯୯୪ ସୁଦ୍ଧା ବିଜୁଳିର ୧୪ଟି ସଂଖ୍ୟା ପ୍ରକାଶ ପାଇ ଏହାର ପ୍ରକାଶନ ବନ୍ଦ ହୋଇଥିଲା । ବିଜୁଳିର ସଂପାଦକ ଥିଲେ ଦାଶରଥି ରାଉତ ଏବଂ ମେନେଜର ଥିଲେ ଦାମୋଦର ମିଶ୍ର । ବିଜୁଳି-ଇନ୍ଦ୍ରଧନୁ କଳହ ଶୀର୍ଷକରେ ଏହାର ଅବଦାନ ବିଶ୍ଳେଷିତ ହୋଇଛି ।

## ୨ : ଆଲୋଚନା :

୧୮୯୦ ଖ୍ରୀରେ ବାମଣ୍ଡାରେ ଆଲୋଚନା ସଭା ପ୍ରତିଷ୍ଠିତ ହୁଏ । ସଚ୍ଚିଦାନନ୍ଦ ଦେବଙ୍କ ସଭାପତିତ୍ୱରେ ଜଳନ୍ଧର ଦେବଙ୍କ ସଂପାଦକତ୍ୱରେ ଏହା ସରଗରମ ହୋଇଉଠେ । ଏହି ଅନୁଷ୍ଠାନର ମୁଖପତ୍ର ରୂପେ "ଆଲୋଚନା" ପତ୍ରିକା ୧୯୦୦ ମାର୍ଚ୍ଚରେ ବାମଣ୍ଡା ରାଜକୁମାର ସ୍କୁଲର ପ୍ରଧାନ ଶିକ୍ଷକ ଯୋଗେଶ ଚନ୍ଦ୍ର ଦାସଙ୍କ ପୂର୍ଣ୍ଣ ସାହାଯ୍ୟରେ ପ୍ରକାଶ ଲଭେ । ଚବିଶ ପୃଷ୍ଠାର ଏ ପତ୍ରିକାର ଡାକ ମାସୁଲ ସମେତ ବାର୍ଷିକ ମୂଲ୍ୟ ସର୍ବସାଧାରଣଙ୍କ ପାଇଁ ଏକ ଟଙ୍କା ମାତ୍ର ରଖା ଯାଇଥିଲା । ଏହାର ସଂପାଦନା କାର୍ଯ୍ୟ ଜଳନ୍ଧର ଦେବ ନିର୍ବାହ କରୁଥିଲେ । *(୧୩୯)* ଏ ମାସିକ ପତ୍ରଟିର ଆଭିମୁଖ୍ୟ ଥିଲା ପ୍ରବନ୍ଧ ସାହିତ୍ୟର ଉନ୍ନତି ଏବଂ ଉତ୍କଳ ଶିକ୍ଷିତ ଲୋକମାନଙ୍କ ରଚନା ଶିକ୍ଷାରେ ସହାୟତା କରିବା । ପତ୍ରିକାଟି ସାମାଜ ନୀତି, ବିଜ୍ଞାନ, ସାହିତ୍ୟ, ଚିକିତ୍ସା ପ୍ରଭୃତି ହିତକର ବିଷୟରେ ଆଲୋଚନାକୁ ପ୍ରଶ୍ରୟ କରୁଥିଲା । ଏହାର ଆଦର୍ଶଥିଲା -

"ସ୍ୱ ମାତୃ ଭାଷା ବିଷଦୀ ଭବନ୍ତୁ
ତ୍ୱୟୈବ ହୃଷ୍ଟତ୍ୱଥ ବନ୍ଧୁ ବର୍ଗାଃ
ନାନା ପ୍ରବନ୍ଧାନ୍ ପରିତୋ ବିଭାଜ୍ୟ
ବୟଂ କୃତାର୍ଥାଃ ସତତଃ ଭବାମ ।"

ବାମଣ୍ଡା ଜଗନ୍ନାଥ ବଲ୍ଲଭ ପ୍ରେସର ସେକ୍ରେଟାରୀ ବୃନ୍ଦାବନ ଚନ୍ଦ୍ରଦେବ ଆଶାତୀତ ସୁଲଭ

ଦରରେ ପ୍ରତିକାଟି ମୁଦ୍ରଣ କରୁଥିଲେ । *(୧୪୦)* ପତ୍ରିକାଟି କିଛି ସଂଖ୍ୟା ପ୍ରକାଶ ପାଇ ବିଲୟ ଭଜିଥିଲା ।

## ୩ଃ ଉତ୍କଳ ମଧୁପ :

୧୯୦୦ ଜୁନ୍‌ରେ ବିଦ୍ୟାରତ୍ନଙ୍କ ସଂପାଦନାରେ ବିବିଧ ବିଷୟକ ପତ୍ରିକା "ଉତ୍କଳ ମଧୁପ" ବାମଣ୍ଡା ସୁଚ୍ଚଳ ପ୍ରେସରୁ ପ୍ରକାଶ ଲଭିଥିଲା । ମଧୁପର ଆର୍ବିଭାବରେ ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ଆନନ୍ଦ ଲହରୀ ଖେଳି ଯାଉଥିଲା । ନିଜର ଭଗିନୀକୁ ହିତୈଷିଣୀ ଉଦାତ୍ତ କଣ୍ଠରେ ସ୍ୱାଗତ କରିଥିଲା । "ଯେଉଁ ମାନଙ୍କର ନାନାବିଧ ପୁସ୍ତକ ପତ୍ରିକା ପାଠ କରିବାର ସମୟ ବା ସୁବିଧା ନାହିଁ ସେମାନେ ଏହି ପତ୍ରିକା ପାଠକଲେ ବହୁ ପରିମାଣରେ ଉପକୃତ ହୋଇପାରିବେ ସନ୍ଦେହ ନାହିଁ । ଉତ୍କଳର ହିତ କାମନାରେ ଏହି ପତ୍ରିକା ପ୍ରକାଶ କରିଥିବା ହେତୁ ପରିଚାଳକ ମାନଙ୍କୁ ଧନ୍ୟବାଦ ପ୍ରଦାନ କରି ପତ୍ରିକାର ଦୀର୍ଘ ଜୀବନ କାମନା କରୁଅଛି ।" *(୧୪୧)*

ମଧୁପ ବିବିଧ ବିଷୟକ ପତ୍ର ଓ ସମାଲୋଚନା ରୂପେ ନିଜର ଆଭିମୁଖ୍ୟ ପ୍ରକାଶ କରିଥିଲା । ଏହାର କାର୍ଯ୍ୟାଧକ୍ଷ ଥିଲେ ରସାନନ୍ଦ ପ୍ରଧାନ । ପତ୍ରିକାର କଳେବର ରଏଲ ଆଠପେଜି ଏକଫର୍ମା ମୂଲ୍ୟ ମାସୁଲ ସମେତ ଏଗାର ଅଣା ମାତ୍ର । ଏହାର ପ୍ରଥମ ସଂଖ୍ୟାର ପ୍ରଚ୍ଛଦରେ ପ୍ରକାଶକାଳ, ପତ୍ରିକାର ନାମ, ସଂପାଦକ, କାର୍ଯ୍ୟାଧକ୍ଷଙ୍କ ନାମ ସହ ସୂଚୀପତ୍ର ପ୍ରଦତ୍ତ ହୋଇଛି । ପ୍ରଚ୍ଛଦର ଭିତର ପାଖରେ ନିୟମାବଳୀ ପ୍ରଦତ୍ତ । ମଧୁପର ପ୍ରଥମ ପୃଷ୍ଠାରେ ନିମ୍ନ ଶ୍ଳୋକଟି ନାନ୍ଦୀଶ୍ଳୋକ ରୂପେ ମୁଦ୍ରିତ-

"ଅନନ୍ତ ଶାସ୍ତ୍ରଂ ବହୁବେଦିତବ୍ୟଂ ସ୍ୱଳ୍ପଶ୍ଚକାଲୋ ବହବଶ୍ଚବିଘ୍ନାଃ

ଯତ୍ ସାରଭୁତଂ-ମଧୁପ ସ୍ତଦ ସ୍ୱାଦ ଗୃହ୍ଣାଦି ପୁଷ୍ପାଦିବ ପୁଷ୍ପସାର"

ଏହାର ତୃତୀୟ ସଂଖ୍ୟାଠାରୁ ରାଧାନାଥଙ୍କ ମନ୍ତବ୍ୟ "ଜ୍ଞାନର ପେଡା ସଭିଙ୍କି ଲୋଡା, ସଭିଏଁ ପାଇବେ ଥୋଡା ଥୋଡା" କୁ ଉପରୋକ୍ତ ଶ୍ଳୋକ ସହ ମୁଦ୍ରିତ କରାଯାଉଥିଲା ।

ମଧୁପ ଥିଲା ହିତୈଷିଣୀର ସଂକ୍ଷିପ୍ତ ରୂପ । ସେଥିରେ ଶିକ୍ଷଣୀୟ ସାର ବସ୍ତୁ ଗୁଡିକ ପ୍ରଦତ୍ତ ହେଉଥିଲା । ନାମାବଳୀ, ଜୀବନର ଦଶନିୟମ, କୃଷିତତ୍ତ୍ୱ, ଚକ୍ଷୁରଭାଷା, ସହଜଚିକିତ୍ସା, ବିଚିତ୍ର ସଂଗ୍ରହ, କୌତୁକ ପ୍ରସଙ୍ଗ, ଉପାସନାର ଆବଶ୍ୟକତା, ଉଦାହରଣ ଶ୍ଳୋକମାଳା, ପ୍ରବାଦ ସଂଗ୍ରହ, ଦେଶ ବିଦେଶର ସଂକ୍ଷିପ୍ତ ସଂବାଦ ପ୍ରଭୃତି ଜ୍ଞାତବ୍ୟ ତଥ୍ୟ ମଧୁପରେ ମୁଦ୍ରିତ ହେଉଥିଲା । ବୃହତ୍ତର ପାଠକ ଗୋଷ୍ଠୀର ହିତ ସାଧନ ହିଁ ମଧୁପର ଲକ୍ଷ୍ୟ । ବିଭିନ୍ନ ସଂଖ୍ୟାରେ ବିଷୟ ସଜ୍ଜାରେ ବୈଚିତ୍ର୍ୟ ଲକ୍ଷଣୀୟ । ମଧୁପର ଲକ୍ଷ୍ୟକୁ ବିଦ୍ୟାରତ୍ନ କବିତା ମାଧମରେ ସ୍ପଷ୍ଟ କରନ୍ତି ।

''ନାନାବିଧ ଶ୍ରେଷ୍ଠ ଗ୍ରନ୍ଥ ଆଲୋଡନ
ବିବିଧ ଭାଷାର ପତ୍ରିକା ପଠନ
କଲେ ଯାହା ଲାଭ ହେବ ସାରଧନ
ବାଣ୍ଟିବ ମଧୁପ ସ୍ୱଦେଶ ହିତେ;
ଦେଶେ ଅଛି ପୁରି ଗ୍ରନ୍ଥ କୋଟି କୋଟି
ପାଠେ ନ ଅଣ୍ଟିବ ଏ ଜୀବନ ଗୋଟି
ଗ୍ରନ୍ଥ ପାଠଫଳ ଯାହା ମୋଟାମୋଟି
କ୍ରମେ ଭେଟି ଦେବି ସହର୍ଷ ଚିତ୍ତେ ।'' *(୧୪୨)*

ମଧୁପ ୧୯୦୨ ଜାନୁୟାରୀ ପର୍ଯ୍ୟନ୍ତ ପ୍ରାୟ ୧୯ଟି ସଂଖ୍ୟା ବାମଣ୍ଡା ସୁଡ଼ଳପ୍ରେସରେ ପ୍ରକାଶିତ । ବିଦ୍ୟାରତ୍ନଙ୍କ ବାମଣ୍ଡା ପରିତ୍ୟାଗ ପରେ ମଧୁପ ପ୍ରକାଶନ ଖଲ୍ଲିକୋଟକୁ ସ୍ଥାନାନ୍ତରିତ ହୋଇ ୧୯୦୪ ପର୍ଯ୍ୟନ୍ତ ଚାଲେ । ପତ୍ରିକାର ପଞ୍ଚମ ଭାଗ ପରେ ଅନିବାର୍ଯ୍ୟ କାରଣବଶତଃ ଏହା ଦଶ ବର୍ଷ କାଳ ବନ୍ଦ ହୋଇଥିଲା । ପୁନଶ୍ଚ ୧୯୧୫ ଅଗଷ୍ଟରୁ ଦ୍ୱିତୀୟ ପର୍ଯ୍ୟାୟ ରୂପେ ଷଷ୍ଠ ଭାଗ ପ୍ରଥମ ସଂଖ୍ୟା ବୃହଦ୍ ଖେମୁଣ୍ଡି ଅଧିଶ୍ୱର କୃପାମୟ ଦେବ ଗଜପତିଙ୍କ ଆନୁକୂଲ୍ୟରେ ଗଜପତି ଭୀମଦେବ ପ୍ରେସ,ଦିଗପୁଡିରୁ ପ୍ରକାଶ ପାଏ । *(୧୪୩)* ବଡଖେମୁଣ୍ଡିରୁ ପ୍ରକାଶ ପାଇ ଦୁଇ ବର୍ଷ ବନ୍ଦ ହେବା ପରେ ପୁଣି ଦଶମ ଭାଗ ପ୍ରଥମ ସଂଖ୍ୟା କଟକର ଉତ୍କଳ ସାହିତ୍ୟ ପ୍ରେସରୁ ନବକଳେବରରେ ପ୍ରକାଶ ପାଏ । *(୧୪୪)* ୨୬.୭.୧୯୨୪ ରେ ବିଦ୍ୟାରତ୍ନଙ୍କ ଦେହାନ୍ତ ହୁଏ । ବିଦ୍ୟାରତ୍ନଙ୍କ ଅବର୍ତ୍ତମାନରେ ମଧୁପର ପ୍ରକାଶନ ବିଶ୍ୱନାଥ କର ତ୍ରିପତି ଗାୟକରତ୍ନ ପ୍ରମୁଖଙ୍କ ଉଦ୍ୟମରେ ହୋଇଥିଲା । ମଧୁପ ଏକାଦଶ ବର୍ଷ ଚତୁର୍ଥ ସଂଖ୍ୟା (୧୯୨୪ ଜୁନ୍, ଜୁଲାଇ) ରେ ''ଉତ୍କଳ ମଧୁପର ଭବିଷ୍ୟତ '' ଶୀର୍ଷକରେ ବିଶ୍ୱନାଥ କର ବିଦ୍ୟାରତ୍ନଙ୍କ ତିରୋଧାନରେ ମଧୁପର ପ୍ରକାଶନ ଗ୍ରହଣ କରିବାର ଘୋଷଣା କରନ୍ତି । ଏକାଦଶ ବର୍ଷ ତୃତୀୟ, ଚତୁର୍ଥ ସଂଖ୍ୟା କାର୍ଯ୍ୟରମ୍ଭ ସହିତ ବିଦ୍ୟାରତ୍ନଙ୍କ ମୃତ୍ୟୁ ଘଟେ । ବିଦ୍ୟାରତ୍ନ ପାଞ୍ଚବର୍ଷ ମଧୁପ ଚଳିବା ଭଳି ବିଷୟ ସଂଗ୍ରହ କରି ଯାଇଛନ୍ତି । ଏ ସଂଖ୍ୟାଟି ଜଗନ୍ନାଥ ଜେନାମଣି (ପୁରୀ)ଙ୍କ ନାମରେ ଉତ୍ସର୍ଗ ପତ୍ର ମଧ ବିଦ୍ୟାରତ୍ନ ଲେଖିଥିଲେ କିନ୍ତୁ ପ୍ରକାଶିତ ରୂପ ଦେଖି ପାରିଲେ ନାହିଁ । ବିଦ୍ୟାରତ୍ନଙ୍କ ପରଲୋକଗତ ଆତ୍ମାର ଶାନ୍ତି ବିଧାନ ପାଇଁ ଓ ତାଙ୍କର ଅପ୍ରାପ୍ତ ବୟସ୍କ ପୁତ୍ର ଦ୍ୱୟଙ୍କ ଅଧ୍ୟୟନ ଭାର ଗ୍ରହଣ କରିବା ପାଇଁ ବିଶ୍ୱନାଥ ସ୍ୱତଃ ପ୍ରବୃତ୍ତ ମଧୁପ ପ୍ରକାଶର ଭାର ଗ୍ରହଣ କରନ୍ତି । *(୧୪୫)*

ମଧୁପ ଥିଲା ଏକ ବିଶ୍ୱକୋଷ ଓ ବିବିଧ ଜ୍ଞାନର ଭଣ୍ଡାର । ସବୁଶ୍ରେଣୀର ସବୁ ବୟସର ପାଠକଙ୍କ ପାଇଁ ଏହା ଉଦ୍ଦିଷ୍ଟ ଥିଲା । ଜ୍ଞାନ ବିଜ୍ଞାନ ବ୍ୟତିରେକେ ବିଭିନ୍ନ ସାମାଜିକ ସମସ୍ୟାର

ସମାଧାନ ଓ ବିଭିନ୍ନ ରୋଗର ଦେଶୀୟ ଚିକିତ୍ସା ପଦ୍ଧତି ପ୍ରଦାନ କରି ଏହା ଜନସାଧାରଣଙ୍କ ମଙ୍ଗଳ ସାଧନ କରୁଥିଲା ।

ଓଡ଼ିଆ ସାହିତ୍ୟରେ ବିବିଧ ବିଷୟକ ହିତକାରୀ ପତ୍ରିକା ରୂପେ ଏହାର ସିଦ୍ଧି ସର୍ବ ସ୍ୱୀକୃତ । କାନବନ୍ଧୁ ପ୍ରଧାନଙ୍କ ଭାଷାରେ-

"କି ବର୍ଣ୍ଣିବି ତୋ ମହିମା ଉତ୍କଳ ମଧୁପ
ଅଟୁ ସାହିତ୍ୟାକାଶେ ବିମଳ ଉଡୁପ
ଧରଣୀ ଜନନୀ ମୁଖ ଉଜ୍ଜ୍ୱଳ କରଣେ
ତୋହ ସମ ଅଛି କିଏ ଉତ୍କଳ ଭୁବନେ
x x x x x x x x
ଅଟୁ ତୁହି ନୀତି ବାକ୍ୟ ରତନ ଆଗାର
ପଠନେ ଅମୃତଭାବ ହୁଅଇ ସଂଚାର ।" *(୧୪୬)*

## ୪: ଗଡଜାତ ବାସିନୀ :

ହିତୈଷିଣୀର ଖ୍ୟାତିରେ ଉତ୍ସାହିତ ହୋଇ ତାଳଚେର ନରପତି କିଶୋର ଚନ୍ଦ୍ର ବୀରବର ହରିଚନ୍ଦନଙ୍କ ପୃଷ୍ଠପୋଷକତାରେ ୧୦.୧.୧୯୦୩ରେ ଗଡଜାତ ବାସିନୀ ସାପ୍ତାହିକୀର ତାଳଚେର ଠାରେ ଆବିର୍ଭାବ ହୁଏ । ଏହାକୁ ହିତୈଷିଣୀ ସ୍ୱାଗତ କରିଥିଲା । *(୧୪୭)* ଉତ୍କଳ ଦୀପିକା ଏ ପତ୍ରିକାର ଦୀର୍ଘାୟୁ କାମନା କରିଥିଲା । "ଗଡଜାତ ବାସିନୀ ନାମକ ଖଣ୍ଡିଏ ଉତ୍କଳ ସାପ୍ତାହିକ ସମ୍ବାଦ ପତ୍ରିକା ୧୦ ତାରିଖରୁ ବାହାରିବାର ଆରମ୍ଭ ହୋଇଅଛି x x x x ଏହାର ଉଦ୍ଦେଶ୍ୟ ଉତ୍କଳର ଅନ୍ୟାନ୍ୟ ସମ୍ବାଦପତ୍ରର ଉଦ୍ଦେଶ୍ୟରୁ ଭିନ୍ନ ନୁହେଁ । କେବଳ ପାଠକ ସଂଖ୍ୟା ବୃଦ୍ଧି କରିବା ଅଭିପ୍ରାୟରେ ଏହା ପ୍ରଚାରିତ ହେବାର ଲେଖାଅଛି । ନବୀନ ସହଯୋଗୀ ଦୀର୍ଘାୟୁ ହୋଇ ଆପଣାର ଉଦ୍ଦେଶ୍ୟ ସାଧନ କରନ୍ତୁ ଏହା ହିଁ ଆମ୍ଭମାନଙ୍କର ପ୍ରାର୍ଥନା ।" *(୧୪୮)*

ଗଡଜାତ ବାସିନୀର ଆଭିମୁଖ୍ୟ ଅନ୍ୟାନ୍ୟ ପତ୍ରିକା ପରି ବୋଲି ପ୍ରକାଶ ପାଇଥିଲେ ମଧ ଏହାର ପ୍ରକାଶ କୌଶଳ ମୁଖ୍ୟତଃ ହିତୈଷିଣୀ ଦ୍ୱାରା ସୁନିୟନ୍ତ୍ରିତ । ଗଡଜାତ ବାସିନୀ ଦ୍ୱିତୀୟ ସଂଖ୍ୟାରେ ନିବେଦନ କ୍ରମରେ ଏହାର ଆଭିମୁଖ୍ୟ ସ୍ପଷ୍ଟ ହୋଇଥାଏ ।

"ଭାଷାର ଉଜ୍ଜ୍ୱଳ ମୁଖ ଦେଖିବା ପାଇଁକି
ଦୃଢ଼ବ୍ରତେ ଅବଲମ୍ବି ସଂଯତ ବିଧିକି
ପ୍ରଚାରିବ ହିତବାଣୀ ବିବିଧ ବିଷୟ
ଜନ ସାଧାରଣଙ୍କର ସନ୍ତୋଷି ହୃଦୟ

ସ୍ୱଦେଶ ବନ୍ଧୁଙ୍କ ସେବା କରିବ ଅପାର

ଅରଣ୍ୟ କୁସୁମ ମାଳା ଦେଇ ଉପହାର ।'' (୧୪୯)

ଏ ପତ୍ରିକା ହିତୈଷିଣୀକୁ ନିଜର ଆଦର୍ଶ ରୂପେ ଗ୍ରହଣ କରିଥିଲା । ହିତୈଷିଣୀ ପରି ଭାଷା ସାହିତ୍ୟର ଉନ୍ନତି, ସମାଜ ସଂସ୍କାର, ଦେଶ ଉନ୍ନତି, ନୂତନ ଲେଖକଙ୍କର ଉତ୍ସାହ ବର୍ଦ୍ଧନ ଏହାର ଲକ୍ଷ୍ୟ ଥିଲା । ଗଡଜାତ ବାସିନୀ ପୃଷ୍ଠାରେ ଦେଶ ବିଦେଶ ସମ୍ବାଦ, ଗଡଜାତର ସଂବାଦ, ବିବିଧ ପ୍ରାପ୍ତପତ୍ର, ନିଶା ବିରୁଦ୍ଧରେ ମନ୍ତବ୍ୟ, ସମସ୍ୟା, ପାଦ ପୂରଣ, କୃଷି ସୂଚନା ପ୍ରଭୃତି ପ୍ରକାଶ ଲଭୁଥିଲା । ହିତୈଷିଣୀ ପରି ଏହା ମଧ ନିଶା ଓ କୁସଂସ୍କାର ବିରୁଦ୍ଧରେ ଲଢୁଥିଲା । କାବ୍ୟ, କବିତା, ସଂକ୍ଷିପ୍ତ ପୁସ୍ତକ ଆଲୋଚନା ଏଥିରେ ପ୍ରକାଶ ପାଉଥିଲା ।

ଗଡଜାତ ବାସିନୀର ସଂପାଦନା ଭାଗିରଥି ମିଶ୍ର ପଦ୍ୟାଳଙ୍କାର ଗ୍ରହଣ କରିଥିଲେ । ତାଙ୍କରି ସଂପାଦନାରେ ବାସିନୀ ନିଜର ଆଭିମୁଖ୍ୟ ପ୍ରଚାରରେ ସଫଳ ହୋଇଥିଲା । ଶେଷ ବେଳକୁ ଏହାର ସଂପାଦନା ବ୍ରଜବଂଧୁ ମିଶ୍ର ଗ୍ରହଣ କରନ୍ତି । ଅନେକ ନବୀନ ଓ ପ୍ରବୀଣ ଲେଖକ ଏହାର ପୃଷ୍ଠା ମଣ୍ଡନ କରୁଥିଲେ । ବିଭିନ୍ନ ସମୟରେ ସାହିତ୍ୟିକ ବିବାଦକୁ ସ୍ଥାନିତ କରି ବାସିନୀ ଓଡ଼ିଆ ସାହିତ୍ୟକୁ ଗତିଶୀଳ କରିଥିଲା । ସମକାଳୀନ ଗଡଜାତ ଓ ଓଡ଼ିଶାର ଚିତ୍ର ପ୍ରଦାନରେ ବାସିନୀ ସଫଳ ହୋଇଥିଲା ।

ହିତୈଷିଣୀର ଅବର୍ତ୍ତମାନ (୧୯୨୩)ରେ ବାସିନୀ ହିଁ ଗଡଜାତର ଏକମାତ୍ର ପତ୍ରିକା ରୂପେ ମାନ୍ୟତା ଦାବୀକରେ । ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ବାସିନୀ ପ୍ରକାଶ ପାଇଥିବାର ଅନୁମିତ ହୁଏ । (୧୫୦)

## ୫ : ଉତ୍କଳ ସେବକ

ହିତୈଷିଣୀ ପ୍ରକାଶନ ସହିତ ପଶ୍ଚିମ ଓଡ଼ିଶା ତଥା ତତ୍କାଳୀନ ଗଡଜାତ ସମୂହରେ ଶିକ୍ଷା ଓ ସଂସ୍କୃତିର ନବ ଜାଗରଣ ସୃଷ୍ଟି ହୋଇଥିଲା । ସମଲପୁରରେ ଓଡ଼ିଆ ଭାଷା ଆନ୍ଦୋଳନ (୧୮୯୫) ଏବଂ ଏହି ଅଞ୍ଚଳକୁ ଓଡ଼ିଶା ସହିତ ମିଶ୍ରଣ ଉଦ୍ୟମରେ ହିତୈଷିଣୀର ଉଦ୍ୟମ ଅତୁଳନୀୟ । ଏହି ଉଦ୍ୟମକୁ ବଳିଷ୍ଠ ଓ ପରିବ୍ୟାପ୍ତ କରିବା ପାଇଁ ସମ୍ବଲପୁରର କୃତବିଦ୍ୟ ସାରସ୍ୱତ ରଥି ଶ୍ରୀପତି ମିଶ୍ର ୧୯୦୬ରେ "ଉତ୍କଳ ଦର୍ପଣ" ପ୍ରକାଶ କରିଥିଲେ । ଦର୍ପଣ ସ୍ୱଳ୍ପ ଜୀବନ କାଳ ଯୋଗୁଁ ନିଜର ଆଭିମୁଖ୍ୟ ପ୍ରଚାରରେ ସଫଳ ହୋଇ ପାରି ନ ଥିଲା । ଫଳରେ ସମ୍ବଲପୁର ବୁଦ୍ଧିଜୀବୀ ମାନଙ୍କ ଉଦ୍ୟମ ଓ ବାମଣ୍ଡାର ତାଲିମ ପ୍ରାପ୍ତ ସଂପାଦକ ବ୍ରଜବନ୍ଧୁ ମିଶ୍ରଙ୍କ ସଂପାଦନାରେ ଉତ୍କଳ ସେବକ ୯-୧୦.୧୯୧୩ରେ ପ୍ରକାଶ ପାଏ ।

ବ୍ରଜବନ୍ଧୁ ଦୀର୍ଘଦିନ ହିତୈଷିଣୀ ସହିତ ଜଡିତ । ସେ ହିତୈଷିଣୀ ଛାଞ୍ଚରେ ସେବକର ସଂପାଦନା ନିର୍ବାହ କରନ୍ତି ସେବକର ଆଭିମୁଖ୍ୟକୁ ନିମ୍ନୋକ୍ତ ଶ୍ଳୋକ ସ୍ପଷ୍ଟ କରୁଥିଲା ।

''ନିଗଡୋଽପ୍ୟେବ ସେବାର୍ଥଂ ସ୍ୱଦେଶସ୍ୟ ମୁଦାନ୍ୱିତଃ
କର୍ତ୍ତବ୍ୟଂ ନିଷ୍ଠିତଂ ମହାକାୟେନ ମନସାଚିରା
ପାତୁ ମାମଖିଳାଧାରଃ ପାତୁମାଞ୍ଚ ସରସ୍ୱତୀ
ପାତୁ ଚୋତ୍କଳ ମାତା ମାଂ ଯଥା ସ୍ୟାତ୍ ସ୍ଥିତିରାତ୍ମନଃ
ଯନ୍ତୁ ନୈଷ୍କର୍ମ୍ୟମିତାଃ ଶକ୍ତିଂ ପ୍ରାଣେନ୍ଦ୍ରିୟ ମନୋଧିୟାଂ
ପ୍ରଥାହଂ କୃତକୃତ୍ୟାଃସ୍ୟାମ୍ କର୍ମକ୍ଷେତ୍ରେ ନିରନ୍ତରଂ ।''

ଏ ଶ୍ଳୋକ ଅନୁସାରେ ସେବକ ନିଜର ସାଧନାରେ ତତ୍ପର ଥିଲା । ସଂପାଦକୀୟ ଟୀପ୍ପଣୀରେ ଦେଶ ଓ ଭାଷାର ଉନ୍ନତି ଉପରେ ବ୍ରଜବନ୍ଧୁ ଗୁରୁତ୍ୱ ଦେଉଥିଲେ । ସେବକର ବିଭିନ୍ନ ସଂଖ୍ୟାରେ ସଂପାଦକ ଦେଶ ଓ ଜାତିର ଉନ୍ନତି ପାଇଁ ଚିନ୍ତା ପ୍ରକଟ କରିଛନ୍ତି । ସଂସ୍କାରମୂଳକ ପ୍ରବନ୍ଧ ଲେଖକ ମାନଙ୍କ ଠାରୁ ସେ ଆହ୍ୱାନ କରୁଥିଲେ । ସାହିତ୍ୟ, ସଂସ୍କୃତି, ଧର୍ମ, ସାହିତ୍ୟ, ବିଜ୍ଞାନ ଓ କୃଷି ଉପରେ ମଧ ସେବକ ଗୁରୁତ୍ୱ ପ୍ରଦାନ କରିଥିଲା । ନିଶା ସେବନ ବିରୁଦ୍ଧରେ ସେବକରେ ଅନେକ ଲେଖା ପ୍ରକାଶ ପାଉଥିଲା । ''ନବାନନ୍ଦର କଥା'' ଶୀର୍ଷକରେ ନିଶା ବିରୁଦ୍ଧରେ ବ୍ୟଙ୍ଗ ଲେଖାମାନ ପ୍ରକାଶ ପାଇଛି । ଗଞ୍ଜେଇ, ମଦ ଓ ଅଫିମ ପ୍ରତ୍ୟେକ ତିନି ପ୍ରକାର ମିଶି ନଅ-ଆନନ୍ଦ ବା ନବାନନ୍ଦର ସୃଷ୍ଟି । ନବାନନ୍ଦ ନିଜକୁ ହିତୈଷିଣୀର ଶତାନନ୍ଦଙ୍କ ବଂଶଧର ରୂପେ ପରିଚୟ ଦେଇଛି । *(୧୫୧)*

ବ୍ରଜବଂଧୁଙ୍କ ପରେ ସ୍ୱପ୍ନେଶ୍ୱର ଦାଶ, ବିଶ୍ୱକେସନ ବହିଦାର, ଶଙ୍କର ପ୍ରସାଦ ପାଢ଼ୀ ପ୍ରମୁଖ ଏହାର ସଂପାଦନା ଗ୍ରହଣ କରନ୍ତି । ଦେଶ ହିତୈଷୀଙ୍କ ଆଗ୍ରହ ଓ ପାଠକଙ୍କ ସହାନୁଭୂତି ଅଭାବରେ ସେବକ ବନ୍ଦ ହେବାର ଆଶଙ୍କା ସଂପାଦକୀୟ (୧୯୨୪)ରେ ପ୍ରକାଶ ପାଇଥିଲା । *(୧୫୨)* ତଥାପି ଏହା ଅନେକ ଦିନ ପର୍ଯ୍ୟନ୍ତ ପ୍ରକାଶ ପାଇଥିବାର ଜଣାପଡେ ।

ସେବକ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ଓ ସମୃଦ୍ଧ ଓଡ଼ିଆ ଭାଷା ଗଠନ ପ୍ରତି ଆନ୍ତରିକ ନିଷ୍ଠା ପ୍ରକାଶ କରିଥିଲା ।

## ୬: ଉପହାର :

ଉପହାର ତ୍ରୈମାସିକ ସାହିତ୍ୟ ପତ୍ର ରୂପେ ବାମଣ୍ଡା ପ୍ରାଇମେରୀ ଓ ସେକେଣ୍ଡାରୀ ସ୍କୁଲ ଶିକ୍ଷକ ସମାଜରୁ ପ୍ରକାଶ ଲଭିଥିଲା । ଏହାର ପ୍ରଥମ ସଂଖ୍ୟା ୧୯୩୪ ଅକ୍ଟୋବର ବିଜୟା ସଂଖ୍ୟା ରୂପେ ପ୍ରକାଶ ପାଇଥିଲା । *(୧୫୩)* ପରବର୍ତ୍ତୀ ବକୁଳ ସଂଖ୍ୟା ବାମଣ୍ଡା ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବଙ୍କ ଅଭିଷେକୋତ୍ସବ ଉପଲକ୍ଷେ ଜାନୁୟାରୀ ୧୯୩୫ ରେ ପ୍ରକାଶ ଲଭିଥିଲା । ବର୍ଷକୁ ବିଜୟା, ବକୁଳ, ଅଶୋକ ଓ ଗୁଣ୍ଡିଚା ରୂପେ ଚାରୋଟି ସଂଖ୍ୟା ପ୍ରକାଶ ପାଉଥିଲା ।

ଏହାର ପ୍ରଚ୍ଛଦରେ ବାମଣ୍ଡା ଷ୍ଟେଟର ସଙ୍କେତ ଶଂଖ ସହିତ ରାଜପ୍ରାସାଦ ଏବଂ ପଶ୍ଚାତ୍‌ରେ ଦେବଗଡ଼ସ୍ଥ କୈଦଲା ପର୍ବତର ଦୃଶ୍ୟ ସୁସ୍ପଷ୍ଟ ଥିଲା । ପ୍ରଥମ କେତୋଟି ସଂଖ୍ୟାର ପ୍ରଚ୍ଛଦରେ କୌଣସି ଚିତ୍ର ଦିଆ ନଯାଇ କେବଳ ଉପହାର ଲିଖିତ ହୋଇଥିଲା । ଦେବଗଡ ଟ୍ରେନିଂସ୍କୁଲର ହେଡ୍‌ପଣ୍ଡିତ ଶ୍ରୀଯୁକ୍ତ ରାମଚନ୍ଦ୍ର ମିଶ୍ର ଓ ସତ୍ୟବାଦୀ ହୋତା ଉପହାର ପ୍ରାରମ୍ଭିକ ପର୍ଯ୍ୟାୟର ସଂପାଦକ ଥିଲେ । ପରେ ପରେ ଭାଗୀରଥି ପାଠୀ, ବ୍ରଜମୋହନ ପାଣି, ବୃନ୍ଦାବନ ପୂଜାହାରୀ, ମଧୁସୂଦନ ମିଶ୍ର ପ୍ରମୁଖଙ୍କୁ ନେଇ ସଂପାଦକ ସଂଘ ଗଠିତ ହେଲା । ପତ୍ରିକାର ମୁଖ୍ୟ ସଂପାଦକ ସାଧୁଚରଣ ଜଗଦ୍ଦେବ (ବାମଣ୍ଡା ରାଜ୍ୟ ଶିକ୍ଷା ଅଧୀକ୍ଷକ) ଥିଲେ *(୧୫୪)* ପରବର୍ତ୍ତୀ ପର୍ଯ୍ୟାୟରେ ମଙ୍ଗୁଳୁ ଦ୍ୱିବେଦୀ, ସଦାନନ୍ଦ ପଟେଲ, ପୁରନ୍ଦର ପଟ୍ଟନାୟକ ପ୍ରମୁଖ ସଂପାଦକ ମଣ୍ଡଳୀରେ ସ୍ଥାନ ପାଇଥିଲେ ।

ଉପହାରରେ ସାହିତ୍ୟ, ଶିକ୍ଷା ଓ ଆଲୋଚନା, ଇତିହାସ, ନୀତିବାକ୍ୟ, ହାସ୍ୟରସ, ସମସ୍ୟା, ପ୍ରଭୃତି ବିବିଧ ବିଷୟକ ରଚନା ସ୍ଥାନ ପାଉଥିଲା । ପତ୍ରିକାର ଆଭିମୁଖ୍ୟକୁ ନିମ୍ନ ଶ୍ଳୋକ ସ୍ପଷ୍ଟ କରୁଥିଲା ।

''ଯତଃ ପ୍ରବୃତ୍ତି ର୍ଭୂତାନାଂ ଯେନ ସର୍ବମିଦଂ ତତଂ

ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।

ଏ ଉଦ୍‌ଘୋଷଣା କର୍ମର ମହାନତାକୁ ପ୍ରତିପାଦନ କରେ । ଏଥିରେ ସଂପାଦକ ମଣ୍ଡଳୀର ନିଜ କର୍ମପ୍ରତି ଅନୁରାଗ ଏବଂ ଶିକ୍ଷାପ୍ରତି ସଚେତନତା ପ୍ରକାଶ ପାଏ । ଶିକ୍ଷାକୁ ଜୀବନର ପରିପୂରକ ଏବଂ ସଂସ୍କୃତିର ବାର୍ତ୍ତାବହ ରୂପେ ଗ୍ରହଣ କରାଯାଇ ବିବିଧ ବିଷୟକ ଜ୍ଞାନଲବ୍ଧ ଲେଖା ଏ ପତ୍ରିକାର ପୃଷ୍ଠା ମଣ୍ଡନ କରୁଥିଲା ।

୧୯୨୩ ବେଳକୁ ହିତୈଷିଣୀ ପ୍ରକାଶନ ବନ୍ଦ ହୁଏ । ବାମଣ୍ଡାରେ ଗଢ଼ିଉଠିଥିବା ସାରସ୍ୱତ ଅଭିରୁଚି ଏକ ମହାନ୍ ଶୂନ୍ୟତା ଅନୁଭବ କରେ ଏବଂ ଏକ କଳାତ୍ମକ ବେଦନାରେ ଆନ୍ଦୋଳିତ ହୁଏ । ଏ ବେଦନାବୋଧ ପ୍ରକାଶନର ଏକ ମାଧ୍ୟମ ଖୋଜୁଥିଲା । ଏହାର ନେତୃତ୍ୱନେଲେ ବାମଣ୍ଡା ଶିକ୍ଷକ ସମାଜ ଓ ଉପହାର ଯୋଗାଇଦେଲା ଏକ ଅପୂର୍ବ ମାଧ୍ୟମ । ହିତୈଷିଣୀ ସୃଷ୍ଟ ସାରସ୍ୱତ ପରିବେଶ ଉପହାର ମାଧ୍ୟମରେ ପରିବ୍ୟାପ୍ତ ହେଲା ।

ଉପହାର ଶିକ୍ଷା ଓ ସମାଜ ସଂସ୍କାର ମୂଳକ ରଚନା ସହିତ ଜାତୀୟବାଦୀ ଚେତନା ଉଦ୍ରେକ କରିବାରେ ସଫଳ ହୋଇଥିଲା । ଅନେକ ପ୍ରବୀଣ ଲେଖକଙ୍କ ରଚନାରେ ଏହା ଋଦ୍ଧିମନ୍ତ । ୧୯୪୫ ବେଳକୁ ଉପହାର ଶଂଖ ସହିତ ସଂଯୁକ୍ତ ହେଲା । ପ୍ରାୟ ଏକ ଦଶନ୍ଧିରୁ ଅଧିକ କାଳ ବାମଣ୍ଡାର ସାରସ୍ୱତ ଅଭିମୁଖ୍ୟ ସୁରକ୍ଷାରେ ଉପହାରର ଉଦ୍ୟମ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଥିଲା ।

୭: ଶଂଖ :

ଓଡ଼ିଆ ପତ୍ରିକା ଇତିହାସରେ ଶଂଖ ଏକ ସୁବର୍ଣ୍ଣ ଶାଖର । ନିଜସ୍ୱ ସାରସ୍ୱତ ଆଭିମୁଖ୍ୟ ସାଧନ ସହିତ ଓଡ଼ିଆ ସାହିତ୍ୟକୁ ଉଚିତ୍ ଦିଗ୍‌ଦର୍ଶନ ଦେବାରେ ଶଂଖର ଭୂମିକା ସ୍ୱାଗତ ଯୋଗ୍ୟ । ୧୯୪୫ ଆଷାଢ଼ ମାସରେ ଏହା ନିଜର ପ୍ରଥମ ଅର୍ଘ୍ୟ ଓଡ଼ିଆ ପାଠକକୁ ଭେଟି ଦେଇଥିଲା । ସୁସାହିତ୍ୟିକ ମାନସିଂ ଥିଲେ ଏହାର ପ୍ରଥମ ସଂପାଦକ । ସେ ଥିଲେ Eastern state Agency ର Educational Advisor । ବାମଣ୍ଡାଧିପତି ଭାନୁଗଙ୍ଗ ତ୍ରିଭୁବନଦେବଙ୍କ ପୃଷ୍ଠପୋଷକତା ଫଳରେ ଶଂଖ ପ୍ରକାଶନ ସମ୍ଭବ ହୋଇଥିଲା ।

ଶଂଖ ବାମଣ୍ଡା ରାଜ୍ୟର ପ୍ରତୀକ ଓ ହିନ୍ଦୁଜାତିର ପବିତ୍ରତମ ବସ୍ତୁ । ଶ୍ରୀଯୁକ୍ତ ଅଜିତ କୁମାର ଦାସଙ୍କ ଅନୁରୋଧରେ ଶଂଖ ନାମକରଣ କରାଯାଇଥିଲା *(୧୫୫)* ମାନସିଂ ଶଂଖକୁ ଏକାନ୍ତ ଭାବରେ ସାହିତ୍ୟ ପତ୍ରିକା ରୂପେ ପ୍ରକାଶ କରିବାକୁ ମନସ୍ଥ କରିଥିଲେ । କିନ୍ତୁ ଉପଯୁକ୍ତ ଲେଖା ଅଭାବରେ ଇତିହାସ, ବିଜ୍ଞାନ, ଦର୍ଶନ, ଭ୍ରମଣ ପ୍ରଭୃତି ବିଭିନ୍ନ ବିଭାଗର ଉତ୍କୃଷ୍ଟ ରଚନାମାନଙ୍କୁ ମଧ ପ୍ରକାଶ କରିବାକୁ ସୁଯୋଗ ଦିଆଗଲା । ଲେଖକ ମାନଙ୍କୁ ଜାତୀୟତାମୂଳକ ଲେଖା ପ୍ରେରଣ ପାଇଁ ଆହ୍ୱାନ କରାଯାଉଥିଲା । କର୍ମର ପ୍ରଦୀପ ଜାଳି କୁସଂସ୍କାରର ଅନ୍ଧକାରକୁ ଦୂରେଇବାକୁ ପଡିବ ନଚେତ୍ ପରବର୍ତ୍ତୀ ବଂଶଧର ଏ ଯୁଗର ସାହିତ୍ୟିକମାନଙ୍କୁ ଦେଶର ଦୁର୍ଗତି ପାଇଁ ଦାୟୀ କରିବେ ।

ଶଂଖର କ୍ରୋଡ ପୃଷ୍ଠାରେ ''ତମସୋମା ଜ୍ୟୋତିର୍ଗମୟ, ସତ୍ୟମେବ ଜୟତେ, ନାନୃତଂ'' ଲିପିବଦ୍ଧ ହୋଇ ଅଂଧାରରୁ ଆଲୋକକୁ ଏବଂ ସତ୍ୟକୁ ଆଗେଇ ଯିବାର ଉଦ୍ଦେଶ୍ୟ ପ୍ରକାଶ କରେ । ଏ ପତ୍ରିକା କୌଣସି ଜାତି ବା ଗୋଷ୍ଠୀର ନୁହେଁ ସମଗ୍ର ଓଡ଼ିଆ ସାହିତ୍ୟର ପରିପୁଷ୍ଟି ହିଁ ଏହାର ଲକ୍ଷ୍ୟ । ଏ ପ୍ରସଙ୍ଗରେ ମାନସିଂଙ୍କ ସ୍ୱୀକାରୋକ୍ତି ପ୍ରଣିଧାନ ଯୋଗ୍ୟ-''ଯେହେତୁ ଏ ପତ୍ରିକା ସମଗ୍ର ଓଡ଼ିଆ ଜାତିର, ପ୍ରାପ୍ତ ଲେଖାମାନ ବିଚାର କରିବାରେ, ଆମ୍ଭମାନଙ୍କର ଏକମାତ୍ର ମାନଦଣ୍ଡ ଆମେ ଧରି ନେଇଛୁ, ସାହିତ୍ୟିକ ଉତ୍କର୍ଷ । ଏ ମାନଦଣ୍ଡକୁ ଯେ ସନ୍ତୁଷ୍ଟ କଲା, ତା'ର ଲେଖା ପ୍ରକାଶିତ ହେଲା । ସେ ପୁରସ୍କୃତ ହେଲା । ଅନ୍ୟ କୌଣସି ବିଚାର ଆମ୍ଭମାନଙ୍କୁ ବିଚଳିତ କରି ପାରିନି ।'' *(୧୫୬)*

ମାନସିଂଙ୍କ ସଂପାଦନାରେ ଶଂଖ ୨ୟବର୍ଷ ୨ୟ ସଂଖ୍ୟା ପର୍ଯ୍ୟନ୍ତ ପ୍ରକାଶ ଲାଭ କରେ । ତାଙ୍କର ସ୍ଥାନାନ୍ତର ଯୋଗୁଁ ପରବର୍ତ୍ତୀ ପର୍ଯ୍ୟାୟରେ ଏ ସାହିତ୍ୟ ପତ୍ରିକାକୁ ଉଚିତ ମାର୍ଗରେ ଚଳାଇବାକୁ ଜଣେ ଅନୁଭବୀ ପ୍ରତିଭାଧର ସଂପାଦକର ଅଭାବ ଅନୁଭୂତ ହୁଏ, ଯିଏ କି ମାନସିଂ ପ୍ରଚଳିତ ପଥରେ ପତ୍ରିକାର ଆଭିମୁଖ୍ୟକୁ ସୁଚାରୁ ସଂପାଦନ କରିପାରିବ । ଏ ପ୍ରେକ୍ଷାପଟରେ ବାମଣ୍ଡା ଦରବାର ଜଳନ୍ଧରକୁ ଶଂଖର ସଂପାଦକ ମନୋନୀତ କରି ବିଜ୍ଞପ୍ତି ପ୍ରକାଶ କରେ ।

ଶଂଖ ତିନିବର୍ଷର ଜୀବନ କାଳ ମଧ୍ୟରେ ଗଡଜାତ ସମସ୍ୟା, ବିଚ୍ଛିନ୍ନାଞ୍ଚଳ ସମସ୍ୟା, ପରାଧୀନ ଭାରତର ସମସ୍ୟା, ଦେଶ ବିଭାଜନ ସମସ୍ୟା ଉପରେ ଅନୁରୂପ ପ୍ରତିକ୍ରିୟା ପ୍ରକାଶ କରିଛି । ଓଡ଼ିଶାର ଅନେକ ପ୍ରବୀଣ ସାହିତ୍ୟିକଙ୍କ ରଚନାରେ ସମୃଦ୍ଧ ହୋଇଛି । ଅନେକ ନବୀନ ଲେଖକଙ୍କୁ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠା ଆଣି ଦେଇଛି । ଉଚ୍ଚକୋଟୀର ଗଳ୍ପ, କବିତା ଓ ପ୍ରବନ୍ଧରେ ଏହାର କଳେବର ପୁଷ୍ଟ ହୋଇଥିଲା । ସାହିତ୍ୟିକ ଉତ୍କର୍ଷ ସାଧନରେ ଶଂଖ ସଫଳ ହୋଇ ପାରିଥିଲା ।

ଶଂଖ ପୃଷ୍ଠାରେ ଶଶିଭୂଷଣରାୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଗିରିଜା ଶଙ୍କର ରାୟ, ଚିରରଞ୍ଜନ ଦାସ, ଜିତେନ୍ଦ୍ରନାଥ ମହାନ୍ତି, ଜ୍ଞାନୀନ୍ଦ୍ର ବର୍ମା, ନୀଳମାଧବ ପାଣିଗ୍ରାହୀ, ବିଧୁଭୂଷଣ ଗୁରୁ, ବୃନ୍ଦାବନ ନାଥଶର୍ମା, ଜଳଧର ଦେବ, ମାୟାଧର ମାନସିଂ, ହେମଲତା ମାନସିଂ, ସୁରେନ୍ଦ୍ର ମହାନ୍ତି, କୁଞ୍ଜ ବିହାରୀ ଦାଶ, ଗୋକୁଳାନନ୍ଦ ମହାପାତ୍ର, ବିନାୟକ ମିଶ୍ର, ଗୋଲକ ବିହାରୀ ଧଳ, ଚନ୍ଦ୍ରଶେଖର ମିଶ୍ର, ଦୁର୍ଗାପ୍ରସାଦ ପଟ୍ଟନାୟକ, ଲକ୍ଷ୍ମୀନାରାୟଣ ସାହୁ, ଶ୍ରଦ୍ଧାକର ସୂପକାର, କେଶବ ମେହେର, ଗୌରୀ କୁମାର ବ୍ରହ୍ମା, ନବ କିଶୋର ଦାସ, ବସନ୍ତ କୁମାର ବେହୁରା, ଶ୍ୟାମସୁନ୍ଦର ମହାପାତ୍ର ପ୍ରମୁଖଙ୍କ ପ୍ରବନ୍ଧ ଓ ଆଲୋଚନା ପ୍ରକାଶ ପାଇଥିଲା । ଅନନ୍ତ ପ୍ରସାଦ ପଣ୍ଡା, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଗୋପୀନାଥ ମହାନ୍ତି, ବିଭୂତି ଭୂଷଣ ତ୍ରିପାଠୀ, ରଘୁନାଥ ଦାସ, ରାଜକିଶୋର ରାୟ, ଲକ୍ଷ୍ମୀଧର ନାୟକ, ଲବଙ୍ଗଲତା ଦେବୀ, ଲକ୍ଷ୍ମୀନାରାୟଣ ମହାନ୍ତି, ଅଖିଳ ମୋହନ ପଟ୍ଟନାୟକ, ଯଦୁନାଥ ଦାଶ ମହାପାତ୍ର, ରାଜକିଶୋର ପଟ୍ଟନାୟକ, ହରିଶ୍ଚନ୍ଦ୍ର ବଡାଲ, କସ୍ତୁରୀ ଚରଣ ଦାସ, ଦୁର୍ଗାମାଧବ ମିଶ୍ର, ଜାନକୀ ବଲ୍ଲଭ ମହାନ୍ତି, କୁମାରୀ ନିହାର ପାତ୍ର, ବସନ୍ତ କୁମାରୀ ଦେବୀ, ଶ୍ରଦ୍ଧାକର ସୂପକାର ପ୍ରମୁଖଙ୍କ ଗଳ୍ପରେ ଶଂଖ ପୃଷ୍ଠା ସମୃଦ୍ଧ । ସଚ୍ଚିଦାନନ୍ଦ ରାଉତରାୟ, ଅଜିତ କୁମାର ଦାସ, ଗୋପାଳ ଚନ୍ଦ୍ର ମିଶ୍ର, ଜାନକୀ ବଲ୍ଲଭ ମହାନ୍ତି, ଜ୍ଞାନୀନ୍ଦ୍ର ବର୍ମା, ନାକ ଫୁଡ଼ି ପଣ୍ଡା, ବିଦ୍ୟୁତପ୍ରଭା ଦେବୀ, ବୈକୁଣ୍ଠନାଥ ପଟ୍ଟନାୟକ, ରାଧାମୋହନ ଗଡନାୟକ, ରେବା ଦେବୀ, ଦୁର୍ଗାଚରଣ କୁଅଁର, ଦୁର୍ଗାମାଧବ ମିଶ୍ର, ପଦ୍ମଚରଣ ପଟ୍ଟନାୟକ, ଲିଙ୍ଗରାଜ ପାଣିଗ୍ରାହୀ, ହରିହର ମହାପାତ୍ର, ବ୍ରଜେନ୍ଦ୍ର ନାରାୟଣ ସିଂହଦେବ, ବେଣୁଧର ରାଉତ, ବିନୋଦଚନ୍ଦ୍ର ନାୟକ, ରଘୁନାଥ ଦାସ, ଲକ୍ଷ୍ମୀନାରାୟଣ ସାହୁ, କୁଞ୍ଜବିହାରୀ ଦାଶ, କେଶବ ମହାରଣା, କୃଷ୍ଣ ପ୍ରସାଦ ପଟ୍ଟନାୟକ, ଚନ୍ଦ୍ରଶେଖର ମହାପାତ୍ର, ଜଗଦୀଶ ସିଂହ, ପରଶୁରାମ ମୁଣ୍ଡ, ବିନୋଦ ରାଉତରାୟ, ଯଦୁନାଥ ଦାଶ ମହାପାତ୍ର, ପ୍ରମୁଖଙ୍କ କବିତା ଏଥିରେ ସ୍ଥାନିତ ।

ସମକାଳୀନ ଓଡ଼ିଆ ସାହିତ୍ୟରେ ଶଂଖ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ଦାବୀକରେ । ସାରସ୍ୱତ ପୀଠ ବାମଣ୍ଡାର ଶେଷତମ ସୂର୍ଯ୍ୟୋଦୟର ପ୍ରତୀକ ଶଂଖ । ଗଡଜାତ ମିଶ୍ରଣ ସହିତ ଶଂଖ ପ୍ରକାଶନ ବନ୍ଦ ରହିଲା ଏବଂ ରାଜକୀୟ ପୃଷ୍ଠପୋଷକତାରେ ଗଢ଼ି ଉଠିଥିବା ଏକ ଉଦାଙ୍ଗ ସାରସ୍ୱତ ଧାରା ମଧ୍ୟ କ୍ଷୀଣ ହୋଇ ପଡିଲା ।

ହିତୈଷିଣୀ ଦ୍ୱାରା ଯେଉଁ ମହନୀୟ ପରଂପରା ସୃଷ୍ଟି ହୋଇଥିଲା ତାହା ଶଂଖ ମାଧମରେ ଉତ୍କର୍ଷତାର ଶୀଖର ସ୍ପର୍ଶ କରିଥିଲା । ଆଧୁନିକ ସାହିତ୍ୟର ପ୍ରତିଟି ବିଭାଗ ଶଂଖ ମାଧମରେ ସିଦ୍ଧି ଲଭିଥିଲା ।

## (ଛ) ଆଧୁନିକ ସାହିତ୍ୟର ପ୍ରାଣ ପ୍ରତିଷ୍ଠା :

ହିତୈଷିଣୀ ସାଂବାଦିକତା କ୍ଷେତ୍ରରେ ନିର୍ଭୀକ ନିରପେକ୍ଷ ଧାରା ପ୍ରବର୍ତ୍ତନ କରିଥିଲା । ସାହିତ୍ୟ କ୍ଷେତ୍ରରେ ହିତୈଷିଣୀର ଅବଦାନ ଏକାନ୍ତ ବିସ୍ମୟକର । ହିତୈଷିଣୀ ପୃଷ୍ଠାରେ ବିଜୁଳି-ଇନ୍ଦ୍ରଧନୁ କଳହ ସଂଘଠିତ ହୋଇଥିଲା । ଅନେକ ପ୍ରବୀଣ ସାହିତ୍ୟିକ ନିଜର ରଚନାକୁ ହିତୈଷିଣୀ ପୃଷ୍ଠାରେ ଉତ୍ସର୍ଗୀ ଦେଇଥିଲେ । ନବୀନ ସାରସ୍ୱତ ସାଧକ ଗଣ ହିତୈଷିଣୀ ମାଧମରେ ନିଜର ପଥ ଆବିଷ୍କାର କଲେ । ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିର ସଂସର୍ଗକୁ ଯେଉଁ ନୂତନ ଯୁଗରୁଚିର ସୃଷ୍ଟିହେଲା ତାକୁ ଉଚିତ ପ୍ରକାଶ ମାଧମ ଯୋଗାଇଲା ହିତୈଷିଣୀ । ରାଧାନାଥ କର୍ତ୍ତୃକ ପ୍ରଚଳିତ ଧାରା ହିତୈଷିଣୀ ମାଧମରେ ପରିପୁଷ୍ଟ ହେଲା । ଏପରିକି ଶତାଧିକ ଗୌଣକବି ନିଜର ସାମର୍ଥ୍ୟ ବିନିମୟରେ ଏ ଧାରାକୁ ଗତିଶୀଳ କରିଥିଲେ । ନଟବର ସାମନ୍ତରାୟଙ୍କ ମତରେ "ରାଧାନାଥ ଯୁଗ ପରେ ଏ ଦେଶରେ ନୂତନ ସାହିତ୍ୟ ଗୋଷ୍ଠୀ ସୃଷ୍ଟି କରିବାରେ 'ହିତୈଷିଣୀ' ଯେଉଁ ପ୍ରଥମ ନେତୃତ୍ୱ ନେଇଥିଲା ତାହା ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ଚିରଦିନ ଉଜ୍ଜ୍ୱଳ ହୋଇ ରହିଥିବ, ଏଥିରେ ସନ୍ଦେହ ନାହିଁ ।" *(୧୫୭)*

ଆଧୁନିକ ସାହିତ୍ୟର ପ୍ରତିଷ୍ଠା ପ୍ରସଙ୍ଗରେ ହିତୈଷିଣୀ ଅଜସ୍ର ସାହିତ୍ୟିକ ସୃଷ୍ଟି କରିଛି । ଏମାନଙ୍କ ଅବଦାନରେ ଆଧୁନିକ ସାରସ୍ୱତ ଧାରା ବହମାନ ଓ ସମୃଦ୍ଧ ହୋଇ ପାରିଛି । ସାହିତ୍ୟର ଇତିହାସରେ ଏମାନଙ୍କ ମଧ୍ୟରୁ ଅନେକ ନିଶ୍ଚିହ୍ନ ହୋଇଯାଇଛନ୍ତି, କତିପୟ କାଳ ସମରରେ ଉତ୍ତୀର୍ଣ୍ଣ ହୋଇଛନ୍ତି । କିନ୍ତୁ ଓଡ଼ିଆ ସାରସ୍ୱତ କ୍ଷେତ୍ରକୁ ହିତୈଷିଣୀର ଅବଦାନ ପର୍ଯ୍ୟାଲୋଚନା ସମୟେ ଏମାନଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରାଯାଇନପାରେ । ଏମିତି କିଛି ସାଧକଙ୍କ ସାରସ୍ୱତ କୃତିତ୍ୱକୁ 'ହିତୈଷିଣୀ ପୃଷ୍ଠାର ସ୍ରଷ୍ଟାଙ୍କ ସୃଷ୍ଟି ଆବେଦନ' ଶୀର୍ଷକରେ ଆଲୋଚନା କରାଯାଇଛି ।

ହିତୈଷିଣୀ ମାଧମରେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥାମାର୍ଦ୍ଧର ସାହିତ୍ୟର ବିଶିଷ୍ଟ ରୂପ ସଂପଦ ଓ ଜାତୀୟ ଭାବ ସଂବର୍ଦ୍ଧନର ପବିତ୍ର କର୍ତ୍ତବ୍ୟ ସଂପାଦିତ ହୋଇଛି । ପ୍ରବାହମାନ ସାହିତ୍ୟର ଉଜ୍ଜ୍ୱଳ ପଥରେ ହିତୈଷିଣୀ ଏକ ମହନୀୟ ମାଇଲଖୁଣ୍ଟ ରୂପେ ଚିର ଦେଦୀପ୍ୟମାନ ।



# ଚତୁର୍ଥ ଅଧ୍ୟାୟର ପାଦସୂଚୀ

୧. ସାମନ୍ତରାୟ, ନଟବର : ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି (ଗ୍ରନ୍ଥପ୍ରବେଶ) ପୃ-xii-(୧୯୮୨-୨ୟ ସଂସ୍କରଣ)
୨. ଉତ୍କଳ ପ୍ରଭା ୧/୧ (ସୂଚନା) ପୃ-୧
୩. ତତ୍ରୈବ -ପୃ-୪
୪. ଉତ୍କଳ ପ୍ରଭା ୧/୯, ୨/୫,୨/୮.୨/୯/୩/୨,୩/୩-୪,
୫. ଉତ୍କଳ ପ୍ରଭା-୧/୯
୬. ଉଦୀ ତା ୧.୬.୧୮୯୩ ପୃ-୨୦୨ ।
୭. ସହି-ତା ୧୯.୬.୧୮୯୩ ।
୮. ସହି ଏ ଅଂଶ ନଷ୍ଟ ହୋଇଥିବାରୁ ଏ ଲେଖାର ସ୍ୱରୂପ ଅସ୍ପଷ୍ଟ ।
୯. ଉଦୀ ତା ୧୫.୭.୧୮୯୩ ।
୧୦. ସମାଲୋଚକ କବିଭୂଷଣ : ଯୁବରାଜ : ଉଦୀ ତା ୧୫.୭.୧୮୯୩
୧୧. ସହି ୫/୯ ତା ୨.୮.୧୮୯୩ ।
୧୨. ସହି ୫/୧୫ ତା ୧୩.୯.୧୮୯୩ ।
୧୩. ସହି ୫/୧୬ ତା ୨୦.୯.୧୮୯୩ ।
୧୪. ତତ୍ରୈବ ।
୧୫. ତତ୍ରୈବ ।
୧୬. ସହି ୫/୧୯ - ତା ୧୧.୧୦.୧୮୯୩ ।
୧୭ .ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି (୧୯୮୧) ପୃ-୬୧ ।
୧୮.ସହି ୫/୧୭ ତା ୨୭.୯.୧୮୯୩ ।
୧୯.ସହି ୫/୪୨ ତା ୨୧.୩.୧୮୯୪ ।
୨୦. ଇନ୍ଦ୍ରଧନୁ : ସଂ ଅଚାର୍ଯ୍ୟ, ସୁଦର୍ଶନ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ (୧୯୯୧): ପୃ-ଚଉତ୍ରିଶ ।
୨୧. ସହି ତା ୬.୬.୧୮୯୪ ।
୨୨. ସହି ୫/୪୬, ତା ୧୮.୪.୧୮୯୪ ।
୨୩. ସହି ତା ୨୯.୯.୧୮୯୪ ।
୨୪. ସହି ତା ୬/୨୦ ତା ୧୭.୧୦.୧୮୯୪ ।
୨୫. ଆଧୁନିକ ଓଡ଼ିଆ ସାହିତ୍ୟ ଭିତ୍ତିଭୂମି (୧୯୮୧) ପୃ-୬୬ ।
୨୬. ଉତ୍କଳ ଦର୍ପଣ-ଜାନୁୟାରୀ-୧୮୭୫: ଉଦ୍ଧୃତ-ଆଧୁନିକ ଓଡିଆ ସାହିତ୍ୟର ଭିତ୍ତିଭୂମି-ପୃ-୧୦୫ ।
୨୭. ଶତପଥି, ଗୋକୁଳଚନ୍ଦ୍ର : ଉତ୍କଳ ମଧୁପ : ଭଞ୍ଜ ପ୍ରଦୀପ-୧୦/୨ ପୌଷ-୧୩୪୮ ।

୨୮. ଗଙ୍ଗାଧରଙ୍କୁ ରାଧାନାଥଙ୍କ ତା ୬.୧୧.୧୮୯୪ ର ପତ୍ର : ସଂ ପଟ୍ଟନାୟକ, ଦେବୀ ପ୍ରସନ୍ନ : କବିଲିପି, ବିଶ୍ୱଭାରତୀ, ଶାନ୍ତିନିକେତନ-(୧୯୫୭) ପୃ-୬୮ ।

୨୯. ଗଙ୍ଗାଧରଙ୍କୁ ରାଧାନାଥଙ୍କ ତା ୨୯.୧୧.୧୮୯୮ ର ପତ୍ର : କବିଲିପି-ପୃ-୮୫ ।

୩୦. ସହି ୩/୪୬ ତା ୬.୪.୧୮୯୨ ।

୩୧. ସହି ୫/୧ ତା ୭.୬.୧୮୯୩ ।

୩୨. ସହି ତା ୨୬.୧୦.୧୮୯୨ ।

୩୩. ସହି ତା ୩୦.୧୧.୧୮୯୨ ।

୩୪. ସହି ତା ୧୧.୧୨. ୧୮୯୨ ।

୩୫. ସହି ତା ୧୨.୭.୧୮୯୩

୩୬. ସହି ତା ୧୪.୪.୧୮୯୭

୩୭. ସହି ୧/୪୧ ତା ୯.୪.୧୮୯୦ ।

୩୮.ରାଧାନାଥଙ୍କ ତା ୧୯.୧୧.୧୮୯୮ ର ପତ୍ର, କବିଲିପି-ପୃ-୮୪-୮୫

୩୯. ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି, ପୃ-୫୯ ।

୪୦. ବିଦ୍ୟାରତ୍ନ, ନୀଳମଣି: ଭୂମିକା ତା ୨୫.୬.୧୮୯୧ : ପାର୍ବତୀ : ରାୟ, ରାଧାନାଥ : ସୁଚଳ ପ୍ରେସ, ବାମଣ୍ଡା-୧୮୯୧ ।

୪୧. ସାମନ୍ତରାୟ, ନଟବର : ଓଡ଼ିଆ ସାହିତ୍ୟର ଇତିହାସ : ପୃ ୫୮୩ ।

୪୨.ନନ୍ଦ, ଫଣୀନ୍ଦ୍ର ଭୂଷଣ : ପାର୍ବତୀ ଉତ୍ତରାର୍ଦ୍ଧ : ଏକ ଦୃଷ୍ଟିପାତ : ଝଙ୍କାର-ମେ-୧୯୯୪ ।

୪୩. ସହି ୫/୩ ତା ୨୬.୬ .୧୮୯୩ ।

୪୪. ସହି ତା ୧୮.୧୧.୧୮୯୬ ।

୪୫. ସହି ୯/୬ ତା-୭.୭.୧୮୯୭

୪୬. ସହି ୯/୮ ତା ୨୧.୭.୧୮୯୭

୪୭. ସହି ତା ୨୩.୩.୧୯୦୪ ।

୪୮. ସହି ତା ୨୫.୪.୧୯୦୮ ।

୪୯. ସାମନ୍ତରାୟ ନଟବର, ଓଡ଼ିଆ ସାହିତ୍ୟର ଇତିହାସ -ପୃ-୫୦୩ ।

୫୦. ସହି ତା ୨୮.୯.୧୮୯୨ ।

୫୧. ସହି ତା ୧୦.୫.୧୮୯୩

୫୨. ସହି ତା ୧୪.୬.୧୮୯୩ ।

୫୩. ସହି ତା ୫.୭.୧୮୯୩ ।

୫୪. ସହି ତା ୧୯.୪.୧୮୯୩

୫୫. ସହି ତା ୨୬.୭.୧୮୯୩

୫୬. ସହି ତା୧୮.୧୦.୧୮୯୩ (ଗୋଟିଏ ଉତ୍ତର)

୫୭. ସହି ୫/୬ ତା ୧୨.୬.୧୮୯୩ ।
୫୮. ଇତିହାସ, ସହି ତା ୬.୮.୧୮୯୩ ।
୫୯. ସହି ୫/୭ ତା ୧୯.୬୧୮୯୩ ।
୬୦. ସହି ୫/୨୩ ତା ୬.୧୧.୧୮୯୩ ଏବଂ ପରବର୍ତ୍ତୀ ସଂଖ୍ୟା ଦ୍ରଷ୍ଟବ୍ୟ ।
୬୧. ସହି ତା ୩୧.୮.୧୮୯୨
୬୨. ସହି ୨୦/୧୬ ତା ୬.୨.୧୯୦୯ ।
୬୩. ନନ୍ଦ, ଫଣୀନ୍ଦ୍ରଭୂଷଣ : ସାରସ୍ୱତ ସଂପର୍କ -ଫକୀର ମୋହନ ଓ ବୃନ୍ଦାବନ ନାଥଶର୍ମା : ସମାଜ -୧୬.୧୨.୨୦୦୦ ।
୬୪. ସହି ୧୮୯୦ ଉଦ୍ଧୃତ, ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ-ତୃତୀୟ ସଂସ୍କରଣ-୧୯୫୫-ପୃ-୫୨୨-୫୨୩ ।
୬୫. ତତ୍ରୈବ. ପୃ ୫୪୦ରୁ ୫୫୦ ।
୬୬. ସହି ତା ୧୬.୫.୧୮୯୪ ।
୬୭. ସହି ୫/୪୮ ତା ୨.୫.୧୮୯୪ ।
୬୮. ସହି ତା ୨.୧୧.୧୯୧୨ ।
୬୯. ଶର୍ମା, ବୃନ୍ଦାବନ ନାଥ: ମୋର ଜଣାଲୋକ : ଉତ୍କଳ ସାହିତ୍ୟ ୩୯/୧୧ ଫାଲ୍‌ଗୁନ-୧୩୪୩, ପୃ-୫୬୫ ।
୭୦. ସହି ତା ୩.୧୦.୧୮୯୪ ।
୭୧. ସହି ତା ୬.୩.୧୮୯୫ ।
୭୨. ସହି ୧୧/୩୮ ତା ୨୪.୧.୧୯୦୦ ।
୭୩. ସାମନ୍ତରାୟ, ନଟବର-ଓଡ଼ିଆ ସାହିତ୍ୟର ଇତିହାସ-ପୃ-୫୮୮
୭୪. ସହି ତା ୨୦.୬.୧୯୦୦ ।
୭୫. ସହି ତା ୧୩.୮.୧୯୦୨ ।
୭୬. ସହି ୬/୩୯ ତା ୨୭.୨.୧୮୯୫ ।
୭୭. ମିଶ୍ର, ଦାମୋଦର : ଦୋଷ ଦର୍ଶନ : ସୁତ୍କଳପ୍ରେସ, ବାମଣ୍ଡା ୧୮୯୫ ।
୭୮. ତତ୍ରୈବ, ଭୂମିକା ।
୭୯. ୧୮୮୮ ରେ ରଚିତ ପରିବର୍ଦ୍ଧିତ ରୂପ, ସହି ୭/୧୧-ତା-୧୪.୮.୧୮୯୫ରେ ପ୍ରକାଶିତ ।
୮୦. ମିଶ୍ର, ଦାମୋଦର ; ଅଂଶୁପା-ବାମଣ୍ଡା ୧୮୯୨-ପୃ-୩୮, ୩୯ ।
୮୧. ରାଧାନାଥଙ୍କ ମନ୍ତବ୍ୟ-ମାତା;ମିଶ୍ର, ଦାମୋଦର, ରାଯପ୍ରେସ କଟକ-୧୮୯୫ ।
୮୨. ସହି ୭/୧୬ ତା ୧୮.୯.୧୮୯୫ ।
୮୩. ସହି ୭/୨୧ ତା ୨୩.୧୦.୧୮୯୫ ।

୮୪. ସହି ୫/୫୪ ତା ୧୧.୪.୧୮୯୪।
୮୫. ମନ୍ତ୍ରି, ନରେନ୍ଦ୍ର ନାଥ : ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦିଦ୍ରୁତ), ବିଶ୍ୱଭାରତୀ, ୨ୟ ସଂସ୍କରଣ-୧୯୮୧-ପୃ-୨୫୮ ।
୮୬. ମିଶ୍ର, ଦାମୋଦର : ଆମ୍ଭମାନଙ୍କର ଦୁରାବସ୍ଥାର କାରଣ କି ?
ସହି : ତା ୧୮.୨.୧୯୦୫ ।
୮୭. ପ୍ରହରାଜ, ଗୋପାଳଚନ୍ଦ୍ର: ମୁଖବନ୍ଧ: ଚିନ୍ତାମଣି ଗ୍ରନ୍ଥାବଳୀ (୧ମଖଣ୍ଡ) ।
୮୮. ତତ୍ରୈବ: ସଂକ୍ଷିପ୍ତ ଜୀବନ ଚରିତ ।
୮୯. ସହି ତା ୨୭.୧.୧୮୯୭ ।
୯୦. ସହି ତା ୨୨.୫.୧୯୦୧ ରୁ ଆରମ୍ଭ ।
୯୧. ଚିନ୍ତାମଣି ଗ୍ରନ୍ଥାବଳୀ (୧ମ ଖଣ୍ଡ)
୯୨. ତତ୍ରୈବ, ସଂକ୍ଷିପ୍ତ ଜୀବନ ଚରିତ ।
୯୩. ତତ୍ରୈବ (୪ଖଣ୍ଡ) ୧୯୪୨ ପୃ-୪୮୯-୫୨୩ ।
୯୪. (କ) ସହି ତା ୩୧.୮.୧୯୧୨ ।
(ଖ) ସହି ତା ୧.୮.୧୯୧୪ ।
(ଗ) ସହି ତା ୩.୮.୧୯୧୮ ।
(ଘ) ସହି ତା ୧.୨.୧୯୧୯ ।
(ଙ) ସହି ତା ୧୫.୩.୧୯୧୯ ।
(ଚ) ସହି ତା- ୧୫.୬.୧୯୧୯ ।
୯୫. ସହି ୧୨/୧୪ ତା ୮.୮.୧୯୦୦ ।
୯୬. ସହି ତା ୬.୨.୧୮୯୫ ।
୯୭. ସହି ତା ୧୩.୨.୧୮୯୫ ।
୯୮. ସହି ୮/୧୫, ତା ୯.୯.୧୮୯୬ ଓ ୮/୧୬ ତା ୧୬.୯.୧୮୯୬ ।
୯୯. ସାମନ୍ତରାୟ ନଟବର. ଓଡ଼ିଆ ସାହିତ୍ୟର ଇତିହାସ ପୃ-୫୮୪ ।
୧୦୦.୰ ପୂର୍ଣ୍ଣଚନ୍ଦ୍ର ମହାପାତ୍ର (୧୮୯୮-୧୯୮୨) ନି: ବାରକୋଟ ଜି :ଦେବଗଡଙ୍କ ଠାରୁ ସଂଗୃହୀତ ।
୧୦୧. ସହି ୨୨/୬ ତା ୧୭.୧୨.୧୯୧୦ ।
୧୦୨. ସହି ୨୨/୭ ତା ୨୪.୧୨.୧୯୧୦ ।
୧୦୩. ସହି ୧୩/୩୫ ତା ୮.୧.୧୯୦୨ ।
୧୦୪. ପ୍ରହରାଜ, ଗୋପାଳ ଚନ୍ଦ୍ର, ଗ୍ରନ୍ଥପ୍ରବେଶ ‹ ଶତଚିନ୍ତା-ଶର୍ମା, ବୃନ୍ଦାବନ ନାଥ , ସାରସ୍ୱତ ପ୍ରେସ-କଟକ, ୧୯୩୯ ।
୧୦୫. ସହି ୧୭/୧୮ ତା ୧୩.୧.୧୯୦୬ ।

୧୦୬. ସହି ୧୨/୩୫ ତା ୧୨.୫.୧୯୦୬ ।

୧୦୭.ଗୁପ୍ତ, ପ୍ୟାରେଲାଲ, ସ୍ୱର୍ଗୀୟ ପଣ୍ଡିତ ଲୋଚନ ପ୍ରସାଦ ପାଣ୍ଡେୟ (ହିନ୍ଦି) ବିଲାସପୁର-
୧୯୬୨ ଛତିଶଗଡ ବିଭାଗୀୟ ହିନ୍ଦୀ ସାହିତ୍ୟ ସମ୍ମେଳନ, ପୃ-୭ ।

୧୦୮. ସାହିତ୍ୟ ସେବା : ସହି ୨୨/୩୪ ତା ୧୦.୬.୧୯୧୧ ।

୧୦୯. ସହି ୨୩/୩ ତା ୪.୧୧.୧୯୧୧ ।

୧୧୦.ସହି ୨୫/୧. ତା ୨୫.୧୦.୧୯୧୩ ।

୧୧୧. ସହି ତା ୨୩.୧୨.୧୯୦୩ ।

୧୧୨. ରାଧାନାଥଙ୍କ ମନ୍ତବ୍ୟ : ହେମକମଳିନୀ-ବାମଣ୍ଡା-୧୯୧୧ ।

୧୧୩. ଶାନ୍ତିଭିକ୍ଷା(ଅଭିମତ) : ସାରସ୍ୱତ ପ୍ରେସ, କଟକ-(୧୯୩୩)

୧୧୪. ସହି ତା ୧୮.୯.୧୯୦୯ ।

୧୧୫. ସହି ତା-୨୫.୯.୧୯୦୯ ।

୧୧୬. ସହି ୨୦/୪୮ ତା ୧୬.୧୦.୧୯୦୯ ।

୧୧୭. ସହି ୩୦/୪ ତା ୧୪.୧୨.୧୯୧୮ ।

୧୧୮.ନନ୍ଦ,ପଣୀନ୍ଦ୍ର ଭୂଷଣ : ହରିହର କାବ୍ୟମାନସ : ଏକ ପର୍ଯ୍ୟାଲୋଚନା : ଝଙ୍କାର-
ଡିସେମ୍ବର-୧୯୯୬ ।

୧୧୯. ସହି ୧୮.୧୧.୧୯୧୧ ।

୧୨୦. ତତ୍ରୈବ ।

୧୨୧. ସହି ୩୦.୧୧.୧୮୯୨ ।

୧୨୨. ସହି ୧୭.୮.୧୮୯୨ ।

୧୨୩. ସହି ତା ୨୪.୮.୧୮୯୨ ।

୧୨୪. ସହି ୮/୫ ତା ୧.୭.୧୮୯୬ ।

୧୨୫ ୰ ଲାଲା ରାମନାରାୟଣ ରାୟ : ସହି ତା ୮.୭.୧୮୯୬

୧୨୬. ସହି ୨୨/୧୨ ତା ୭.୧.୧୯୧୧ ।

୧୨୭. ସହି ୪.୪.୧୯୧୪ ।

୧୨୮. ଭୂମିକା : ସିଂହ, ଦିବ୍ୟରାଜ : ବିକାଶ-୧୯୧୬-ବାମଣ୍ଡା

୧୨୯. ସାହିତ୍ୟ ସେବା: ବିକାଶ ପୃ-୧ ।

୧୩୦. ରାୟ ରାଧାନାଥ-ମନ୍ତବ୍ୟ: ହେମଲତା-୧୪.୪.୧୮୯୬ ।

୧୩୧. ସହି ୧.୮.୧୯୦୦ ।

୧୩୨. ସହି ୧୬/୪୮ ତା ୧୨.୮.୧୯୦୫ ।

୧୩୩. ସୁଯୋଗ୍ୟ ସନ୍ତାନ ୰ ପ୍ରଫୁଲ୍ଲ କୁମାର ଦାଶ ନି: ଦେବଗଡ ଙ୍କଠାରୁ ସଂଗ୍ରହ ।

୧୩୪. ବସନ୍ତ ଆଗମନ : ସହି ୨୯/୧୬ ତା-୨୩.୨.୧୯୧୮ ।

୧୩୫.ସହି ୨୩.୧.୧୯୧୫ ।

୧୩୬. ସହି ୨୨/୧୯ ତା ୨୫.୨.୧୯୧୧ ।

୧୩୭. (କ) ସହି ତା ୨୨.୬.୧୮୯୬

(ଖ) ସହି ତା ୧୨.୧୧.୧୯୧୦

(ଗ) ସହି ତା ୧୯.୮.୧୯୧୧, ତା ୯.୯.୧୯୧୧ ।

୧୩୮. ସହି ତା ୬.୯.୧୮୯୩ ।

୧୩୯. ସହି ୧୧/୩୮ ତା ୨୪.୧.୧୯୦୦ ।

୧୪୦.ପତ୍ରିକାଟି ଦେଖିବାର ସୌଭାଗ୍ୟ ଲେଖକର ହୋଇନାହିଁ । ହିତୈଷିଣୀ ପୃଷ୍ଠାରେ ପ୍ରକାଶିତ ସଂବାଦରୁ ଏହାର ସୂଚନା ପ୍ରଦାନ କରାଗଲା ।

୧୪୧. ସହି ୧୨/୫ ତା ୬.୬.୧୯୦୦ ।

୧୪୨. ଉତ୍କଳ ମଧୁପ ୬/୧ ଅଗଷ୍ଟ ୧୯୧୫ ।

୧୪୩. ତତ୍ରୈବ ।

୧୪୪. ଉଦା ୫୮/୨୩ ତା ୯.୬.୧୯୨୩ ।

୧୪୫. ଉତ୍କଳ ମଧୁପ ୨୧/୩-୪, ଜୁନ-ଜୁଲାଇ -୧୯୨୪

୧୪୬. ଉତ୍କଳ ମଧୁପ, ସହି -୧୨/୩୯ ତା ୬.୨.୧୯୦୧ ।

୧୪୭. ସହି ତା ୨୧.୧.୧୯୦୩ ।

୧୪୮. ଉଦା ତା ୨୪.୧.୧୯୦୩ ।

୧୪୯. ଗଡଜାତ ବାସିନୀର ନିବେଦନ: ଗବା ୧/୨ ତା ୧୭.୨.୧୯୦୩ ।

୧୫୦. ଗଡଜାତ ବାସିନୀର ଶେଷ ସଂଖ୍ୟା ଦେଖିବାର ସୁଯୋଗ ଲେଖକର ହୋଇ ନାହିଁ ।

୧୫୧. ଉତ୍କଳ ସେବକ-୨/୫ ତା ୫.୧୧.୧୯୧୪ ।

୧୫୨. ଉତ୍କଳ ସେବକ ୧୨/୧ ତା ୩୦.୧୦.୧୯୨୪ ।

୧୫୩. ଉପହାର, ପ୍ରଥମଭାଗ-ବିଜୟା ସଂଖ୍ୟା-ଅକ୍ଟୋବର ୧୯୩୪ ।

୧୫୪. ଉପହାର-ଜାନୁୟାରୀ ୧୯୩୫ ।

୧୫୫. ସଂପାଦକୀୟ- ଶଂଖ:୧/୧ ଆଷାଢ଼ ୧.୯୪୫ ।

୧୫୬. ସଂପାଦକୀୟ :ଶଂଖ ୧/୧୧-୧୨ ବୈଶାଖ-ଜ୍ୟେଷ୍ଠ-୧୯୪୬ ।

୧୫୭. ସାମନ୍ତରାୟ, ନଟବର, ଊନବିଂଶ ଶତାବ୍ଦୀ ଓ ସଂବଲପୁର ହିତୈଷିଣୀ: ଝଙ୍କାର ୧୧/୧-ଏପ୍ରିଲ-୧୯୫୯ ।

□



# ଉପସଂହାର

ହିତୈଷିଣୀ କେବଳ ମାତ୍ର ଏକ ସଂବାଦପତ୍ର ନୁହେଁ, ଏହା ଜାତି ମାନସର ସୂକ୍ଷ୍ମ ସୃଜନସ୍ୱପ୍ନ । ଏ ସ୍ୱପ୍ନ ବିଧିବଦ୍ଧ ଭାଷା ଗଠନରେ ଯେତିକି ସହାୟକ ଜାତିର ମାନସିକ ଜୀବନ କାଳକୁ ସନ୍ଦିତ କରିବାରେ ସେତିକି ଉତ୍ସର୍ଗୀକୃତ । ଭାଷା ସାହିତ୍ୟ ଠାରୁ ଏକ ମହତ୍ତର ସମାଜ ଜୀବନ ପ୍ରେକ୍ଷାପଟ ଗଠନର ଏହା ନିୟାମକ । ଶବ୍ଦର ସାମ୍ରାଜ୍ୟ ଭିତରେ ମଣିଷଟିକୁ ଉପଯୁକ୍ତ ପଥ ପ୍ରଦର୍ଶନ ହିଁ ଏହାର ଆଭିମୁଖ୍ୟ । ସମୃଦ୍ଧ ସମାଜ ଗଠନ ଓ ସୁସଂସ୍କୃତ ସଭ୍ୟତାର ଗତିଶୀଳତାର ଏହା ପରିଚାୟକ ।

୧୮୮୯ ରୁ ୧୯୨୩ ପର୍ଯ୍ୟନ୍ତ ହିତୈଷିଣୀର ଆୟୁକାଳ । କିନ୍ତୁ ୧୯୪୭ ବା ତତ୍‌ପରବର୍ତ୍ତୀ ସମୟ ପର୍ଯ୍ୟନ୍ତ ଏହାର ପ୍ରଭାବକାଳ । ଅସରନ୍ତି କବିତାପରି, ବିଶୁଦ୍ଧ ପ୍ରେମର ଅନ୍ତଃରଣନ ପରି ଉଷ୍ମ ଗଦ୍ୟର ବାସ୍ତବତା ପରି ହିତୈଷିଣୀର ସୃଜନ ସ୍ୱପ୍ନ ସୁଷମା ମଣ୍ଡିତ । ବର୍ଣ୍ଣମାଳାର ଏକ ଶୁଦ୍ଧ ଚମକ ପରି ଏହାର ସୃଷ୍ଟି । ଏ ସୃଷ୍ଟି ସ୍ୱପ୍ନ ସହିତ ବାସ୍ତବତାକୁ ଏକାକାର କରିଦିଏ । ସାହିତ୍ୟ ସହିତ ସମାଜକୁ ଗୁନ୍ଥିଦିଏ । ସାହିତ୍ୟର ଉନ୍ନତିକୁ ସମାଜର ବିକାଶ ଧାରାରେ ଅବଲୋକନ କରେ ।

ହିତୈଷିଣୀର ଦୀର୍ଘ ପ୍ରକାଶନ ମଧ୍ୟରେ ଅନେକ ସମସ୍ୟା ଆସିଛି, ଜାତୀୟ ଜୀବନରେ ଘୋର ଦୁଃସମୟ ଆସିଛି, ସାହିତ୍ୟ ପ୍ରତି ପ୍ରାଣାନ୍ତକ ବିପଦ ଆସିଛି । ଏ ସବୁକୁ ଦୃଢ଼ ଭାବରେ ସାମ୍ନା କରିଛି ହିତୈଷିଣୀ । ସମସ୍ୟାର ସମାଧାନ କରି ଜାତୀୟ ଜୀବନକୁ ସମୃଦ୍ଧ କରିଛି । ଓଡ଼ିଆ ଭାଷା ପ୍ରତି ପ୍ରାଦେଶିକ ଭାଷାର ଆକ୍ରମଣ, ସଂବଲପୁରରେ ଓଡ଼ିଆ ଭାଷା ଉଚ୍ଛେଦ, ସମାଜରେ କୁସଂସ୍କାରର ସଂକ୍ରମଣ ବିରୁଦ୍ଧରେ ଆଜୀବନ ସଂଗ୍ରାମ କରିଛି ହିତୈଷିଣୀ । ଫଳରେ ଆମେ ପାଇଛୁ ଆମର ଭାଷା, ଆମର ସାହିତ୍ୟ ଓ ପରିଚ୍ଛନ୍ନ ସମାଜକୁ । ହିତୈଷିଣୀର ଜୀବନକାଳ ଏକ ସମୃଦ୍ଧ ଭାଷା ସାହିତ୍ୟ ଗଠନରେ ଉତ୍ସର୍ଗୀତ । ହିତୈଷିଣୀର ପ୍ରତିଟି ପୃଷ୍ଠା ସମାଜକୁ ବିକଶିତ କରିବାକୁ ସଂକଳ୍ପବଦ୍ଧ ।

ହିତୈଷିଣୀର ଦାନ ଅପରିସୀମ । ତାର ସାମଗ୍ରିକ ମୂଲ୍ୟାୟନ ସମ୍ଭବ ନୁହେଁ । ପୁନଶ୍ଚ ହିତୈଷିଣୀର ପୂର୍ଣ୍ଣାଙ୍ଗ ଚିତ୍ର ପ୍ରଦାନ ଲେଖକର ଲକ୍ଷ୍ୟନୁହେଁ । ହିତୈଷିଣୀ ଏକ ମହତ୍ତର ଜୀବନ ଭୋଗ ପାଇଁ ଭାଷା ସାହିତ୍ୟ ଓ ସମାଜ ଜୀବନ ପ୍ରତି ଯେଉଁ ଅପୂର୍ବ ଅବଦାନ ଦେଇଛି ତାର ଏକ ବିମୁଗ୍ଧ ରୂପାୟନ ଏଠାରେ କରାଯାଇଛି । ସ୍ୱଳ୍ପ ପରିସର ଭିତରେ ଏ ଦୀର୍ଘ ପଦଯାତ୍ରାର ପ୍ରଶଂସନୀୟ ମୁହୂର୍ତ୍ତ ଓ ସ୍ଥଳ ବିଶେଷ ଉପରେ ଆଲୋକ ପାତ କରାଯାଇଛି । ଯେଉଁ ପରିବେଶ

ଓ ପୃଷ୍ଠଭୂମି ଦେଇ ହିତୈଷିଣୀ ଉଦ୍‌ବର୍ତ୍ତିତ, ଯେଉଁ ଧାରାକୁ ସଞ୍ଚିତ କରିବାରେ ଏହା ସକ୍ଷମ ତାର କଳାତ୍ମକ ଅନୁଶୀଳନ ହିଁ ପରମ ଲକ୍ଷ୍ୟ । ସର୍ବପୋରୀ ହିତୈଷିଣୀର ଏକ ପୂର୍ଣ୍ଣାଙ୍ଗ ଧାରଣା ସୃଷ୍ଟି ପାଇଁ ଅପରିହାର୍ଯ୍ୟ ତଥ୍ୟ ସମୂହର ବିଶ୍ଳେଷଣ ପ୍ରତି ଅଧିକ ଗୁରୁତ୍ୱ ଦିଆଯାଇଛି ।

ଆଜି ଦୀର୍ଘ ସମୟ ବ୍ୟବଧାନରେ ପୁଣିଥରେ ସେହି ଉର୍ଜସ୍ୱଳ ସାରସ୍ୱତ ବିନ୍ଦୁକୁ ଦୃଷ୍ଟିପାତ କରିବାକୁ ଏ ସନ୍ଦର୍ଭ ଅଭିପ୍ରେତ । ଓଡ଼ିଆ ସାରସ୍ୱତ ଭାଲପଟରେ ଏକ ଉଜ୍ଜ୍ୱଳ ସୀମନ୍ତ ରୂପେ ହିତୈଷିଣୀ ଚିର ଦେଦୀପ୍ୟମାନ । ସେହି ଉଜ୍ଜ୍ୱଳ ସୀମନ୍ତର ଆଲୋକରେ ବିପଥଗାମୀ ଓଡ଼ିଆ ସାହିତ୍ୟ ତାର ପଥ ପରିଷ୍କାର କରିବ ! ଆସନ୍ତା ଶତାବ୍ଦୀ ଶତାବ୍ଦୀର ଅଂଧକାର ଚିରି ଏ ଉଜ୍ଜ୍ୱଳରେଖା ଓଡ଼ିଆ ସାହିତ୍ୟ ପଟରେ ଅଧିଷ୍ଠିତ ହେଉଥିବ ଏଥିରେ ସନ୍ଦେହ ନାହିଁ ।



## ସଂକ୍ଷିପ୍ତୀ କରଣ :

| | |
|---|---|
| *ସହି, ହିତୈଷିଣୀ* | *: ସମ୍ବଲପୁର ହିତୈଷିଣୀ* |
| *ଉଦୀ, ଦୀପିକା* | *: ଉତ୍କଳ ଦୀପିକା,* |
| *ମଧୁପ* | *: ଉତ୍କଳ ମଧୁପ* |
| *ଗବା, ବାସିନୀ* | *: ଗଡ଼ଜାତ ବାସିନୀ ।* |



''ବୁଧ-ହଂସ-କେଳିସର''ଦେବଦୁର୍ଗ ଧାମେ
ଜନମିଲା ସୁପତ୍ରିକା ''ହିତୈଷିଣୀ''ନାମେ ।
ଶାପଭ୍ରଷ୍ଟ ଦେବ ଥିଲେ ନରେନ୍ଦ୍ର ସୁଜଳ
କୀରତି ଉଦ୍ୟାନେ ତାଙ୍କ ଅନେକ ସୁଫଳ ।
ତାଙ୍କ ସେ ଉଦ୍ୟାନେ ପାଇ ସମାଦରେ ସ୍ଥାନ
ବଢ଼ିଗଲା ପତ୍ରିକାର ଅତୁଳ ସମ୍ମାନ ।
ନୀଳମଣି ବିଦ୍ୟାରତ୍ନ ବହୁ ଗୁଣାଧାର
ନରେନ୍ଦ୍ର ଆଦେଶେ ନେଲେ ତା ରକ୍ଷଣ ଭାର ।

XXX XXX XXX

ଚଉଦିଗେ କଲା ଜ୍ଞାନ ଚନ୍ଦ୍ରିକା ପ୍ରକାଶ
ଅଜ୍ଞାନ-ତିମିର ଦୂର ହେଲା ଲଭି ତ୍ରାସ ।

XXX XXX XXX

ଉତ୍କଳରେ ହେଲା ନବ ଯୁଗର ଆରମ୍ଭ
ଦିଗେ ଦିଗେ ବ୍ୟାପିଗଲା ସାହିତ୍ୟ ସୌରଭ ।

-ଗଙ୍ଗାଧର ମେହେର

''ସମ୍ବଲପୁର ହିତୈଷିଣୀ'ଏକ ସମ୍ବାଦପତ୍ର; ମାତ୍ର ସାହିତ୍ୟର ଇତିହାସରେ ଏହାର ଅବଦାନ ଏକାନ୍ତ ବିସ୍ମୟକର । ଆଧୁନିକ ସାହିତ୍ୟର ପ୍ରତିଷ୍ଠା, ଜାତୀୟ ଭାବର ସମ୍ବର୍ଦ୍ଧନା ଓ ପରିଶେଷରେ ନୂତନ ସାହିତ୍ୟିକ ଗୋଷ୍ଠୀର ସୃଷ୍ଟି-ଏ ତିନୋଟି ବିଶିଷ୍ଟ ବିଭାଗରେ 'ହିତୈଷିଣୀ'ର ଦାନ ସର୍ବଦା ସ୍ମରଣୀୟ ।

(ଊନବିଂଶ ଶତାବ୍ଦୀ ଓ ସମ୍ବଲପୁର ହିତୈଷିଣୀ : ଡକ୍ଟର ନଟବର ସାମନ୍ତରାୟ)